ସ୍ୱାମୀ ନିରଂଜନ କୃତ

# ହଂସ ଗୀତା



ଅନୁସୃଜନ

ରମେଶ ଦାସ

ସ୍ୱାମୀ ନିରଞ୍ଜନ କୃତ

# ହଂସ ଗୀତା



ଅନୁସୃଜନ

**ରମେଶ ଦାସ**

ହଂସଗୀତା

ସଂକଳନ :

ସ୍ୱାମୀ ନିରଞ୍ଜନଜୀ ମହାରାଜ

ଅନୁସୃଜନ :

ରମେଶ ଦାସ



ପ୍ରକାଶକ : ନିରଞ୍ଜନ ବୁକ୍ ଟ୍ରଷ୍ଟ

ପ୍ରକାଶକ : ନିରଞ୍ଜନ ମିଶନ, ଭୁବନେଶ୍ୱର

ପ୍ରଥମ ମୁଦ୍ରଣ : ୨୦୦୮

ମୁଦ୍ରଣ ଏବଂ ଅଳଂକରଣ : ଦିବ୍ୟ ମୁଦ୍ରଣୀ, ଭୁବନେଶ୍ୱର, ଫୋନ : ୨୩୪୦୧୩୬

ପ୍ରଚ୍ଛଦ ପ୍ରସ୍ତୁତି : ବିଭୁ ପ୍ରସୂନ

ମୂଲ୍ୟ : ୮୦ /

# ଅସତୋ ମା ସଦ୍‌ଗମୟ !

ଏହି ପ୍ରାର୍ଥନା ଶିଷ୍ୟଙ୍କ ଦ୍ୱାରା ଆପଣାର ଶ୍ରଦ୍ଧାସ୍ପଦ ସଦ୍‌ଗୁରୁଙ୍କ ପ୍ରତି କରାଯାଇଥାଏ । ଏଇ ପ୍ରାର୍ଥନାର ତାତ୍ପର୍ଯ୍ୟ ହେଉଛି ଏୟା ଯେ ''ହେ ଗୁରୁଦେବ ! ଆପଣ ମୋତେ ଅସତ, କଳ୍ପିତ, ମିଥ୍ୟା, ମାୟା ସଂସାର ପ୍ରାପ୍ତିର ସାଧନ ଭଳି ଯଜ୍ଞ, ତପ, ଦାନ, ପୂଜା, ପାଠ, ମନ୍ତ୍ର, ମାଳା, ତୀର୍ଥ, ବ୍ରତ, ଧ୍ୟାନ, ସମାଧି ଇତ୍ୟାଦି ସାଧନ ଗୁଡ଼ିକ ପ୍ରତି ବୈରାଗ୍ୟଭାବ ଆଣିଦେଇ ପରମାତ୍ମାଙ୍କ ପ୍ରାପ୍ତି ଭଳି ସତ୍ୟମାର୍ଗରେ ପରିଚାଳିତ କରାନ୍ତୁ । କାରଣ ଏହା ହେଉଛି ବେଦାନ୍ତର ସିଦ୍ଧାନ୍ତ ଯେ **''ଯଦ୍ ଯଦ୍ ସାଧ୍ୟଂ ତଦ୍ ତଦ୍ ଅନିତ୍ୟମ୍''** ଅର୍ଥାତ୍ କର୍ମ ଦ୍ୱାରା, ସାଧନ ଦ୍ୱାରା ଯେଉଁ ଫଳ ସବୁ ମିଳିଥାଏ, ତାହା ଇହଲୋକରୁ ଆରମ୍ଭ କରି ସ୍ୱର୍ଗ, ବୈକୁଣ୍ଠ ଇତ୍ୟାଦି ଧାମ ପର୍ଯ୍ୟନ୍ତ ଅନିତ୍ୟ ଏବଂ କ୍ଷଣ ଭଙ୍ଗୁର । ତା'ପରେ ଗୁରୁର କର୍ତ୍ତବ୍ୟ ହୋଇଯାଇଥାଏ :-

**ସାଧୁ ଐସା ଚାହିୟେ ଜୈସେ ସୂପ ସୁଭାୱ ।**
**ସାର ସାରକୋ ଗହିଲହେ, ଥୋଥୋ ଦେଈ ଉଡ଼ାୱ ।।**

ଅର୍ଥାତ୍ ବେଦ ଶାସ୍ତ୍ରର ଅନେକ କଣ୍ଟକିତ ସାଧନ ମାର୍ଗଗୁଡ଼ିକଠାରୁ ମୁମୁକ୍ଷୁକୁ ରକ୍ଷା କରି ସରଳ, ସହଜ, ସୁଗମ, ଆନନ୍ଦପ୍ରଦ ଜ୍ଞାନମାର୍ଗରେ ଯୋଡ଼ିଦେବା । ଯେପରି ସୂପ (କୁଲା)ର ସ୍ୱଭାବ ହେଉଛି ସେ ସାରତତ୍ତ୍ୱକୁ ରଖି ଅସାର ତତ୍ତ୍ୱକୁ ଉଡ଼ାଇ ଦେଇଥାଏ ଅଥବା ନୀର-କ୍ଷୀର ବିବେକୀ ହଂସ ଦୁଧ, ଜଳ ମିଶ୍ରିତ ପେୟ ପଦାର୍ଥ ଠାରୁ କେବଳ ଦୁଧକୁ ହିଁ ଗ୍ରହଣ କରିଥାଏ ଏବଂ ଅସାର ଜଳତତ୍ତ୍ୱକୁ ଗ୍ରହଣ କରିନଥାଏ ବା ଅସାର ଜଳତତ୍ତ୍ୱ ତା'ର ଚଞ୍ଚୁକୁ ସ୍ପର୍ଶ କରିନଥାଏ ।

ଏହିଭଳି ଯେଉଁ ଜିଜ୍ଞାସୁଙ୍କ ମନରୁ ନିଷ୍କାମ କର୍ମ, ଉପାସନା ଦ୍ୱାରା ମଳ ବିକ୍ଷେପ ଦୋଷ ଦୂର ହୋଇଯାଇଛି ଏବଂ ଯାହାଙ୍କ ଠାରେ କେବଳ ଏକମାତ୍ର ସ୍ୱରୂପର ହିଁ ଅଜ୍ଞାନ ଆବରଣ ଦୋଷ ବାକୀ ରହିଯାଇଛି, ତାଙ୍କ ପାଇଁ ସଦ୍‌ଗୁରୁ କେବଳ ସ୍ୱରୂପ ଜ୍ଞାନର ହିଁ ଏକମାତ୍ର ଉପଦେଶ ଦେଇଥାନ୍ତି । ସଦ୍‌ଗୁରୁଙ୍କ ପାଇଁ ମଳ, ବିକ୍ଷେପ ଦୋଷ ରହିତ କେବଳ ଆବରଣ ଦୋଷଯୁକ୍ତ ଥିବା ସେଇ ମୁମୁକ୍ଷୁଙ୍କୁ ଏକମାତ୍ର ସ୍ୱରୂପ ଜ୍ଞାନୋପଦେଶ ଦେବା ହିଁ କର୍ତ୍ତବ୍ୟ ହୋଇଯାଇଥାଏ । ଯେମିତି ଆୟୁର୍ବେଦ ଗ୍ରନ୍ଥରେ ଅନେକ ରୋଗ ପାଇଁ ଅନେକ ପ୍ରକାର ଔଷଧ ବତାଇ ଦିଆଯାଇଥାଏ କିନ୍ତୁ ରୋଗୀର ସେଇ ଅନେକ ଔଷଧ ସହିତ କୌଣସି ସମ୍ବନ୍ଧ ନଥାଏ, ବୈଦ୍ୟ ଦ୍ୱାରା ନିର୍ଦ୍ଧାରିତ ରୋଗ ନିବୃତ୍ତି ସମ୍ବନ୍ଧିତ ଔଷଧ ଗ୍ରହଣ କରିବା ତା' ପାଇଁ ପ୍ରୟୋଜନ ହୋଇଥାଏ ।

ସେହିପରି ବେଦରେ କର୍ମକାଣ୍ଡର ୮୦,୦୦୦ ମନ୍ତ୍ର, ଉପାସନା କାଣ୍ଡର ୧୬,୦୦୦ ମନ୍ତ୍ର ଏବଂ ଜ୍ଞାନକାଣ୍ଡର ୪,୦୦୦ ମନ୍ତ୍ରର ପ୍ରତିପାଦନ କରାଯାଉଛି । ଅନେକ ପ୍ରକାର ସାଧକଙ୍କ ପାଇଁ ଅନେକ ପ୍ରକାରର ସାଧନ ମାର୍ଗ ବତାଇ ଦିଆଯାଇଛି, କିନ୍ତୁ ମୁମୁକ୍ଷୁଙ୍କର ସେଥିରୁ ଗୁରୁ ମୁଖରୁ ଏକମାତ୍ର ତତ୍ତ୍ୱମସି ମହାକାବ୍ୟର ସେବନ କରିବା ହିଁ କର୍ତ୍ତବ୍ୟ ହୋଇଥାଏ । ଲକ୍ଷେ ମନ୍ତ୍ର ସହିତ ତାଙ୍କର କୌଣସି ପ୍ରୟୋଜନ ଥାଏ । ସେହି ଉଦ୍ଦେଶ୍ୟରେ ଏଇ **"ହଂସଗୀତା"** ରଚନା କରିବା ପାଇଁ ମନରେ ସ୍ଫୁରଣ ଜାଗ୍ରତ ହେଲା । ଆଶା କରୁଛି ମୁମୁକ୍ଷୁମାନଙ୍କ ପାଇଁ ଏଇ ଗ୍ରନ୍ଥ ସେମିତି ଉପାଦେୟ ହେବ, ଯେମିତି ଉଦାହରଣ ଛଳରେ କୁହାଯାଇଛି ସୂପ ଓ ହଂସ ଅସାରକୁ ତ୍ୟାଗ କରି ସାର ତତ୍ତ୍ୱକୁ ଗ୍ରହଣ କରିଥାନ୍ତି ।

**ସ୍ୱାମୀ ନିରଂଜନ**



# ସୂଚୀପତ୍ର



# ।। ଜନ୍ମର ଅଧାର ।।

ମନରେ କାମ ବିଚାର ଜାଗ୍ରତ ହେବା କୌଣସି ପାପ କଥା ନୁହେଁ । ଯଦି ତୁମର ପିତାଙ୍କ ମନରେ କାମ ବିଚାର ଆସିନଥାନ୍ତା, ତେବେ ତୁମେ କେଉଁଠୁ ଆସିଥାନ୍ତ ? ଏଥିରେ ଖରାପ କେଉଁଠି ଅଛି ? ଏହା ତ ନୈସର୍ଗିକ । ଏହାକୁ ଅତିକ୍ରମଣ କରିବା ପାଇଁ ଏତେ ଚିନ୍ତା କାହିଁକି ? ଏଥିରେ ଖରାପ ବୋଲି କିଛି ନାହିଁ ।

ତୁମେ କେବେ ଶୁଣିଛ କି କେହି ନପୁଂସକ ବ୍ରହ୍ମଜ୍ଞାନକୁ ଉପଲବ୍ଧ ହୋଇଛି ?

କାମ ଉର୍ଜା ହିଁ ହେଉଛି ଜ୍ଞାନର ଜାଗରଣ । ସେଇ କାମ ଉର୍ଜା, ବାସନା ଠାରୁ ମୁକ୍ତ ହୋଇଗଲେ ସିଏ ରାମ ବନିଯାଏ । କାମ ବାସନାରେ ପାପ କିଛି ନାହିଁ । ଏହା ହେଉଛି ଦେହର ପ୍ରାକୃତିକ ଅବସ୍ଥା । ପରମାତ୍ମା କାମବାସନା ଦେଇଛନ୍ତି ମାନେ ଏହାର ନିଶ୍ଚୟ କିଛି ପ୍ରୟୋଜନ ଅଛି । ପରମାତ୍ମାଙ୍କ ଠାରେ କାମବାସନା ପ୍ରଥମେ ଜାଗ୍ରତ ହେବାରୁ ତ ସୃଷ୍ଟିର ପ୍ରାକଟ୍ୟ ହେଲା । ଜୀବନକୁ ସ୍ୱୀକାର କର । ଏହା ହେଉଛି ପ୍ରଭୁଙ୍କ ପ୍ରସାଦ । ଯେମିତି ସେ ଦେଇଛନ୍ତି ସେମିତି ତାକୁ ସ୍ୱୀକାର କରିନିଅ ।

ଯଦି ତୁମେ କାମବାସନାକୁ ସହଜ ଭାବରେ ସ୍ୱୀକାର କରିନେଲ ତ ତେବେ ତୁମେ ଦିନେ ତା' ଆରପାରିକୁ ଚାଲିଯିବ । ସାକ୍ଷୀ ହୁଅ । କନ୍ଦାକଟା କରନାହିଁ । ଅଭିଯୋଗ କରନାହିଁ । ଖରାପ ବୋଲି କୁହ ନାହିଁ । ପରମାତ୍ମାଙ୍କୁ ଖରାପ ବୋଲି କୁହନାହିଁ । କାମକୁ ଖରାପ କୁହ ନାହିଁ । ସିଏ ସମସ୍ତଙ୍କୁ ଏହା ଦେଇଛନ୍ତି, ଯେତେବେଳେ ଏହାର ନିଶ୍ଚିତ ଭାବରେ କିଛି ମହତ୍ତ୍ୱପୂର୍ଣ୍ଣ ପ୍ରୟୋଜନ ଥିବ ।

ଯେତେବେଳେ ଜୀବନ ସମସ୍ତ କ୍ରିୟାଗୁଡ଼ିକ ଭିତରେ ସାକ୍ଷୀଭାବ ଦେଇ ଅତିକ୍ରମ କରେ, ସେତେବେଳେ ଯାହା ଯାହା ଜୀବନରେ ଭୁଲ୍ ଥାଏ, ତାହା ଆପେ ଆପେ ଗୋଟିଏ ପରେ ଗୋଟିଏ ବିସର୍ଜିତ ହୋଇଚାଲିଯାଏ, ତା' ସହିତ ଲଢ଼ିବାକୁ ପଡ଼େନାହିଁ ।

ସନ୍ଥ, ମହାତ୍ମା ଉପଦେଶ ଦେଇଥାନ୍ତି ଯେ ଏଇଠି ଏକମାତ୍ର ବ୍ରହ୍ମଙ୍କବ୍ୟତୀତ ଅନ୍ୟ କିଛି ନାହିଁ । ଅନ୍ୟ ବୋଲି ମାନିନେବା ହିଁ ମୃତ୍ୟୁରୂପୀ ବନ୍ଧନକୁ ପ୍ରାପ୍ତ କରିବା । ଅନ୍ୟ ପକ୍ଷରେ ସେମାନେ ସଂସାରକୁ ନରକ ଏବଂ ଦୁଃଖାଳୟ ବୋଲି ବି ବତାଇଥାନ୍ତି । ଯେତେବେଳେ ସୃଷ୍ଟିର ଉପାଦାନ କାରଣ ହେଉଛି ବ୍ରହ୍ମ, ସେତେବେଳେ ତାଙ୍କ ଠାରୁ ଉତ୍ପନ୍ନ ଜଗତକୁ ନରକ ବୋଲି କହିବା ଅର୍ଥ ପରମାତ୍ମାଙ୍କୁ ହିଁ ନିନ୍ଦା କରିବା । ସିଦ୍ଧାନ୍ତ ତ ହେଉଛି ଏୟା ଯେ ସବୁକୁ ବ୍ରହ୍ମ ରୂପ ବୋଲି ଜାଣ । ସଂସାର ହେଉଛି ମାୟା ସେଥିପାଇଁ ତୁମେ କାମିନୀ କାଞ୍ଚନ ଠାରୁ ସର୍ବଦା ଦୂରତ୍ୱ ରଖି ବଞ୍ଚିରୁହ । ଯେତେବେଳେ ସଂସାର ହେଉଛି ଅସତ୍ୟ, ମାୟା, ସେତେବେଳେ ତା'ଠାରୁ ବଞ୍ଚି ରହିବାର ଅର୍ଥ କ'ଣ ? ଯେମିତି ଜଣେ ଯଦି କହୁଥାଏ ବନ୍ଧ୍ୟା ସ୍ତ୍ରୀର ପୁତ୍ର ଠାରୁ ନିଜକୁ ବଞ୍ଚାଇ ରଖ, ସିଏ ଜଣେ ବଡ଼ ଭୟାନକ ଡାକୁ, ଏୟା କହିବା ଯେମିତି ବ୍ୟର୍ଥ, ସେହିପରି ମାୟା ଠାରୁ (ଯିଏ ନାହିଁ) ନିଜକୁ ବଞ୍ଚେଇ ରଖ, ସିଏ ହେଉଛି ବନ୍ଧନ ଭଳି, ଏହିଭଳି କହିବା ବି ନିରର୍ଥକ ।

ସାଧୁ, ସନ୍ଥ, ମହାତ୍ମା, ଗୁରୁମାନଙ୍କ ଠାରୁ ଏବଂ ଶାସ୍ତ୍ରମାନଙ୍କରୁ କାମ ବିରୁଦ୍ଧରେ ନିନ୍ଦାକୁ ପଢ଼ି, ଶୁଣି ତୁମେ କାମ ବାସନା ଠାରୁ ମୁକ୍ତ ହୋଇପାରୁନାହଁ । ଭୋଗ କରୁଥିବା ସମୟରେ ବି ପାପ ଭାବନା ମନ ଭିତରେ ରଖୁଛ । ସେଥିପାଇଁ ସମ୍ପୂର୍ଣ୍ଣ ଭୋଗ ବି କରିପାରୁନାହଁ ।

ସେଇ ଚେହେରାକୁ ଖୋଜ, ଯାହା ତୁମର ଏଇ ଶରୀର ଜନ୍ମ ହେବା ପୂର୍ବରୁ ଥିଲା ଏବଂ ଯେଉଁ ଚେହେରା ଦେହର ମୃତ୍ୟୁ ହେଲାପରେ ରହିବ । ଜନ୍ମ-ମୃତ୍ୟୁର ମଝିରେ ରହୁଥିବା ଚେହେରା ତ ପିତା ମାତାଙ୍କ ଠାରୁ ପ୍ରାପ୍ତ ହୋଇଛି । ଏହା ତୁମେ ନୁହଁ କି ଏହା ତୁମର ନୁହେଁ ।

କାମ ବାସନା ପ୍ରତି ଜାଗ୍ରତ ରୁହ, ତେବେ ଯାଇ ତୁମେ ସାକ୍ଷୀ ଭାବକୁ ପ୍ରାପ୍ତ କରିପାରିବ ।

ପରମାତ୍ମା ସମଗ୍ର ସଂସାରକୁ ତିଆରି କଲେ, ଶରୀର ତିଆରି କଲେ, ଇନ୍ଦ୍ରିୟ ଓ ମନ, ବୁଦ୍ଧିକୁ ତିଆରି କଲେ କିନ୍ତୁ ଗୁରୁମାନେ ଶାସ୍ତ୍ର ରଚନା କରି ସଂସାରର, ଶରୀରର, ଇନ୍ଦ୍ରିୟଗୁଡ଼ିକର ନିନ୍ଦା କରୁଥିବାର ଦେଖାଯାଇଥାଏ । ଏଇ ନିନ୍ଦାକୁ ତ ତେବେ ତିଆରି କରିଥିବା ପରମାତ୍ମାଙ୍କର ବୋଲି କୁହାଯିବ ।

ବାସନାକୁ କେବେହେଲେ ଦବାଇ ରଖନାହିଁ । ଯେଉଁ ବାସନା ଦ୍ୱାରା ବୁଦ୍ଧ, ଯୀଶୁ, ରାମ, କୃଷ୍ଣ, ମୀରା, ମହାବୀର ଜନ୍ମହେଲେ, ତା'ର ନିନ୍ଦା କରୁଛ ? ସେଇ ବାସନା ଯୋଗୁ ତ ଏଇଠି

ତୁମେ ଆଜି ଅଛ । ଫଳକୁ ତ ପ୍ରେମରେ ଖାଉଛ ପୁଣି ମଞ୍ଜିକୁ ନିନ୍ଦା କରୁଛ, ଏହା କେଉଁଠିକାର ବୁଦ୍ଧିମାନତା ? ବାସନା ଭିତରକୁ ପ୍ରେମ ସହକାରେ ପ୍ରବେଶ କର । ଡରି ମରି, ଭୟରେ, ଅଶାନ୍ତ ଭାବରେ, ଜିଦ୍‌ରେ ରହି ଉଦାସୀନ ବୃତ୍ତି ନେଇ ପ୍ରବେଶ କରନାହିଁ । ଅନ୍ୟଥା ଏହାର ପରିଣାମ ସ୍ୱରୂପ ସନ୍ତାନ ବି ସେମିତି ଫଳିତ ହେବ । ଜାଗ୍ରତ ହୋଇ ଜୀଇଁରହ । ଦ୍ରଷ୍ଟା, ସାକ୍ଷୀ ହୋଇ ଜିଅଁ । ଜୀବନ ସହିତ ଏକରସ ହୋଇଯାଅ । ପରମାତ୍ମା ହେଉଛନ୍ତି ନିୟନ୍ତା । ତୁମେ ରହିଛ ତ ସିଏ ନାହାନ୍ତି । ସିଏ ଅଛନ୍ତି ତ ତୁମେ ନାହଁ ।



## ।। ସ୍ୱାର୍ଥର ସଂସାର ।।

ଆପଣାର ପ୍ରିୟ ପୁତ୍ର, ପତ୍ନୀ, ପିତା, ମାତାଙ୍କର ମୃତ୍ୟୁ ହୋଇଗଲେ ସାଧାରଣତଃ ସମସ୍ତେ ନିଜ ନିଜ ସ୍ୱାର୍ଥ ପାଇଁ ରୋଦନ କରିଥାନ୍ତି । ଯାହାର ଯେତିକି ସ୍ୱାର୍ଥ ଥାଏ ସେ ସେଇ ପ୍ରମାଣ ଅନୁସାରେ ଦୁଃଖ ମନାଇଥାଏ । କେହି ବେହୋଶ ହୋଇଯାଏ ତ କେହି ମୁଣ୍ଡ ପିଟିଥାଏ, କେହି ଛାତି ପିଟିଥାଏ ତ କେହି ଚିତ୍କାର କରି କାନ୍ଦିଥାଏ, କେହି ଲୁହ ବୁହାଇଥାଏ, ତ କେହି ଅବଶୋଷ ଜାହିର କରିଥାଏ । ଯଦି ସବୁ ଲୋକ ସେଇ ଶବକୁ ଘରେ ରଖିନିଅନ୍ତି ତେବେ ଘର ଭିତରେ ଦୁର୍ଗନ୍ଧ ହେବ । କଲେରା, ବେମାରୀ ହୋଇଯିବ ଏବଂ ଜୀବିତ ଲୋକ ବି ରୋଗୀ ହୋଇ ମରିଯିବ ବା ଘର ଛାଡ଼ିଦେଇ ପଳାଇଯିବ । ଯେତେ ବି ପ୍ରିୟ ସମ୍ବନ୍ଧ ଥାଉ ନା କାହିଁକି ଶେଷରେ ତାକୁ ଜଳାଇ ଦେବା ବା ପୋତିଦେବା ପାଇଁ ନିର୍ଣ୍ଣୟ ନିଆଯାଇଥାଏ । ତଦ୍ଦ୍ୱାରା ହିଁ ଘର ଓ ନଗରର ସୁରକ୍ଷା ହୋଇଥାଏ । ଯଦି ସବୁ ଶବକୁ ରଖିଦିଆଯାଏ, ମିଶରର ପିରାମିଡ଼ ଭଳି, ତେବେ ତ ପୁଣି ବଞ୍ଚିଥିବା ଲୋକମାନଙ୍କ ରହିବା ପାଇଁ ଜାଗା ମିଳିବ ନାହିଁ । ଏଇ ଭୁଲ୍ କେବେହେଲେ କରନାହିଁ ଯେ ତୁମର ପ୍ରିୟ ମାଆ, ବାପା, ସନ୍ତାନର ଶବକୁ ଘରେ ରଖି ବସିଯିବ । ବୈଜ୍ଞାନିକ କହିଥାନ୍ତି ଯେ ଯେଉଁଠି ତୁମେ ବସିଛ, ସେଇଠି ଦଶ ଦଶଟି ମଣିଷର ଶବ ପୋତା ହୋଇଛି, କବର ତିଆରି ହୋଇଛି ଏବଂ ତୁମେ ତା' ଉପରେ ଏଗାରତମ ବ୍ୟକ୍ତି ବସିଛ । ଖୁବ୍ ଶୀଘ୍ର ତୁମ ଉପରେ ଦ୍ୱାଦଶତମ ବ୍ୟକ୍ତି ଆସି ବସିଯିବ ।

ମଲା ଶବ ପ୍ରତି ଅଧିକ ସ୍ନେହ କେବେହେଲେ ରଖନାହିଁ । କାରଣ ଶବ ସହିତ ଯଦି ଅଧିକ ପ୍ରେମ କରିବ ତେବେ ତୁମେ ବି ମୁର୍ଦ୍ଦାର ହୋଇଯିବ । ଆମେ ସେୟା ହୋଇଯାଇଥାଉ, ଯାହାପ୍ରତି ଆମର ପ୍ରେମ, ଆସକ୍ତି, ମମତା ହୋଇଥାଏ । ମୃତ ଶବ ଉପରେ ଶ୍ରଦ୍ଧାର ଦୁଇଟି ପୁଷ୍ପ ଚଢ଼ାଇ ଦେଇ, ନିଜର ବସ୍ତ୍ରକୁ ସମ୍ଭାଳି ଚାଲିଯାଅ । କେବେ ବି ଭାବପ୍ରବଣ ହୋଇଯାଅନା, ସିଏ ତୁମର ଯେତେ ପ୍ରିୟ ମଣିଷ ହୋଇଥାଉ ନା କାହିଁକି ।

ଭିତରକୁ ଚାଲ ଦୁର୍ଘଟଣାରୁ ବଞ୍ଚିବାକୁ ଚାହୁଁଛ ତ । ଯାହାଙ୍କ ପାଖରେ ଅଧିକ କାମ ଦାମ ନାହିଁ, ସେଇ ଗରୀବ, ଧନୀ ଠାରୁ ବି ଅଧିକ ଧନୀ । ବାହାରେ ଯେତେ ଧନ, ପଦ, ପରିବାର ଥାଉ, ତା'ଠାରୁ ସମୟ ବାହାର କରି ଭିତରେ ବୁଡିଯାଅ । ଯେତିକି ପରିମାଣରେ ତୁମ ପାଖରେ ସାଧାରଣ ଜୀବନ ହେବ, ସେତିକି ସୁବିଧା ତୁମକୁ ଆତ୍ମା ଆଡ଼କୁ ଯିବାକୁ ମିଳିବ, ତୁମେ ତା'ର ଲାଭ ଉଠାଇବ । ଧନ, ପଦ, ପରିବାର ପ୍ରତିଷ୍ଠା ଇତ୍ୟାଦି ଯେତେ ଅଧିକ ହେବ, ସେତିକି ଭିତରକୁ ଯିବାପାଇଁ କଷ୍ଟକର ହେବ । **ସୁଖ ସମ୍ପତ୍ତି ଘର ଆୱେ, କଷ୍ଟ ମିଟେ ତନକା** ଏଇ **"ଓମ୍ ଜୟ ଜଗଦୀଶ ହରେ"** ର ପ୍ରାର୍ଥନା ଭିତରେ ବୁଡ଼ିରହି ଜୀବନକୁ ନଷ୍ଟ କରନାହିଁ ।



# ।। ଯେ ପାଇଛି କହେ ସେ ବାଇଆ ।।

 ଆଡ଼େ ଯାଉଛ ? ପ୍ରାର୍ଥନା କରିବା ପାଇଁ ବାହାରକୁ, ଦୂରକୁ ଯିବାର ଆବଶ୍ୟକତା ନାହିଁ । ଯେଉଁଠି ନଇଁପଡୁଛ, ସେଇଠି ପରମାତ୍ମା ଅଛନ୍ତି, ସେଇଠି ପ୍ରାର୍ଥନା ହୋଇପାରିବ । ତୁମର ପାଦତଳେ ହିଁ ପରମାତ୍ମା ଅଛନ୍ତି । ମକ୍କା, ମଦିନା, କାବା ଯାଅନା କି ତୀର୍ଥ, ମନ୍ଦିର ଯାଅନା । ତାଙ୍କୁ ଖୋଜିବା ପାଇଁ କୁଆଡ଼େ ଯିବ ? ତାଙ୍କର କିଛି ଖବର, ଠିକଣା ଅଛି ? କେବଳ ବାଟବଣା ହେବା ହିଁ ସାର ହେବ । କାଶୀ, ବୋଧଗୟା, ସାରନାଥ, ଗିରନାର ଯିବାର ଆବଶ୍ୟକତା ନାହିଁ । ଖୋଜୁଥିବା ଯୋଗୁ ତାଙ୍କୁ ହଜାଇ ଥିବାର ଭ୍ରମ ଦୃଢ଼ ହୋଇଯାଉଛି ।

କେଉଁଠି ଚାଲି ଚାଲି ଯାଇ ପହଞ୍ଚିବାର ନାହିଁ, ତୁମେ ଚାଲିବା ଆରମ୍ଭ କରିବା ପୂର୍ବରୁ ହିଁ ପହଞ୍ଚି ଯାଇଛ । ବାସ୍, ବାହାରୁ ଆଖି ବନ୍ଦକରିଦେଇ ଭିତରେ ନିଜ ଆଡ଼କୁ ଆଖି ଖୋଲିଦିଅ । ବସିଯାଅ ସବୁ କରିବା ଛାଡ଼ିଦେଇ, କିଛି କର ନାହିଁ ଦେଖ ଏବଂ ପହଞ୍ଚିଯାଅ ।

ଏହା ହେଉଛି ମହାମନ୍ତ୍ର, ଏହାକୁ ଭଲ ଭାବରେ ବୁଝିଯାଅ । ତୁମେ ସେଇଠି ଅଛ, ଯେଉଁଠି ତୁମକୁ ପହଞ୍ଚିବାର ଅଛି । କେବଳ ତୁମର ବୋଧ ହଜିଯାଇଛି, ହୋଶ୍ ଚାଲିଯାଇଛି । ପରମାତ୍ମା କେଉଁଠି ହଜିଯାଇନାହାନ୍ତି, ପରମାତ୍ମା ତୁମଠୁ ଦୂରକୁ, ବାହାରକୁ ଯାତ୍ରା କରିବା ପାଇଁ ବା ତାଙ୍କ ଘର କିମ୍ବା ଗାଁକୁ ଯାଇନାହାନ୍ତି, ଯାହାଙ୍କୁ ଖୋଜିବା ପାଇଁ ତୁମକୁ କେଉଁଠିକି ଯିବାକୁ ପଡ଼ିବ, ପ୍ରତୀକ୍ଷା କରିବାକୁ ପଡ଼ିବ । ତୁମେ ସାଧନା କରି କରି ଆଜି ଯାଏ କ'ଣ ପାଇଲ ? ବର୍ତ୍ତମାନ ଆଉ କ'ଣ କଲେ ପାଇଯିବ ? ଜନ୍ମ-ଜନ୍ମରୁ ଏସବୁ ତ କରିଆସୁଛ । ଏବେ କରିବା ବନ୍ଦକର ଏବଂ କେବଳ ଦ୍ରଷ୍ଟା ହୋଇଯାଅ । ଭୋକ ଲାଗୁଛି ତ ତାକୁ ଦେଖ, ଏମିତି କେବେହେଲେ କୁହନାହିଁ ଯେ ମୋତେ ଭୋକ ଲାଗିଲା ବରଂ ଏମିତି ଜାଣିନିଅ ଯେ ପରମାତ୍ମା ଭୋକ ସୃଷ୍ଟି କରିଦେଲେ । ଭୋକ ସୃଷ୍ଟିକରିଛନ୍ତି ତ ଭୋଜନ ଦେଇ ଦେବା ପ୍ରାଣକୁ କିନ୍ତୁ ମୋତେ ଭୋକ

ଲାଗିଲା ଏବଂ ମୁଁ ଭୋଜନ କଲି, ଏହିଭଳି ମିଥ୍ୟା ଅଭିମାନ କେବେହେଲେ କରନାହିଁ । କର୍ତ୍ତା ବନିଯାଅ ନାହିଁ । ସାକ୍ଷୀ ରୁହ । ସବୁ କର୍ତ୍ତାପଣିଆରୁ ମୁକ୍ତ ହୋଇଯାଅ । କର୍ତ୍ତାପଣିଆକୁ ପ୍ରକୃତି ଉପରେ ଛାଡ଼ିଦିଅ । ପରମାତ୍ମାଙ୍କ ଉପରେ ଛାଡ଼ିଦିଅ ।

ତାଙ୍କର ଇଚ୍ଛା ବିନା ପତ୍ରଟିଏ ବି ହଲେ ନାହିଁ । ତୁମେ ନିଜକୁ ମଝିରୁ ହଟାଇ ନିଅ । ତୁମେ କିଏ ହୋ କରିଲାବାଲା ? ଯାହା ସବୁ ହେଉଛି ତାଙ୍କ ଇଚ୍ଛାରେ । କେହି ଜଣେ ତୁମକୁ ମାରିଲା ତ ଭାବିନେଲ ଯେ ସିଏ ହିଁ କହିଥିବ, ସେଥିପାଇଁ ମୋତେ ମାରିଲ । ଯିଏ ରାଗ-ଦ୍ୱେଷ, ଆପଣା-ପର, ପୁଣ୍ୟ-ପାପରୁ ପାର ପାଇଗଲା, ସିଏ ହିଁ ମୁକ୍ତ । ମୁକ୍ତିର ଅର୍ଥ ଏୟା ନୁହେଁ ଯେ ତୁମେ ମୁକ୍ତ ହୋଇଗଲ । ମୁକ୍ତିର ଅର୍ଥ ହେଉଛି ତୁମେ ହଜିଗଲ, ଅହଂକାର ଶୂନ୍ୟ ହୋଇଗଲ । ତୁମେ ବଞ୍ଚିରହିଛ ତ ମୁକ୍ତି କାହିଁ ? ମୁକ୍ତିର ଅର୍ଥ ହେଲା ତୁମେ ନଷ୍ଟ ହୋଇଗଲ । ତୁମେ ଚାଲିଗଲ ।

ଜ୍ଞାନକୁ ବୁଲେଇ ବିକେଇ ହୁଅନାହିଁ, କେହି ଜିଜ୍ଞାସା ନେଇ ଶୋଷିଲା ହୋଇ ଆସୁଛି ତ ତାକୁ ବତାଇଦିଅ । ନପଚାରିଲେ କେବେ କାହାକୁ କୁହନାହିଁ ।

**ହୀରା ୱହାଁ ନ ଖୋଲିୟେ, ଜହାଁ ହେ ଖୋଟୀ ହାଟ ।**
**କସକର ବାନ୍ଧୋ ଗାଣ୍ଠ ମେଁ, ଉଠକର ଚାଲୋ ବାଟ ।।**

ଅହଂ ବ୍ରହ୍ମାସ୍ମି ! ମୁଁ ହିଁ ବ୍ରହ୍ମ । ବର୍ତ୍ତମାନ ସୁଦ୍ଧା ଅହଂ ଏବଂ ବ୍ରହ୍ମଙ୍କ ଭିତରେ ଭେଦଭାବ ତିଷ୍ଠିରହିଛି । ମୁଁ କିଏ, ବ୍ରହ୍ମ କିଏ ? ବର୍ତ୍ତମାନ ଦୁଇ ବଞ୍ଚିରହିଛି । ବର୍ତ୍ତମାନ ତୁମେ ଦୁଇଟି ମଝିରେ ସମ୍ବନ୍ଧ ଯୋଡ଼ିବାରେ ଲାଗିଯାଇଛ । ମାତ୍ର ଦୁଇ ନଷ୍ଟ ହେଉନାହିଁ । ମାତ୍ର ଯାହାଙ୍କୁ ଦ୍ୱିତୀୟ ବୋଲି କିଛି ଦେଖା ହିଁ ଯାଉନାହିଁ, ସିଏ କ'ଣ ଭାବିବ, ସିଏ କ'ଣ କହିବ ? ସିଏ କାହାର ଚିନ୍ତନ କରିବ ?

ଯିଏ ବାହାରେ ବିଶେଷତା ପ୍ରଦର୍ଶନ କରାଉଛନ୍ତି ଯଥା - ଶୀର୍ଷାସନ, ଆସନ, ପ୍ରାଣାୟାମ, ବେଶ, ଉପବାସ, ଫଳାହାର, ପତ୍ରାହାର, ପଞ୍ଚାଗ୍ନି ସ୍ଥାପନ, ତପସ୍ୟା ଇତ୍ୟାଦି, ସେତେବେଳେ ବୁଝିବା ଉଚିତ ଯେ ତାଙ୍କ ଭିତରର ଦୀପ ପ୍ରକାଶିତ ହୋଇନାହିଁ, ତାଙ୍କ ଭିତରେ ଅନ୍ଧକାର ଘୋଟି ରହିଛି । ସେଥିପାଇଁ ଯେଉଁ ପ୍ରଭେଦ ଦୀପର ଆଲୋକ ଦ୍ୱାରା, ଜ୍ଞାନ ଦ୍ୱାରା ଦେଖାଯିବା କଥା, ସେ ତାକୁ ଉଲଗ୍ନ ରହି ଭୋକିଲା ରହି, ଅଳ୍ପ ଶୋଇ ଦେଖାଇବାକୁ ଚାହୁଁଛନ୍ତି । ତୁମେ ଦେଖୁଛ ତୁମର ସାଧୁ, ମହାତ୍ମାମାନଙ୍କୁ । ସେମାନେ ସବୁ ଦିଗରୁ ଚେଷ୍ଟା କରି ଚାଲିଥାନ୍ତି ତୁମ ଠାରୁ ବିଶିଷ୍ଟ ହେବା ପାଇଁ । ରାତି ତିନିଟା ବାଜିଲେ ଉଠିବେ, ଗାଁ ଲୋକମାନଙ୍କୁ ବି ଉଠାଇବେ, ଖୁବ୍ ଜୋର୍‌ରେ ରାମ-ରାମ ଜପ କରିବେ, ରେକର୍ଡ଼ ବଜାଇବେ, ଶଙ୍ଖ ଫୁଙ୍କିବେ, ଘଣ୍ଟା ବଜାଇବେ ।

ସେହିପରି ''ମୁଁ ଶରୀର ନୁହେଁ, 'ମୁଁ ହେଉଛି ଆତ୍ମା'' ଏଇ କଥାକୁ କାହିଁକି ବାରମ୍ବାର କହିଚାଲିଛ ? ଶିବୋଽହଂ, ଶିବୋଽହଂ, ଅଛ ତ ଅଛ ପୁଣି ତାକୁ ଦୋହରାଉଛ କାହିଁକି ? ବାରମ୍ବାର କହି ବୋଲିବା ତ ଏଇ କଥାକୁ ସିଦ୍ଧ କରୁଛି ଯେ ଭିତରେ ଲୁଚି ରହିଛି ଦେହଭାବ, ତାକୁ ମିଥ୍ୟା ପ୍ରମାଣିତ କରିବା ପାଇଁ, ଭୁଲାଇଦେବା ପାଇଁ ଉପରେ, 'ମୁଁ ହି ଆତ୍ମା'ର ଆବରଣ ପକାଇ ଚାଲିଛ ।

ଯାହା ଆସୁଛି ତାକୁ କରିବା, ଯେଉଁ ସ୍ଫୁରଣ ଉଠୁଛି ତାକୁ ଉଠିବାକୁ ଦେବା, ସହଜ ଭାବରେ ଜୀଇଁବା, ବଞ୍ଚିବା ପାଇଁ ପୂର୍ବରୁ କିଛି ଯୋଜନା କରିବା ନାହିଁ । ସାକ୍ଷୀ ପୁରୁଷର ସମ୍ପୂର୍ଣ୍ଣ ଜୀବନ ବର୍ତ୍ତମାନରେ ଅଛି । ତୁମେ ଯେପରି ଅଛ ଏହାହିଁ ପ୍ରଭୁଙ୍କ ପୂଜା, ଏହାହିଁ ପରିକ୍ରମା, ଏହାହିଁ ଭୋଗ, ଏହାହିଁ ହେଉଛି ଦଣ୍ଡବତ । ସନ୍ଥ କବୀର କହୁଛନ୍ତି – **'ସାଧୋ ସହଜ ସମାଧି'** – ବାସ୍ ତୁମେ ଏତିକି କେବଳ କର ଯେ ପ୍ରତ୍ୟେକ କର୍ମ ହୋଶ୍ ପୂର୍ବକ ହେଉ । ସାକ୍ଷୀ ଭାବରେ କରିଯାଅ । ଯାହାଙ୍କୁ ଠିକଣା ମିଳିଯାଏ ଯେ ମୁଁ କିଏ, ସିଏ ତ ନିଜକୁ କିଛି ବୋଲି ମାନେନାହିଁ, ସିଏ ତ କହିଥାଏ ମୁଁ ହେଉଛି ଅଜ୍ଞାନୀ, ମୁଁ କିଛି ଜାଣେ ନାହିଁ କିନ୍ତୁ ଯିଏ କିଛି ଜାଣେ ନାହିଁ ସିଏ ନିଜକୁ ନାନା ରଙ୍ଗରେ, ଢଙ୍ଗରେ ତିଳକ, କଣ୍ଠି, ମାଳା, ଜଟା ରଖି ଲୋକଙ୍କୁ ଦେଖାଇହେବାରେ ଲାଗିଯାଏ । ଲେବୁଲ୍ ମାରି ଦେଇଥାଏ । ଏଇ ବଡ଼ ହେବାର, କିଛି ବିଶେଷ ହେବାର ବେମାରୀ ସବୁ କ୍ଷେତ୍ରରେ ସମସ୍ତଙ୍କୁ ଲାଗିଯାଇଛି । ଲୋକେ ନିଜର ଅହଂକାରକୁ ସଜାଇ ରଖିବାରେ ଲାଗିଛନ୍ତି । ଅହଂକାରକୁ ଯଦି ହୋଶ୍‌ପୂର୍ଣ୍ଣ ଭାବରେ ଦେଖିବ ତ ତେବେ ସାକ୍ଷୀ ଭିତରକୁ ପ୍ରବେଶ କରିଯିବ, ଅହଂକାର କ୍ଷୀଣ ହୋଇଯିବ ।

ସୁଖର ଏତିକି ମାତ୍ର ଅର୍ଥ ହେଉଛି ଯେ ତୁମେ ଭିତରେ ଆତ୍ମା ସହିତ ଯୋଡ଼ି ହୋଇଗଲ । ଭିତର ସହିତ ସମ୍ବନ୍ଧ ସ୍ଥାପନ ହୋଇଗଲା । କେଉଁ ବାହାନା ନେଇ ଯୋଡ଼ି ହେଉଛ ସେଇ କଥା ମହତ୍ତ୍ୱପୂର୍ଣ୍ଣ ନୁହେଁ । ଭିତର ସହିତ ଯେତେବେଳେ ବି ସମ୍ବନ୍ଧ ଯୋଡ଼ି ହୋଇଯାଏ, ସେତେବେଳେ ସୁଖ ମିଳିଥାଏ ଏବଂ ଭିତର ସହିତ ସମ୍ବନ୍ଧ ତୁଟି ଯାଉ ଯାଉ ଦୁଃଖ ମିଳିଥାଏ ।

ଧ୍ୟାନ, ସମାଧି ହେଉଛି ଔଷଧ ଏବଂ ବିକ୍ଷେପ ହେଉଛି ଏକ ବେମାରୀ । 'ବେମାରୀ' ଯଦି ନାହିଁ ଔଷଧର ଆବଶ୍ୟକତା ନାହିଁ ।

ମୋ ପାଇଁ ଏହା ହେଉଛି କର୍ତ୍ତବ୍ୟ, ଯଦି ତୁମର ଏହିଭଳି ଚିନ୍ତା ରହୁଥାଏ, ତେବେ ତୁମେ ବର୍ତ୍ତମାନ ସଂସାରରେ ହିଁ ରହିଛ । ଯେଉଁ ଦିନ ଏମିତି ତୁମକୁ ଲାଗିବ ଯେ ମୋର କୌଣସି କର୍ତ୍ତବ୍ୟ ନାହିଁ, ଯିଏ ସବୁର ରଚନା କରିଛନ୍ତି, ତାଙ୍କ ପାଇଁ ସିନା କର୍ତ୍ତବ୍ୟ ରହିବ, ମୁଁ ତ ଅଭିନୟ କରୁଛି,

ତେଣୁ ଯେଉଁ ପାର୍ଟ ମୋତେ ଦେଇଛନ୍ତି, ତାହା ପାଳନ କରିଦେଉଛି । ଯେଉଁଦିନ ତୁମେ କର୍ତ୍ତା ନହୋଇ ଅଭିନେତା ହୋଇ ବଞ୍ଚିବା ଆରମ୍ଭ କରିଦେଲ, ବାସ୍ ସେଇ ଦିନ ସାକ୍ଷୀ ପ୍ରକଟ ହୋଇଗଲା । ଘର ଚଳାଇବାର ନାମ ସଂସାର ନୁହେଁ ବରଂ ଏହା ହେଉଛି ମୋର କର୍ତ୍ତବ୍ୟ – ଏହିଭଳି ମିଥ୍ୟା ଅହଂକାର କରିବା ହିଁ ହେଉଛି ସଂସାର ବନ୍ଧନ ।

ଯେତେବେଳେ ଏମିତି ଲାଗିବ ଯେ ଯେମିତି ଅଛି ସେମିତି ଶୁଭ, ଯେମିତି ହେବାର ଥିଲା ସେମିତି ହିଁ ହୋଇଛି । ଯେମିତି ଅଛି, ଯେମିତି ହେବାର ଥିଲା ସେମିତି ହିଁ ହୋଇଛି। ଯେମିତି ଅଛି, ଯିଏ ଅଛି ତା' ସହିତ ତୁମେ ସମ୍ପୂର୍ଣ୍ଣ ସ୍ୱୀକାରତା ନେଇଆସ, ତାକୁ ସ୍ୱୀକାର କରିନିଅ, ତେବେ ଯାଇ ପରମାତ୍ମାଙ୍କ ଠାରେ ସମର୍ପଣ ହେଲା ବୋଲି ଜାଣିବ । ତୁମର ସଂସାର ସମାପ୍ତ ହେଲା, ତୁମେ ଜୀବନ୍ମୁକ୍ତ ହେଲ । ହେ ପରମାତ୍ମା ! ଯେମିତି ତୁମର ଇଚ୍ଛା, ମୋତେ ଫୁଲ ଓ କଣ୍ଟା ଉଭୟ ପସନ୍ଦ, ଯାହା ବି ତୁମେ ଦେବାକୁ ଚାହିଁବ ତାହା ଆମ ପାଇଁ ଶୁଭ, ଆମର କଲା ଭଳି ଆଜି ପର୍ଯ୍ୟନ୍ତ କିଛି ହୋଇନି, ବହୁତ କାର୍ଯ୍ୟ କରି କରି ଜନ୍ମ ଜନ୍ମରୁ ଦେଖି ସାରିଲିଣି । ତୁମେ ଯାହା କରାଇବାକୁ ଚାହୁଁଛ, ତାହା ହିଁ ଶୁଭ ।

ଯିଏ ଜ୍ଞାନକୁ ସଂଗ୍ରହ କରିବାରେ ହିଁ ଲାଗିଛି କିନ୍ତୁ ସେଇ ମୁଁ ରୂପରେ, ଆତ୍ମା ରୂପରେ ଯିଏ ସ୍ୱୀକାର କରିନାହିଁ, ସେଇ ସଂଗୃହୀତ ଜ୍ଞାନ, ତା'ର ଅହଂକାରର ଜ୍ଞାନ ହିଁ ହେଉଛି ଭୋଜନ । ସିଏ ଜ୍ଞାନ ଠାରୁ ବଞ୍ଚିତ ରହିଯାଇଥାଏ। ଜ୍ଞାନ ଭିତରୁ ପ୍ରକଟ ହୋଇଥାଏ । ଯାହା ବାହାରୁ ନିଆଯାଇଥାଏ, ତାହା ଜ୍ଞାନ ନୁହେଁ ଉଧାର, ତାହା ଅସନା, ମଇଳା ଗଦା । ବାହାରୁ ଶୁଣି, ପଢିକରି ସଂଗ୍ରହ କରି ଚାଲିବା ଯାଏ ଅଜ୍ଞାନୀ ହୋଇ ରହିଥିବ ।

ପ୍ରକୃତ ସଦ୍‌ଗୁରୁ, ସନ୍ଥ, ମହାତ୍ମା ହେଉଛନ୍ତି ସିଏ, ଯିଏ ତୁମକୁ ସାକ୍ଷୀ ରହିବାର ପ୍ରେରଣା ଦେଇଥାନ୍ତି । ସତକର୍ମ କରିବାର ପ୍ରେରଣା ସମସ୍ତେ ଦେଇଥାନ୍ତି, କିନ୍ତୁ ସଦ୍‌କର୍ମ କଲାବେଳେ ତା' ସାଙ୍ଗରେ ପାପକର୍ମ ବି ଅବଶ୍ୟ ହୋଇ ଚାଲିଥିବ । ବିନା ପାପକର୍ମରେ ମନ୍ଦିର ତିଆରି କଲା ଭଳି ସଦ୍‌କର୍ମ କେବେହେଲେ ହୋଇପାରିବ ନାହିଁ । ବାସ୍ତବରେ ଯିଏ ସନ୍ଥ, ସିଏ ତ ତୁମକୁ ଏୟା କହିନଥାନ୍ତି ଯେ ଏୟା କର, ଏୟା କରନାହିଁ ବୋଲି । ସିଏ ତ ଏୟା କହିଥାନ୍ତି ଯେ ତୁମେ ନିଜକୁ ଜାଣିନିଅ ଯେ ତୁମେ କିଏ । ତୁମେ କେବଳ ସାକ୍ଷୀ ହୋଇଯାଅ । ତା'ପରେ ଯାହା ହେବ ତାହା ଠିକ୍ ହେବ ଏବଂ ନିଜକୁ ନଜାଣିବା ପୂର୍ବରୁ ଯାହାବି ହେବ ତାହା ଭୁଲ୍ ହିଁ ହେବ। ସାକ୍ଷୀ ଭାବରେ ଜାଗିଗଲେ ସବୁସମସ୍ୟାଗୁଡ଼ିକର ସମାଧାନ ହୋଇଯାଇଥାଏ । ନ ଜାଗିଲେ କୌଣସି ସମସ୍ୟାର ସମାଧାନ ହୁଏ ନାହିଁ ।

କାହା ଠାରୁ ଶୁଣି ମାନିନେବାକୁ ଜ୍ଞାନ କୁହାଯାଏ । ନିଜର ଅନୁଭବ ଦ୍ୱାରା ଯାହା ଆସିଥାଏ ତାକୁ ବିଜ୍ଞାନ କୁହାଯାଏ । ସାଇନ୍‌ସକୁ ବିଜ୍ଞାନ କୁହାଯାଏ କାରଣ ସାଇନ୍‌ସ ହେଉଛି ପ୍ରୟୋଗାତ୍ମକ, ଅନୁଭବ ସିଦ୍ଧ । ସେଥିପାଇଁ ଶୁଣିଥିବା ହେଉଛି ଜ୍ଞାନ ଏବଂ ଜାଣିଥିବା ହେଉଛି ବିଜ୍ଞାନ ।

ଯେତେବେଳେ ତୁମେ କହିଥାଅ ଯେ ଏହା ହିଁ ମୁଁ, ସେତେବେଳେ ଗୋଟିଏ ଛୋଟିଆ ବୃତ୍ତ ତିଆରି କରିନେଇଥାଅ । ତୁମେ କାହିଁକି କେବଳ ମନୁଷ୍ୟ ସହିତ ନିଜକୁ ଯୋଡ଼ିଦେଉଛ । କାହିଁକି କହୁନାହଁ ଯେ ମୁଁ ହେଉଛି ଜୀବନ । ଏଇଥିରେ ମନୁଷ୍ୟ କ'ଣ ସବୁ ପଶୁ ପକ୍ଷୀ, ଗଛ ଲତା ସମ୍ମିଳିତ ହୋଇଯିବେ । ପୁଣି ଏମିତି କାହିଁକି କହୁନାହଁ ଯେ 'ମୁଁ ହିଁ ବ୍ରହ୍ମ' ମୁଁ ହେଉଛି ସବୁର ଆଧାର, ଅସ୍ତିତ୍ୱ । ସବୁ କିଛି, ଯାହା କିଛି ଅଛି, ତା' ସହିତ ମୁଁ ହେଉଛି ଏକ ।

ଯଦି କେହି ପଚାରେ ଯେ ତୁମେ ପରମାତ୍ମାଙ୍କୁ ପାଇଗଲ ? ସେତେବେଳେ ତାକୁ ଏୟା କହିବା ଉଚିତ୍ – ଯେ ''କିଏ ପାଇଲା, କାହାକୁ ପାଇଲା, କେଉଁଠୁ ପାଇଲା ? ସବୁ କିଛି ତ ସିଏ । ତାଙ୍କ ବିନା ଏଇଠି କେହି ପାଇବାବାଲା ନାହାଁନ୍ତି, ନା କିଛି ପାଇଲା ଭଳି ଅଛି । ଏଇଠି ତ ବେଦର ଏକମାତ୍ର ଘୋଷଣା ହେଉଛି ଯେ **'ସର୍ବଂ ଖଲିଦ୍ୱଂ ବ୍ରହ୍ମ', 'ନେହ ନାନାସ୍ତି କିଞ୍ଚନ'** ଏଇଠି ଏକମାତ୍ର ବ୍ରହ୍ମଙ୍କ ବ୍ୟତୀତ ଆଉ କେହି ନାହାଁନ୍ତି ।

ତୁମେ ବାହାରେ ବାଟବଣା ହେଉଛ । ତୁମେ କେଉଁଠି ଖୋଜୁଛ ? କାହାକୁ ମାଗିବାକୁ ଯାଉଛ ? ଯିଏ ହେଉଛି ତୁମର ଭିତରର ସମ୍ପତ୍ତି, ସିଏ ଆଉ କାହାଠାରୁ ମିଳିବ ନାହିଁ । ଜନ୍ମ-ଜନ୍ମରୁ ଅନେକ ଦ୍ୱାର ଦ୍ୱାର ବୁଲି ଭିକ ମାଗିଲ କିନ୍ତୁ ନିଜ ଭିକ୍ଷାପାତ୍ରକୁ ଦେଖ, ସିଏ ଯେମିତି କି ସେମିତି ଖାଲି କି ଖାଲି ହୋଇ ପଡ଼ିଛି ।

ସବୁଲୋକଙ୍କର ଏହିଭଳି ଭ୍ରାନ୍ତି ରହିଛି ଯେ ବାହାରେ ସବୁ ଜାଗାରେ ଅମୃତ ବରଷୁଛି । ତୁମେ ଧାଇଁ ଧାଇଁ ଯାଉଛ ଦୂରରେ ଥିବା ପର୍ବତ, ତୀର୍ଥ ସ୍ଥାନଗୁଡ଼ିକୁ । ମାତ୍ର ସେଇଠି ଦେଖିଲ ଯେଉଁ ଲୋକ ସାରା ଜୀବନ ଧରି ସେଇଠି ରହୁଛନ୍ତି, ସେଇ ତୀର୍ଥମାନଙ୍କରେ, ସେମାନଙ୍କ ଜୀବନରେ କ'ଣ କିଛି ଅମୃତ ବରଷିଲା ? ପୁନଶ୍ଚ ତୁମ ପାଇଁ ପରମାତ୍ମା କାହିଁକି ଶତ୍ରୁତା କରୁଛନ୍ତି, ସିଏ ସମସ୍ତଙ୍କ ଉପରେ ଅମୃତ ବର୍ଷା କରି ଚାଲିଛନ୍ତି ଏବଂ ତୁମ ପାଇଁ କାହିଁକି ପାଣି ବି ନାହିଁ ?, ମରୁଭୂମିରେ ତୁମକୁ ପକାଇ ଦେଇଛନ୍ତି । ଯଦି ଆଖି ଖୋଲିନାହିଁ ତେବେ କେଉଁଠି ବରଷି ଯାଉ ନାହିଁ ଏବଂ ଯଦି ଆଖି ଖୋଲିଯାଇଛି ତେବେ ସମସ୍ତଙ୍କ ଭିତରେ ସମସ୍ତଙ୍କ ଚାରି ପାଖରେ ସିଏ ବରଷି ଯାଉଛନ୍ତି ।

**କବୀର ଭୂଖା କୋଇ ନହୀଂ, ସବକୀ ଗଠରୀ ଲାଲ୍ ।**
**ଗାଁଠ ଖୋଲ ଦେଖେ ନହୀଂ, ତାତେ ଭୟୋ କଂଗାଲ ।।**

ଯିଏ ଦେହ ଭିତରେ ନିଜକୁ ଆତ୍ମାରୂପରେ ଖୋଜିନିଏ, ସିଏ କେବେହେଲେ ମରେନାହିଁ । ଏହାହିଁ ହେଉଛି ଜ୍ଞାନମାର୍ଗ । ଦେହ ଭିତରେ ଯାହାକୁ ପାଇଗଲ ତାକୁ ପରମାତ୍ମା କହନ୍ତି । ନିଜ ଠାରୁ ବାହାରେ ଯାହାକୁ ପାଇଗଲ, ତାକୁ ଭଗବାନ କହନ୍ତି । ବାହାରେ ବି ତାଙ୍କୁ ଖୋଜିନେଲ, ଯିଏ ନଷ୍ଟ ହୁଏ ନାହିଁ, ତାକୁ ଭକ୍ତିମାର୍ଗ କହନ୍ତି । ତୁମକୁ ଯାହା ଭଲ ଲାଗୁଛି କର । ଦୁଇଟି ରାସ୍ତା ଖୋଲା ପଡ଼ିଛି, ଉଭୟଙ୍କର ଲକ୍ଷ୍ୟ ହେଉଛି ଏକ ।

ସତ୍ୟର ମହିମା ହେଉଛି ଶୁଣିନେଲ ତ ହୋଇଗଲା । ତୁମର କୃତ୍ୟ ଉପରେ ସତ୍ୟ ନିର୍ଭରଶୀଳ ନୁହେଁ । ସତ୍ୟ ତ ତୁମର ପ୍ରତିଟି ଶ୍ୱାସରେ, ଛାତିର ପ୍ରତିଟି ସ୍ପନ୍ଦନରେ, ପ୍ରତ୍ୟେକ ରକ୍ତ ବିନ୍ଦୁରେ ମିଶି ରହିଛି । କେବଳ ସ୍ମରଣ କରିବାର ଅଛି । କେବଳ ଶ୍ରବଣ ଦ୍ୱାରା ଉପଲବ୍ଧତାର ବୋଧ ଜାଗ୍ରତ ହୋଇପାରେ । ଯଦି ସମ୍ୟକ୍ ଶ୍ରବଣ ହୋଇଗଲା, ତେବେ ସେଇ ପରମାତ୍ମା ପାଖରୁ ପାଖରେ ବି ତୁମ ଭିତରେ ଅଛନ୍ତି, ଯିଏ ତୁମେ ନିଜେ ସ୍ୱୟଂ, ତାକୁ କେଉଁଠି ଖୋଜିବାର ନାହିଁ ।

ଆମକୁ ଅନାଭ୍ୟାସ ଶିଖିବାକୁ ହେବ । ମନ ଅଭ୍ୟାସ କରିଥାଏ । ମନର ସାଧନା ମନର ଉପରକୁ, ମନ ସେପାରିକୁ ନେଇଯାଇ ପାରିବ ନାହିଁ । ଆମେ ମନର ଚଞ୍ଚଳତାକୁ ଶାନ୍ତ କରିବାକୁ ଚାହିଁଥାନ୍ତି ଏବଂ ଶାନ୍ତ ହେବାର ସାଧନା ବି ମନ ଦ୍ୱାରା କରାଇଥାନ୍ତି ତେଣୁ ମନ ଶାନ୍ତ ହେବା ଅପେକ୍ଷା ଅଧିକ ହିଁ ଚଞ୍ଚଳ ହେବ ।

ମନ ଆଜିପର୍ଯ୍ୟନ୍ତ ଯାହା ବି ଅଭ୍ୟାସ କରି ଆସିଛି ତାକୁ ଏବେ ଛାଡ଼ିଦେବାକୁ ହେବ । ସେଥିପାଇଁ ମୁଁ କହୁଛି ତୁମେ ଅଭ୍ୟାସ ଦ୍ୱାରା କେବେହେଲେ ଉପରକୁ ଯାଇପାରିବ ନାହିଁ । ମନ ସବୁ ଅଭ୍ୟାସକୁ ଛାଡ଼ିଦେଉ ଏବଂ ଶାନ୍ତ ହୋଇଯାଉ । ଏହାକୁ ଅଭ୍ୟାସ କୁହାଯିବ ନାହିଁ । କାରଣ ଏହା ତ ହେଉଛି ଆମର ସ୍ୱଭାବ । ମୁଠା ବାନ୍ଧିବାକୁ ଅଭ୍ୟାସ କୁହାଯିବ କିନ୍ତୁ ମୁଠା ଖୋଲିବା ଅଭ୍ୟାସ ନୁହେଁ । ଚେଷ୍ଟା କରି ଆଣିଥିବା ପରିବର୍ତ୍ତନର କୌଣସି ମୂଲ୍ୟ ନାହିଁ । ଅଭ୍ୟାସ ଦ୍ୱାରା ଅଣା ଯାଇଥିବା ବୈରାଗ୍ୟ ହେଉଛି ମିଥ୍ୟା । ଜ୍ଞାନ ଦ୍ୱାରା ଆସିଥିବା ପରିବର୍ତ୍ତନ ହିଁ ହେଉଛି ସ୍ଥାୟୀ ।



# ।। ପ୍ରେମ ଦାସତ୍ୱ ନୁହେଁ ।।

ସଂସାରରେ ତୁମେ ଯାହାକୁ ପ୍ରେମ ବୋଲି କହୁଛ, ସିଏ ତ ହିଂସା, ତା' ଚାରିପାଖରେ ତ ତୁମେ ପାଚେରୀ ଛିଡ଼ା କରାଇ ଦେଉଛ । ଶିକୁଳି ଲଗାଇ ଦେଉଛ । ଗୋଟିଏ ପକ୍ଷରେ ତାକୁ ପିଞ୍ଜରାରେ ବନ୍ଦ କରିଦେଲ, ତା'ର ଡେଣା କାଟିଦେଲ, ବର୍ତ୍ତମାନ ତା'ପାଇଁ ଆଉ କିଛି ସ୍ୱାଧୀନତା ବାକୀ ରହିଲା ନାହିଁ । ତୁମେ ତାକୁ ତୁମର ଚାକର ବନାଇଦେଲ । ସ୍ତ୍ରୀ'କୁ ଦାସୀ କୁହାଯାଇଥାଏ, ସିଏ ବି ନିଜକୁ ଦାସୀ ବୋଲି ମାନିନେଇଥାଏ, ତୁମେ ତା'ର ମାଲିକ ବନି ଯାଇଥାଅ । ସିଏ ପ୍ରେମ ନୁହେଁ ସିଏ ହେଉଛି ଅହଂକାର, 'ମୋର'–'ତୋର' । ଜଣେ ଆଉ ଜଣକର ବେକକୁ ବାନ୍ଧି ଦେଇଥାଏ । ତୁମର ପ୍ରେମ ତ ହେଉଛି ନିଜ ପତ୍ନୀ ପାଇଁ ଫାଶୀ ଭଳି, ଯାହା ବନ୍ଧା ହୋଇଯାଇଛି ତୁମ ଦ୍ୱାରା, ଫାଶ ହୋଇଯାଇଛି ତୁମ ଦ୍ୱାରା, ଏବେ ସିଏ ସାରା ଜୀବନ ଧରି ପଶ୍ଚାତ୍ତାପ କରି ଚାଲିଥିବ କାରଣ ସାତବେଢ଼ା ସିଏ ତୁମ ସହିତ ବୁଲିସାରିଛି ।

ତୁମେ ସ୍ତ୍ରୀକୁ ପ୍ରେମ କରୁଥାନ୍ତ ଯଦି ତାକୁ ସ୍ୱତନ୍ତ୍ରତା ଦେଇଥାନ୍ତ, ବାନ୍ଧି ରଖି ନଥାନ୍ତ । ତୁମେ ତାକୁ ମୁକ୍ତ ଆକାଶରେ ଉଡିବାର ସ୍ୱତନ୍ତ୍ରତା ଦେଇଥାନ୍ତ ନା ତାକୁ ପିଞ୍ଜରାରେ ବନ୍ଦ କରିଦେଇଥାନ୍ତ । ତୁମର ଏଇ ପ୍ରେମ ବଡ଼ ଭୟାନକ । ଯଦି ସିଏ କୌଣସି ବ୍ୟକ୍ତିକୁ ଦେଖି ଟିକିଏ ହସିଦେଲା, ତେବେ ତୁମର ପରସ୍ପର ଭିତରେ ରହିଥିବା ପ୍ରେମରେ ଜହର ବୋଳି ହୋଇଯିବ । ତୁମେ ତା'ର ବେକ, ନାକ, କାନ କାଟି ପକାଇବାକୁ, ମାରି ପକାଇବାକୁ ପ୍ରସ୍ତୁତ ହୋଇଯିବ ।

ତୁମେ କହିଥାଅ ଯେ–ମୁଁ ଚାହୁଁଛି ତୁମେ ଯେମିତି ରହିବାକୁ ଚାହୁଁଛ ଖୁସିରେ ରୁହ । ଏହା କି ପ୍ରକାର ଖୁସି କେଜାଣି, ଯଦି ନିଜ ମନ ମୁତାବକ କୌଣସି ସୁନ୍ଦର, ପ୍ରକୃତିରେ ଦୋହଲୁଥିବା ପୁଷ୍ପକୁ, ପୁରୁଷକୁ ଦେଖିଦେଲା ତୁମେ ଜୀବନ ନେବାକୁ ପ୍ରସ୍ତୁତ ହୋଇଯାଉଛ । ଯଦି ସିଏ କାହାକୁ ଦେଖି ହସିପକାଉଥିଲା ବା ତା' ପାଖରେ ବସି ଆନନ୍ଦିତ ହେଉଥିଲା, ତେବେ ତୁମର ପ୍ରସନ୍ନ

ହେବାର ଥିଲା, ଯଦି ପ୍ରକୃତରେ ତୁମେ ତାକୁ ପ୍ରେମ କରୁଥିଲ ଏବଂ ତା'ର ଖୁସି ଦେଖିବାକୁ ଚାହୁଁଥିଲ ତେବେ ତା' ଖୁସିରେ ନିଜକୁ ବି ପ୍ରସନ୍ନ ରଖିବା ଆବଶ୍ୟକ ଥିଲା । ମାତ୍ର ନାଁ, ତୁମେ କେବଳ ଉପରେ ଉପରେ କହୁଥିଲ ଯେ ମୁଁ ଖୁସି ଦେଖିବାକୁ ଚାହୁଁଛି, ବାସ୍ତବରେ ତ ତୁମେ ତା'ଠାରୁ ନିଜର ଖୁସି ହିଁ ଚାହୁଁଛ, ତା' ଖୁସିକୁ ହତ୍ୟା କରିଦେଇ । ଇଏ ପ୍ରେମ ନୁହେଁ, ଇଏ ସବୁ ବାକ୍‌ଚାତୁରୀ । ତୁମ ପ୍ରେମରେ ଯେ ପଡ଼ିଥାଏ, ସିଏ ମରିଥାଏ, ପଶ୍ଚାତ୍ତାପ କରିଥାଏ ଏବଂ ତାକୁ କିଛି ମିଳିନଥାଏ ।

ଯାହା ସହିତ ତୁମର ପ୍ରେମ ହେବ, ତା' ପ୍ରତି ତୁମ ମନରେ ଦୟା ଆସିବ, କରୁଣା ଆସିବ, ତୁମେ ତାକୁ ସହଯୋଗ ଦେବ, ସାହାରା ଦେବାକୁ ଚାହିଁବ । ସେ କେଉଁଠିକି ଯିବାକୁ ଚାହିଁଲେ ତାକୁ ସାହାଯ୍ୟ କରିବ । ତାକୁ ବାଟବଣା କରିବ ନାହିଁ । ସେ ଯେମିତି ହେବାକୁ ଚାହିଁବ, କରିବାକୁ ଚାହିଁବ ସେଥିରେ ସହଭାଗୀ ହେବ, ବାଧା ସୃଷ୍ଟି କରିବ ନାହିଁ । ତୁମେ ତା'ପାଇଁ କାରାଗାର ହୋଇଯିବ ନାହିଁ । ଯଦି ସିଏ ତୁମର ବିପରୀତରେ ବି ଯାଉଥାଏ, ଯଦି ଏହା ତା'ର ନିୟତି ହୁଏ, ତେବେ ସେ ବିପରୀତରେ ଗଲେ ଯାଉଥାଉ ପଛକେ ।

ଉପନିଷଦ କହିଥାଏ ପତିକୁ ପତ୍ନୀ, ପତ୍ନୀକୁ ପତି, ପିତାକୁ ପୁତ୍ର, ପୁତ୍ରକୁ ପିତା କେହି କାହାକୁ ସୁଖ ଦେବାକୁ ଚାହାନ୍ତିଁ ନାହିଁ । ସମସ୍ତେ ସମସ୍ତଙ୍କ ଠାରୁ ନିଜର ସୁଖ ଚାହିଁଥାନ୍ତି । ତେଣୁ ଏହା ବି ସିଦ୍ଧ ହୋଇଗଲା ଯେ ପୁଣ୍ୟ ବି ହେଉଛି ଭ୍ରାନ୍ତି । ପୁଣ୍ୟରେ ଭ୍ରାନ୍ତି ସେତେବେଳେ ହୋଇଥାଏ, ଯେତେବେଳେ ଆମେ ସୁଖ କାହାକୁ ଆଣି ଦେଇଥାନ୍ତି । ଯେତେବେଳେ ଆମେ କାହାକୁ ସୁଖ ଆଣି ଦେଉନାହାନ୍ତି, ତେଣୁ ପୁଣ୍ୟ ପାଉଥିବାର ଭ୍ରାନ୍ତି ହେଉଛି । ଏବଂ ଯେତେବେଳେ ଆମେ କାହାକୁ ସୁଖ ଆଣି ଦେଉନାହାନ୍ତି, ସେତେବେଳେ ଦୁଃଖ ବି ପହଞ୍ଚାଇ ପାରିବା ନାହିଁ । ଯେତେବେଳେ ଦୁଃଖ ଦେଉନାହାନ୍ତି, ସେତେବେଳେ ଏଇ ପାପ ବି ହେଉଛି ଭ୍ରାନ୍ତି । କାରଣ ଅନ୍ୟକୁ ଦୁଃଖ ଦେବାକୁ ହିଁ ପାପ ବୋଲି ମାନି ନିଆଯାଇଛି ।

ଯେଉଁ ବ୍ୟକ୍ତିର ସଂସ୍ପର୍ଶରେ ଆସିଲେ ତୁମ ଭିତରେ ପ୍ରେମ ଜାଗିଉଠିବ, ସେତେବେଳେ ଜାଣିଯିବ ଯେ ସିଏ ଜ୍ଞାନକୁ ଉପଲବ୍ଧ ହୋଇସାରିଛନ୍ତି । ବୁଦ୍ଧତ୍ୱ ଘଟି ସାରିଛି । ପୁନଶ୍ଚ ସେଇ ପ୍ରେମକୁ ତୁମେ ବି ଏକୁଟିଆ ସମ୍ଭାଳି ପାରିବ ନାହିଁ, ତୁମେ ତାକୁ ଅନ୍ୟମାନଙ୍କ ପାଇଁ ଲୁଟାଇବାରେ ଲାଗିଗଲ ତ ଜାଣିବ ଯେ ବୁଦ୍ଧତ୍ୱର ମହାକ୍ରାନ୍ତି ଘଟିଯାଇଛି । ବୁଦ୍ଧତ୍ୱର ମହାସୂର୍ଯ୍ୟ ତାଙ୍କରି ଜୀବନରେ ଉଦୟ ହୋଇଛି ।

ଯେ ପର୍ଯ୍ୟନ୍ତ ତୁମର ପ୍ରେମ ପାଇଁ ଅନ୍ୟର ଆବଶ୍ୟକତା ରହୁଛି, ତାହା ହେଉଛି ନିକୃଷ୍ଟ ପ୍ରେମ । ପ୍ରେମ ବାଣ୍ଟିବା ପୂର୍ବରୁ ପ୍ରେମକୁ ସୃଷ୍ଟି କରିବାକୁ ହେବ । ତେବେ ଯାଇ କାହାକୁ ପ୍ରେମ

ବାଣ୍ଟିପାରିବ । ଏକୁଟିଆ ବସିଥିଲା ବେଳେ ଯେତେବେଳେ ପ୍ରେମରେ ସଂପୂର୍ଣ୍ଣ ଆନନ୍ଦିତ ହୋଇଯିବ ସେତେବେଳେ ତୁମ ପାଖକୁ ଯିଏ ବି ଆସିବ, ସିଏ ବି ପ୍ରେମ ପୂର୍ଣ୍ଣ ବିଦ୍ୟୁତ୍ ତରଙ୍ଗରେ ପରିପୂର୍ଣ୍ଣ ହୋଇଯିବ ।

ଯଦି ତୁମେ ଏକୁଟିଆ ପ୍ରସନ୍ନ ହୋଇରହିନାହଁ, ତେବେ ଅନ୍ୟକୁ କିପରି ପ୍ରେମ ବାଣ୍ଟିପାରିବ ? ଯଦି ତୁମେ ଏକୁଟିଆ ଉଦାସୀନତାରେ, ଦୁଃଖରେ, ଚିନ୍ତାରେ, ଭୟରେ କ୍ରୋଧରେ, ବେମାରୀରେ, ବ୍ୟସ୍ତତାରେ, ଅପ୍ରସନ୍ନତାରେ, ଗରୀବ ଅବସ୍ଥାରେ, ଦୁଃଖରେ ଭରି ହୋଇଯାଇଛ, ତେବେ ପୁଣି ତାକୁ ଅନ୍ୟପାଖକୁ ଯାଉ ଯାଉ ବା ତା' ପାଖକୁ ଆସୁ ଆସୁ ଢାଳିଦେବାରେ ଲାଗିଯିବ । ଏହା ବ୍ୟତୀତ ତୁମେ ଅନ୍ୟକୁ ଅଧିକ କ'ଣ ଦେଇଥାଅ ?

ଯଦି ତୁମେ ପ୍ରେମ କରୁଥାଅ ତେବେ ପତ୍ନୀକୁ ମଧ ମୁକ୍ତିଦିଅ, ବାନ୍ଧି ପକାଅ ନାହିଁ । ଯଦି ପତ୍ନୀ ଚାହୁଁଥାଏ ଯେ ପତି ପ୍ରସନ୍ନ ହୁଅନ୍ତୁ, ଆନନ୍ଦିତ ହୁଅନ୍ତୁ, ତେବେ, ତାଙ୍କୁ ବାନ୍ଧି ପକାଅ ନାହିଁ, ମୁକ୍ତ କରିଦିଅ । ନିଜେ ଜେଲର ବନିଯାଇ ଘରକୁ ଜେଲ କରିଦିଅ ନାହିଁ । ସାଧାରଣତଃ ଲୋକେ ଘରକୁ ଜେଲ୍‌ଖାନା ବନାଇ ଦେଇଛନ୍ତି । ସମସ୍ତେ କାରବାସ ଭିତରେ ଶ୍ୱାସରୁଦ୍ଧ ହୋଇ ବଞ୍ଚି ରହିଛନ୍ତି ।

ଯେତିକି ଯେତିକି ପରସ୍ପର ଭିତରେ ସ୍ନେହ ବଢୁଥାଏ ସେତିକି ସେତିକି ପରସ୍ପର ଭିତରେ ସ୍ୱତନ୍ତ୍ରତା ବଢ଼ି ଚାଲିଥାଏ । ତୁମେ ଯାହାକୁ ପ୍ରେମ କରିବ ତା'ର ଜୀବନରେ ତୁମେ ପରତନ୍ତ୍ରତାର ରେଖା ଟାଣି ନଦେବାକୁ, ତା' ପାଦରେ ଜଂଜିର ବାନ୍ଧି ନଦେବାକୁ ଚାହିଁବ । ଯେଉଁଠି ନିଜର ପ୍ରେମୀଙ୍କ ଜୀବନରେ ନିଜର କିଛି ନିୟମ, ସୀମା ଅଙ୍କନ କରିଦେଲ, ସେଇଠି ପ୍ରେମ ନାହିଁ, ତା ଜୀବନ ପାଇଁ ଏହା ତ ଶୋଷଣ ହିଁ ହେବ । ମାଆର ସନ୍ତାନ ପ୍ରତି ସ୍ୱାଭାବିକ ପ୍ରେମ ହୋଇଥାଏ । ମାଆ ସନ୍ତାନକୁ ତା'ର ପୂର୍ଣ୍ଣ ଅଶୁଚି ଅବସ୍ଥାରେ ବି ସ୍ୱୀକାର କରିନେଇଥାଏ । ମାଆ ସନ୍ତାନକୁ ଏୟା କହିନଥାଏ ଯେ – ତୁ ଯଦି ଶୁଦ୍ଧ ହୋଇ ଆସିବୁ, ତେବେ ଯାଇ ତତେ କୋଳରେ ବସାଇବି । ଯେତିକି ଯେତିକି ତୁମର ପ୍ରେମ ପରସ୍ପର ମଧ୍ୟରେ ବଢ଼ିଥାଏ, ତୁମେ ନିଜର ପ୍ରେମୀକୁ ସେଇ ଅବସ୍ଥାରେ ସ୍ୱୀକାର କରିନେଇଥାଅ । ତୁମେ ତା'ର ବଦଳିବା ବନ୍ଦ କରିଦେଇଥାଅ ।

ଯାହା ପ୍ରତି ପ୍ରେମ ହୋଇଥାଏ, ତା'ର ଅଭାବ, ଖରାପ ଗୁଣ ଉପରକୁ ତୁମର ଧ୍ୟାନ କେବେହେଲେ ଯାଇନଥାଏ । ଯାହାଙ୍କ ପ୍ରତି ତୁମ ମନରେ ପ୍ରେମ ନାହିଁ, ତା'ର ଅନେକ ଭଲଗୁଣ ଥିଲେ ବି ଗୋଟିଏ ମନ୍ଦଗୁଣ ଉପରକୁ ହିଁ ତୁମର ଦୃଷ୍ଟି ଚାଲି ଯାଇଥାଏ ।

ପ୍ରକୃତ ପ୍ରେମ ତ ସ୍ୱତନ୍ତ୍ରତା ପରେ ହିଁ ଜାଗ୍ରତ ହୋଇଥାଏ । ପରତନ୍ତ୍ରତାରେ ପ୍ରେମ କାହିଁ ? ସେଇଠି ତ ଶୋଷଣ ଚାଲିଥାଏ, ସେଇଠି ତ ତାକୁ ଦାସତ୍ୱ, ଗୋଲାମୀ ଦିଆଯାଇଥାଏ ।

ସେଇଠି ତ ପ୍ରେମ ନାମରେ ବେପାର ଚାଲିଥାଏ ଯେ ତୁମରି ପାଇଁ ମୁଁ ଏୟା ଏୟା କଲି କିନ୍ତୁ ତୁମେ ମୋ' ପାଇଁ ଆଜି ପର୍ଯ୍ୟନ୍ତ କ'ଣ କରିଛ ?

ସ୍ୱତନ୍ତ୍ରତା ଉପରକୁ ବାଧା ଆସିଗଲେ ଆମେ ସେଇ ତଥାକଥିତ ପ୍ରେମୀକୁ ବି ଛାଡ଼ି ଦେଇଥାନ୍ତି, ଯାହାକୁ 'ଛାଡ଼ପତ୍ର' ବା ଡାଇଭର୍ସର ନାମ ଦିଆଯାଇଥାଏ । କିନ୍ତୁ ସ୍ୱତନ୍ତ୍ରତାକୁ ହରାଇ କେହି ବି ପ୍ରେମ ଚାହାନ୍ତି ନାହିଁ ବରଂ ସିଏ ପ୍ରେମ ନୁହେଁ, ସିଏ ହେଉଛି ଜଂଜିର, ବନ୍ଧନ । ସ୍ୱତନ୍ତ୍ରତା ପାଇଁ ଆମେ ବିଭିନ୍ନ ପ୍ରକାର ବଳି ଦେଇ ଆସିଛନ୍ତି ।

ତୁମେ ତୁମର ପ୍ରେମିକକୁ ବା ପ୍ରେମିକାକୁ ସ୍ୱତନ୍ତ୍ରତା ଦେଇନଥାଅ । ସିଏ ବି କୌଣସି ଦେବା-ନେବାର ବସ୍ତୁ ନୁହେଁ । ପ୍ରେମର ଉଦ୍ଦେଶ୍ୟ ହେଉଛି ସ୍ୱତନ୍ତ୍ରତା, ଯେଉଁଠି କୌଣସି ବନ୍ଧନ ନଥାଏ ।



# ॥ ସାଧନ ଲକ୍ଷ୍ୟ ନୁହେଁ ॥

ରୋଗ ରହିଥିବା ଯାଏ ଔଷଧ ଗ୍ରହଣ କରିବା ରୋଗୀ ପାଇଁ କର୍ତ୍ତବ୍ୟ ହୋଇଥାଏ କିନ୍ତୁ ସ୍ୱାସ୍ଥ୍ୟ ଅନୁଭବ ହେଲା ପରେ ସେଇ ଔଷଧ ବ୍ୟର୍ଥ ହୋଇଯାଇଥାଏ । ସ୍ୱାସ୍ଥ୍ୟଲାଭ ହେଲା ପରେ ଔଷଧ ଗ୍ରହଣ କରିଚାଲିବା ଅର୍ଥ ପୁନଶ୍ଚ ରୋଗ ଉତ୍ପତ୍ତିର କାରଣ ହେବା । ଯେଉଁ ସାଧନ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଯାଏ, ସେଇ ସାଧନ, ସେଇ ମାର୍ଗକୁ ନ ଛାଡ଼ିଦେଲେ, ସିଏ ଲକ୍ଷ୍ୟ ଠାରୁ ଦୂରକୁ ନେଇଯାଏ । ଯେଉଁ ନଉକା ନଦୀର ଏଇ କୂଳରୁ ନେଇ ସେ କୂଳରେ ପହଞ୍ଚାଇ ଦେଇଥାଏ, ନଦୀରେ ବନ୍ୟା ଆସିଗଲେ ସେଇ ନଉକାରୁ ନ ଓହ୍ଲାଇଲେ ସିଏ ବୁଡ଼ାଇ ବି ଦେଇଥାଏ ।

ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଧର୍ମ ଉପଦେଶ ଦେଉଛନ୍ତି ଏବଂ ଧର୍ମରେ ଆରୂଢ଼ ହେଲାପରେ ସମସ୍ତ ଧର୍ମକୁ ପରିତ୍ୟାଗ କରିଦେବା ପାଇଁ ବି ଉପଦେଶ ଦେଉଛନ୍ତି । କିନ୍ତୁ ଅଜ୍ଞାନୀ ଲୋକମାନଙ୍କର ଏଭଳି ଧାରଣା ହୋଇଥାଏ ଯେ ଯେଉଁ ସାଧନ ବଳରେ ଆମେ ଏପର୍ଯ୍ୟନ୍ତ ପହଞ୍ଚିଛନ୍ତି, ସେଇ ସାଧନକୁ ଆମେ କେମିତି ଛାଡ଼ିଦେବୁ ? କ'ଣ ଜଣା ଅଛି, ଏ ପର୍ଯ୍ୟନ୍ତ ଯାହା କିଛି ପାଇଆସିଛୁ ସେସବୁ ଚାଲିନଯିବ ଏବଂ ଆମର ନ ଦୁର୍ଗତି ନ ହୋଇଯିବ ।

ମାର୍ଗର ଆବଶ୍ୟକତା ରହିଥାଏ ଯଦି ଲକ୍ଷ୍ୟ ସ୍ଥଳ ଦୂରରେ ଥାଏ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିଗଲା ପରେ ବି ଯଦି ଜଣେ ଚାଲୁଥାଏ ତେବେ ସେ ଲକ୍ଷ୍ୟ ଠାରୁ ଦୂରକୁ ଚାଲିଯିବ ।

ଚିତ୍ତରେ ଚଞ୍ଚଳତା ଅଛି, ଅଶାନ୍ତି ଅଛି ତ ତୁମେ ଧ୍ୟାନ କରିଚାଲ, ଯେତେବେଳେ ଅଶାନ୍ତି ଚାଲିଯିବ ଏବଂ ଶାନ୍ତି ଆସିଯିବ ପୁଣି ସେତେବେଳେ ଧ୍ୟାନରୂପୀ ଔଷଧକୁ ମୁଠାଇ ଧରି

କେବେହେଲେ ବସିଯାଅନା, ନହେଲେ ସେଇ ଧ୍ୟାନ ହିଁ ଅଶାନ୍ତି ସୃଷ୍ଟି କରିବାର କାରଣ ହୋଇଯିବ । ତେଣୁ ଧ୍ୟାନକୁ ବି ବିଦା କରିଦେବା ଉଚିତ୍ ।

ସାଧନର ଉପଯୋଗ କରିବାର ଅଛି ଲକ୍ଷ୍ୟ ପ୍ରାପ୍ତି କରିବା ଯାଏ, ଲକ୍ଷ୍ୟ ପ୍ରାପ୍ତି ହୋଇଗଲେ ସାଧନକୁ ବି ଛାଡ଼ିଦେବା ଉଚିତ୍ । ସାଧନ ଆମର ମାଲିକ୍ ହୋଇ ନଯାଉ । ସାଧନର ଗୋଲାମୀ କରିବାର ନାହିଁ । ରାସ୍ତା, ଲକ୍ଷ୍ୟ ସ୍ଥଳ ନୁହେଁ । ରାସ୍ତା ଉପରେ ଚାଲିବା ହେଉଛି କର୍ତ୍ତବ୍ୟ । ଘରେ ପହଞ୍ଚିଗଲା ପରେ ପୁଣି ଚାଲିବା ହେଉଛି ଅଶାନ୍ତିର କାରଣ । ଧ୍ୟାନ, ସାଧନା, ନିୟମ, ଯେପର୍ଯ୍ୟନ୍ତ ଚାଲିନଯାଇଛି, ସେପର୍ଯ୍ୟନ୍ତ ତୁମର ଅବସ୍ଥା କଞ୍ଚା ହୋଇ ରହିଛି ।

ସାଧନ ହେଉଛି ପାଦରେ ପଶିଥିବା କଣ୍ଟାକୁ ବାହାର କରିବା ପାଇଁ ବାହାରର ବଡ଼କଣ୍ଟା ଭଳି । କଣ୍ଟା ବାହାରିଗଲା ପରେ ସେ ଦୁଇଟି କଣ୍ଟାକୁ ବାହାରେ ଫିଙ୍ଗିଦେବାର କଥା । ଅନ୍ଧାର ପାଇଁ ଦୀପର ଆବଶ୍ୟକତା ରହିଥାଏ । ଆଲୋକ ଆସୁ ଆସୁ ଦୀପକୁ ଲିଭାଇ ଦିଆଯାଏ । ଭୋଜନ ସିଦ୍ଧ ହେଉ ହେଉ ତାକୁ ଅଗ୍ନିରୁ ବାହାର କରି ନିଆଯାଏ । ଯେତେବେଳେ ସାଧ୍ୟ ମିଳିଯାଏ, ସେତେବେଳେ ତୁମେ ସିଦ୍ଧ ହୋଇଗଲ, ପୁଣି ସାଧନ କରିବାର ଆବଶ୍ୟକତା କ'ଣ ? ସାଧନ ବି ଚାଲିଯିବ । ସାଧନ ପ୍ରତି ମୋହ ରଖି କେବେହେଲେ ବସିଯାଅନା ।

ସାଧନ ସହିତ ଆସକ୍ତି କରି ନିଅନାହିଁ । ଅନ୍ୟଥା ମୂର୍ତ୍ତିପୂଜା,ଧ୍ୟାନ ଇତ୍ୟାଦିକୁ ଛାଡ଼ିବା ପୁଣି କଷ୍ଟକର ହୋଇଯିବ । ପ୍ରାର୍ଥନାର ଅଭ୍ୟାସ କରିନେଲ ତ ପ୍ରାର୍ଥନାକୁ ଛାଡ଼ିବା କଠିନ ହୋଇଯିବ । ଜପର ଅଭ୍ୟାସ କରିନେଲ ତ ଜପ ଛାଡ଼ିବା କଠିନ ହୋଇଯିବ । ଏଇ ସବୁ ମୂର୍ତ୍ତି, ମାଳା, ଜପ, ପୂଜା, ଔଷଧର ପୁଟୁଳିକୁ ମୁଣ୍ଡ ଉପରେ ରଖି ସର୍ବଦା ଚାଲିବାର ଆବଶ୍ୟକତା ନାହିଁ । ଚିକିତ୍ସକରଆବଶ୍ୟକତା ରୋଗୀ ପାଇଁ ତଥା ଅବତାର ଗୁଡ଼ିକର ଆବଶ୍ୟକତା ଅଧାର୍ମିକ, ପାପୀ ପାଇଁ ହୋଇଥାଏ । ସେଇ ଅବତାରଗୁଡ଼ିକୁ ତୁମେ ମୁକୁଟର ମଣି ବନାଇ ରଖିଦିଅନା । ଏହା ଏଇ ଦେଶ ପାଇଁ ସୌଭାଗ୍ୟ ନୁହେଁ, ବରଂ ଦୁର୍ଭାଗ୍ୟ ଯେ ଏତେଗୁଡ଼ିଏ ଚିକିତ୍ସକ, ଏତେ ଗୁଡ଼ିଏ ଅବତାର, ଏତେଗୁଡ଼ିଏ ତୀର୍ଥଙ୍କର, ଏତେଗୁଡ଼ିଏ ମହାପୁରୁଷ ଅବତରିତ ହେଲେ ତଥାପି ସୁଦ୍ଧା ବେମାରୀ ବହୁତ ଖରାପ ସ୍ଥିତିରେ ଅଛି । ସେଥିପାଇଁ ୧୦ ଅବତାର, ୨୪ ତୀର୍ଥଙ୍କର, ପୈଗମ୍ବର ଇତ୍ୟାଦି ଅବତୀର୍ଣ୍ଣ ହେଲେ ।

ଚକକୁ ଚାଲିବାକୁ ଦିଅ, ତୁମେ ଚକ ସହିତ ତାଦାତ୍ମ୍ୟ କେବେ ହେଲେ କରନାହିଁ । ତୁମେ ଚକକୁ ସ୍ଥିର କରିଦେଇ କିଳା ସହିତ ଆପଣାର ତାଦାତ୍ମ୍ୟ କରିନିଅ । ସେତେବେଳେ ତୁମେ ସଂସାରରେ ସଂସାରୀମାନଙ୍କ ଭଳି ଅବଶ୍ୟ ଜଣାପଡ଼ିବ କିନ୍ତୁ ତୁମ ଭିତରେ ସଂସାର ନଥିବ ।

ବ୍ୟବହାର ପ୍ରାରବ୍ଧ ଦ୍ୱାରା ଚାଲୁଅଛି, ତାକୁ ଚାଲିବାକୁ ଦିଅ । ତୁମେ ସେପର୍ଯ୍ୟନ୍ତ ଚଞ୍ଚଳ ରହିବ, ଯେପର୍ଯ୍ୟନ୍ତ ତୁମେ ନିଜକୁ ଚକ ରୂପୀ ଦେହ ବୋଲି ମାନିନେଇଥିବ । ଯେପର୍ଯ୍ୟନ୍ତ ତୁମେ ବଜାରରୁ, ବାହାରରୁ କୌଣସି ବସ୍ତୁକୁ କିଣିବାକୁ, ପାଇବାକୁ ଚାହୁଁଥିବ, ସେପର୍ଯ୍ୟନ୍ତ ତୁମେ ଚଞ୍ଚଳ ହୋଇ ରହିଥିବ । ସାକ୍ଷୀ କିଳା ହେଉଛି ସବୁବେଳେ ଅଚଳ ।

ଧର୍ମ ହେଉଛି ସ୍ମରଣର କଳା । ଧର୍ମ ପାଇବାର କଳା ନୁହେଁ, ମନେ ରଖିବାର କଳା । ଯାହା ମିଳିସାରିଛି, ତାକୁ ପାଇବା ପାଇଁ କ'ଣ କରିବାକୁ ପଡ଼ିବ ? ଯାହା କେବେହେଲେ ହଜିଯାଇନାହିଁ, ତା'ର ବିସ୍ମରଣ ହୋଇଯାଇଛି, ବୁଦ୍ଧି, ବିବେକ ଚାଲିଯାଇଛି । ତୁମେ ହଜିଯାଇନାହଁ, କେବଳ ସ୍ମରଣ ହଜି ଯାଇଛି ।

ଆମେ ଅନ୍ୟର ଜୋତା ପିନ୍ଧିବା ଯୋଗୁ, ଅନ୍ୟର ବସ୍ତ୍ର ପିନ୍ଧିବା ଯୋଗୁ, ଅନ୍ୟର ଅଇଁଠା ଖାଇବା ଯୋଗୁ ନିଜକୁ ନିକୃଷ୍ଟ, ଅସମ୍ମାନିତ ବୋଲି ବୁଝିଥାଉ, କିନ୍ତୁ ଆମେ ଅନ୍ୟର ଶାସ୍ତ୍ର, ସିଦ୍ଧାନ୍ତକୁ ଗ୍ରହଣ କରିନେଇ, ତାକୁ ନିଜର ସିଦ୍ଧାନ୍ତ, ନିଜର ଅନୁଭବ ବୋଲି ମାନିନେଇଥାଉ । ସତ୍ୟର ଗାରିମା ଆମ ମନ ଭିତରେ ନାହିଁ । ବସ୍ତ୍ର, ଜୋତା, ଭୋଜନ ପ୍ରତି ଆମ ମନରେ ଗାରିମା ବୋଧ ରହିଥାଏ ଯେ ସିଏ ମୋର ହୋଇରହିଥାଉ, ତାହାର ଅନ୍ୟ ପାଇଁ ଉପଯୋଗ କରାନଯାଉ । ସତ୍ୟକୁ ମାନି ନିଆଯାଏ ନାହିଁ । ସତ୍ୟକୁ ନିଜ ରୂପରେ ଜାଣିବାକୁ ହେବ । କାହାର ମାନିବା, ତୁମର ଜାଣିବା ନୁହେଁ । ତୁମକୁ ଖୋଜିବାକୁ ହେବ, ଜାଣିବାକୁ ହେବ । ସଦ୍‌ଗୁରୁ ଇଶାରା ଦେଇପାରନ୍ତି, କିନ୍ତୁ ଚାଲିବା ତୁମ ପାଦ ଦ୍ୱାରା ହେବ । ମାନିନେଇ କେବେହେଲେ ବସିଯାଅନା, ତାଙ୍କର ଇଶାରା ଲକ୍ଷ୍ୟ ଆଡ଼କୁ ତ ଅଛି କିନ୍ତୁ ସିଏ ଲକ୍ଷ୍ୟ ସ୍ଥଳ ନୁହେଁ । ଧ୍ରୁବତାରାକୁ ଆଙ୍ଗୁଳିର ଇଶାରା ଦ୍ୱାରା ବତାଇ ଦିଆଯାଇଥାଏ କିନ୍ତୁ ଆଙ୍ଗୁଳି ଧ୍ରୁବ ତାରା ନୁହେଁ । ପର ଶ୍ରଦ୍ଧା ଠାରୁ ହଟିଯାଇ ଆତ୍ମଶ୍ରଦ୍ଧା ହେବା ଉଚିତ୍ ।

ତୁମକୁ କେହି ଜଣେ ପଚାରିଲା, ତୁମେ କିଏ ? ସେତେବେଳେ ତୁମେ କହିଥାଅ ଯେ ମୁଁ ହେଉଛି ଇଞ୍ଜିନିୟର, ମୁଁ ଡାକ୍ତର, ମୁଁ ଚିତ୍ରକର, ମୁଁ କଳାକାର, ମୁଁ ଧୋବା, ମୁଁ ଭଣ୍ଡାରି, ମୁଁ ଗୁଡ଼ିଆ, ମୁଁ ଚମାର, ମୁଁ ଟେଲର, ମୁଁ ଓକିଲ, ମୁଁ କଲେକ୍ଟର, ମୁଁ ସରପଞ୍ଚ, ଆଇ.ଏ.ଏସ୍ ଅଫିସର୍, ମ୍ୟାନେଜର୍, ସେକ୍ରେଟାରୀ, ଡାଇରେକ୍ଟର, ମାଷ୍ଟର । ଏହାର ଅର୍ଥ ହେଲା ଏୟା ଯେ ତୁମେ ଏଇ ସବୁ କାମ କରୁଛ । ଯଦି ତୁମକୁ କେହି କହେ ଯେ ତୁମେ ଏଇ ସବୁ ନିଜ କାମ ଧାମର କଥା ଛାଡ଼ିଦେଇ କୁହ ଯେ ତୁମେ କିଏ ? ତୁମର ସେଇ ଉପାଧି ଗୁଡ଼ିକ ସହିତ କିଛି ସମ୍ପର୍କ ନାହିଁ ।

ସେତେବେଳେ ସେଇ ଲୋକଟି ବି ଟିକିଏ ଚକିତ ହୋଇଯିବ ଯେ, ତେବେ ତ ନିଜର ପରିଚୟ ଦେବା ପାଇଁ ଆଉ କିଛି ଉପାୟ ନାହିଁ, କାରଣ ମୁଁ'ର ହେବା ହିଁ ହେଉଛି କୃତ୍ୟର ଯୋଡ଼ । ମୁଁ ହେଉଛି ସାଧୁ, ମୁଁ ଦାନୀ, ମୁଁ ଭିକାରୀ, ମୁଁ ବୁଢ଼ା, ମୁଁ ଯୁବକ, ମୁଁ ବିବାହିତ, ମୁଁ ବିଧବା, ଏସବୁ ହେଉଛି କୃତ୍ୟର ଯୋଡ଼ । ମୁଁ ହେଉଛି ଉପବାସୀ, ମୁଁ ମୌନୀ, ଯେ ପର୍ଯ୍ୟନ୍ତ ମୁଁ ଏହିଭଳି କିଛି କୃତ୍ୟ ସହିତ ଯୋଡ଼ା ହୋଇଛି, ସେ ପର୍ଯ୍ୟନ୍ତ ସଂସାର ରହିଛି । ଯଦି ପଚାରିବା ଲୋକକୁ ତୁମେ କହିଦେଲ ଯେ ସେଇ ଉପାଧିଗୁଡ଼ିକ ବିନା ମୁଁ ତ କେବଳ ମନୁଷ୍ୟ । ମନୁଷ୍ୟ ବି ତ ହେଉଛି ତୁମ ଶରୀରର ପରିଚୟ । ତେବେ ପୁଣି ମନୁଷ୍ୟ ହେବା ପୂର୍ବରୁ ତୁମେ କ'ଣ ଥିଲ ? ଉତ୍ତର ଏୟା ହେବ ଯେ ମୁଁ ହେଉଛି ଏକ ଚୈତନ୍ୟାତ୍ମା । ମୁଁ ହେଉଛି ଦ୍ରଷ୍ଟା, ସାକ୍ଷୀ ଆତ୍ମା, ଯିଏ ସେଇ ସବୁ ନାମ, ରୂପ, ଉପାଧି ପୂର୍ବରୁ ଏହାର ଦ୍ରଷ୍ଟା ।

ଖୋଜୁଥିବା ଯୋଗୁଁ ହିଁ ହଜାଇ ଦେଇଥିଲ । ଖୋଜିବା ପାଇଁ ଦୌଡ଼ି ଚାଲିଥିଲ । ଯିଏ ଭିତରେ ଥିଲା, ତା' ଆଡ଼କୁ ଦେଖିବା ହିଁ ଭୁଲି ସାରିଥିଲ । ଦଉଡୁ ଥିବା କାରଣରୁ ଦୂରତ୍ୱକୁ ତ ଦେଖୁଥିଲ, କିନ୍ତୁ ତୁମକୁ ପାଖରେ ଥିବା ଜିନିଷ ଦେଖା ଯାଉନଥିଲା ।

ଯିଏ ଯାହାର ସ୍ୱଭାବ ହୋଇଥାଏ, ତାକୁ ପାଇବା ପାଇଁ କେହି ଅଭ୍ୟାସ କରିନଥାଏ । ଅଭ୍ୟାସ ସେଇଠି କରିବାକୁ ପଡ଼ିଥାଏ, ଯାହା ଆମ ପାଖରେ ନାହିଁ ଅଥବା ଯାହା ଆମେ ନୁହଁନ୍ତି । ଅଭ୍ୟାସ ଦ୍ୱାରା ନିଜର ସ୍ୱଭାବ ଆତ୍ମାକୁ ପାଇହେବ ନାହିଁ । ଅଭ୍ୟାସର ଅର୍ଥ ହେଉଛି ଏୟା ଯେ ଏବେ କିଛି କରିବା ପାଇଁ ବାକୀ ରହିଛି । ବିରାଡ଼ି, ବାଘୁଣୀ ହେବା ପାଇଁ ଧ୍ୟାନ, ପ୍ରାଣାୟାମ, ସମାଧି, ଶୀର୍ଷାସନ ଇତ୍ୟାଦି ସାଧନଗୁଡ଼ିକୁ ନେଇ କ'ଣ କରିବା ? କୋଇଲି ହେବା ପାଇଁ କାଉ କିଭଳି ଅଭ୍ୟାସ କରିବ ? ଅଭ୍ୟାସ ହେଉଛି ଉପରେ କିଛି ଘୋଡ଼ାଇହେବା ପାଇଁ ଚେଷ୍ଟା କରିବା । ଯାହା ଅଛି ସିଏ ତ ଅଛି । ଗୋଲାପ ତ ଅଭ୍ୟାସ କରିନଥାଏ ଗୋଲାପ ହେବା ପାଇଁ । କୋଇଲି ତ କୋଇଲି । କାଉ ତ କାଉ । ଚମ୍ପା–ଚମେଲୀ, କିମ୍ବା ଚମେଲୀ–ଚମ୍ପା ହେବା ପାଇଁ ତ ଅଭ୍ୟାସ କରିନଥାଏ ।

ତତ୍ତ୍ୱତଃ ତୁମେ ଯେଉଁ ଦ୍ରଷ୍ଟା, ସାକ୍ଷୀ, ଆତ୍ମା, ଯଦି ତାହା ପ୍ରାଣ ଭିତରେ ବସିଯାଏ, ତାହାର ଦୃଢ଼ ନିଶ୍ଚୟ ହୋଇଯାଏ ତେବେ ହୋଇଗଲା କ୍ରାନ୍ତି, ହୋଇଗଲା ମୋକ୍ଷ । କିଛି କରିବାର ନାହିଁ, ପାଇବାର ନାହିଁ, ପାଇ ସାରିଛ । ଖୋଜିବାର ନାହିଁ କେବଳ ଚିହ୍ନିବା ମାତ୍ର ବାକୀ ରହିଛି । କୁଆଡ଼େ ଯିବାର ନାହିଁ, ଯୁଆଡ଼େ ଗଲେ ବି ଘରକୁ ଫେରିବାକୁ ହେବ । ସ୍ୱପ୍ନରେ ଘର ଛାଡ଼ି ଦିଲ୍ଲୀ, ବମ୍ବେ

ଚାଲିଯିବାର ଦୃଶ୍ୟ ଦେଖୁଥିଲ, କିନ୍ତୁ ସେଠାକୁ ଯାଇନାହଁ, ବର୍ତ୍ତମାନ ଫେରିବାକୁ ହେବ । ତେଣୁ କ'ଣ କରିବା ? କେବଳ ଜାଗ୍ରତ ହେବାକୁ ପଡ଼ିବ ଯେ ତୁମେ ଘର ଭିତରେ ହିଁ ଅଛ ।

ମୋତେ ଯଦି ଏକାଗ୍ରତା ପୂର୍ବକ ଶୁଣିନେଲ, ତେବେ ଧ୍ୟାନ କରିବାର ନାହିଁ କି ଜପ କରିବାର ନାହିଁ, କି ତପ କରିବାର ନାହିଁ କି ଆଉ କିଛି କରିବାର ନାହିଁ । ଏଇ ମୁହୂର୍ତ୍ତରେ ଘଟଣା ଘଟିପାରେ । ଯଦି ତୁମେ ଶାନ୍ତ, ଏକାଗ୍ରତା ଏବଂ ଶ୍ରଦ୍ଧାର ସହିତ ତଥା ହୋଶ୍ ପୂର୍ବକ ଶୁଣି ନେଲ, ତେବେ ଏଇ ମୁହୂର୍ତ୍ତରେ ତୁମେ ହେଉଛ ମୁକ୍ତ ବ୍ରହ୍ମ । ଅଭ୍ୟାସର ଅର୍ଥ ହେଲା ଭିତରେ କିଛି, ବାହାରେ କିଛି । ଯେମିତି ସିନେମା, ନାଟକ ଇତ୍ୟାଦିରେ ଲୋକ ମାସ ମାସ ଧରି ଅଭ୍ୟାସ କଲାପରେ ନିଜ ଅଭିନୟକୁ ଷ୍ଟେଜ୍ ଉପରେ ଦେଖାଇଥାନ୍ତି ।

କରାଯାଇଥିବା କୌଣସି ସାଧନ ଅଖଣ୍ଡ ହୋଇପାରିବ ନାହିଁ । ତୁମର ଆରମ୍ଭ କରିବା ହିଁ ଖଣ୍ଡତାରୁ ହୋଇଥାଏ । ଅନ୍ୟ କାହାର ଅଖଣ୍ଡ ଚିନ୍ତନ, ଭଜନ ହୋଇପାରିବ ନାହିଁ । ତୁମେ ଯାହା କରିବ ତାହା ଅଖଣ୍ଡ ହୋଇପାରିବ ନାହିଁ । ଯେଉଁ ମନୁଷ୍ୟ ବାହାରକୁ ଦେଖିଚାଲିଛି, ସିଏ ଦୃଶ୍ୟ ଭିତରେ ଆବଦ୍ଧ ହୋଇଚାଲିଛି । ସିଏ ରାମ, କୃଷ୍ଣ, ଦେବୀ-ଦେବତାଙ୍କ ପୂଜା କରୁଥାନ୍ତୁ ପଛକେ ସିଏ ହେଉଛନ୍ତି ଅଧାର୍ମିକ । ହୁଏତ ସିଏ ଆକାଶରେ ପରମାତ୍ମାଙ୍କ ଧାରଣା କରି ଆନନ୍ଦ ବିଭୋର ହେଉଥାନ୍ତୁ ବା ମୂର୍ତ୍ତିକୁ ଆଗରେ ରଖି ସେଇ ମୂର୍ତ୍ତି ଭିତରେ ମୋହିତ ହେଉଥାନ୍ତୁ, ତଥାପି ସୁଦ୍ଧା ସିଏ ଦୃଶ୍ୟ ଭିତରେ ହିଁ ବୁଡ଼ି ରହିଛନ୍ତି । ତାଙ୍କପାଇଁ ପରମାତ୍ମା ହେଉଛନ୍ତି ଦୃଶ୍ୟ କେବଳ ।

ଆଉ ଗୋଟିଏ ପ୍ରକାରର ମନୁଷ୍ୟ ଅଛନ୍ତି ଯିଏ ଦ୍ରଷ୍ଟାକୁ ଖୋଜି ଚାଲିଥାନ୍ତି । ମୁଁ ତୁମକୁ ଦେଖୁଛି । ତୁମେ ହେଉଛ ଦୃଶ୍ୟ । ଯିଏ ମୋ ଭିତରୁ ତୁମକୁ ଦେଖୁଛି, ସିଏ ହେଉଛି ଦ୍ରଷ୍ଟା । ତୁମେ ମୋତେ ଦେଖୁଛ, ମୁଁ ହେଉଛି ତୁମ ପାଇଁ ଦୃଶ୍ୟ । ଯିଏ ତୁମ ଭିତରେ ଲୁଚି ରହି ମୋତେ ଦେଖୁଛି ଆଖିର ଝରକା ମାଧ୍ୟମରେ, ଯିଏ ମୋତେ ଶୁଣୁଛି କାନର ଦ୍ୱାର ମାଧ୍ୟମରେ ସିଏ କିଏ ? ତା' ଅନ୍ୱେଷଣରେ ଯିଏ ବାହାରି ପଡ଼ିଛି, ସିଏ ହେଉଛି ଧାର୍ମିକ ।

ପରମାତ୍ମାଙ୍କୁ ଦୃଶ୍ୟ ଭଳି ଭାବିନେଲ ତ ତୁମେ ତାଙ୍କର ମନ୍ଦିର, ତୀର୍ଥ, ମୂର୍ତ୍ତି, ଚିତ୍ର ତିଆରି କରିବ, ପୂଜା, ପ୍ରାର୍ଥନା, ଜପ, ଧ୍ୟାନ କରିବ, ମାତ୍ର ବାସ୍ତବିକ ଧର୍ମ ସହିତ ତୁମର ସମ୍ବନ୍ଧ ସ୍ଥାପନ ହୋଇପାରିବ ନାହିଁ । ବାସ୍ତବିକ ଧର୍ମର ଆରମ୍ଭ ହିଁ ସେତେବେଳେ ହୋଇଥାଏ, ଯେତେବେଳେ ତୁମେ ଦ୍ରଷ୍ଟାକୁ ଖୋଜିବାକୁ ବାହାରି ପଡ଼ିଥାଅ । ତୁମେ ପଚାରି ଚାଲିଥିଲ ଯେ ମୁଁ କିଏ ? ଏଇ ଜାଣିବାବାଲା କିଏ ? ଆମର ଜାଣିବାର ଅଛି ତ ଏଇ ଦେହଭିତରେ ଥାଇ ଯେ ସବୁକୁ ଜାଣୁଛନ୍ତି, ସେଇ ଜାଣିବାବାଲାକୁ ଜାଣ । ଦେଖିବାର ଅଛି ତ ସବୁ ଦେଖିବାବାଲାକୁ ଦେଖ ।

କିଛି କରିବାର ନାହିଁ, କେବଳ ଦେଖିବାର ଦୃଷ୍ଟିକୁ ବାହାରୁ ଭିତର ଆଡ଼କୁ ମୋଡ଼ିଦେବା । ତୁମେ ହେଉଛ ଅମୃତ, ତୁମେ ଅନନ୍ତ ବାର ଶରୀର ଧାରଣ କରିଛ ଓ ଛାଡ଼ିଦେଇଛ କିନ୍ତୁ ତୁମେ କେବେହେଲେ ନଷ୍ଟ ହୋଇନାହଁ, ତୁମର ସ୍ୱଭାବ ହେଉଛି ଅବ୍ୟୟ, ଅମୃତ, ଅଖଣ୍ଡ ।

ଯିଏ ହଠପୂର୍ବକ ଚିତ୍ତକୁ ଅଟକାଇଥାଏ, ସେଇ ଅଜ୍ଞାନୀ ପାଇଁ ଚିତ୍ତର ନିରୋଧ କାହିଁ ?

ବାହାରେ କାହାର ଶରଣ କେବେହେଲେ ନିଅନାହିଁ ନଚେତ୍ ବାନ୍ଧି ହୋଇଯିବ, ଅଶରଣ ହୋଇଗଲ ତ ତତ୍‌କ୍ଷଣାତ୍ ଆତ୍ମସମର୍ପଣ ହୋଇଯିବ ।

ଚାଲ୍, ଦେଖ, ଶୁଣ, ଖାଅ, ପିଅ, ଶୁଅ, ରୁହ, ସଂସାରରୁ ଧାଇଁ ପଳାଅ ନାହିଁ । ଜାଗ, ହୋଶ୍‌ପୂର୍ବକ ରୁହ । ସାକ୍ଷୀ ରୁହ । ଦ୍ରଷ୍ଟା ରୁହ ।

ପ୍ରତି ମୁହୂର୍ତ୍ତରେ ଜିଅଁ, ଅନାଗ୍ରହରେ ଜିଅଁ । ନିଶ୍ଚୟ କରନାହିଁ ଯେ ଶୁଭ କରିବି ନା ଅଶୁଭ କରିବି । ଯାହା ପରାମାତ୍ମା କରାଇନେବେ ତାକୁ କରିନେବା । ତୁମେ କର୍ତ୍ତା ହୋଇଯାଅ ନାହିଁ । ତୁମେ କହିଦିଅ ମୁଁ ହେଉଛି ନିମିତ୍ତ ମାତ୍ର ।

ଯଦି ଉଦୟ ହେଉଥିବା ସୂର୍ଯ୍ୟଙ୍କୁ ଦେଖି, କୌଣସି ଗୋଲାପ ଫୁଲକୁ ଦେଖି ତୁମେ ମୁଣ୍ଡ ନୂଆଁଇ ଦେଲ, ତେବେ ହୋଇଗଲା ପରମାତ୍ମାଙ୍କର ପୂଜା, ହୋଇଗଲା ନମାଜ କିନ୍ତୁ ତୁମେ ଏଭଳି କରିପାରନାହିଁ । ଜୀବିତ ପରମାତ୍ମାଙ୍କୁ ଦେଖି ନଇଁଯାଇପାର ନାହିଁ, ହାତ ଯୋଡ଼ିପାର ନାହିଁ କିନ୍ତୁ ମୃତ ପଥର ମୂର୍ତ୍ତି, ମୃତ କାବା ପଥର ପାଖରେ ହାତ ଯୋଡ଼ି ଚାଲିଛ, ଜଡ଼ ମୂର୍ତ୍ତି ଉପରେ ଫୁଲ ଚଢ଼ାଇ ଚାଲିଛ । ମୁର୍ଦ୍ଦାର, ମୂର୍ତ୍ତି, ଚିତ୍ରଗୁଡ଼ିକ ସହିତ ଖେଳ ଖେଳି ଚାଲିଛ । ରାମ ନାମ ରଟି ଚାଲିଛ, ଗାୟତ୍ରୀକୁ ଦୋହରାଇ ଚାଲିଛ । ଛାଡ଼ିଦିଅ ସେଇ ବାହ୍ୟ ଆଡମ୍ବର ଗୁଡ଼ିକୁ ଏବଂ ବୁଡ଼ିଯାଅ ସେଇ ଖେଳୁଥିବା ଫୁଲ ଗୁଡ଼ିକର ସୌନ୍ଦର୍ଯ୍ୟ ଭିତରେ, ଯେଉଁଥିରେ ପରମାତ୍ମା ତାଙ୍କର ଅଦୃଶ୍ୟ ହାତରେ ସୁନ୍ଦର ରଙ୍ଗ ଏବଂ ମଧୁର ସୁଗନ୍ଧକୁ ଢାଳି ଦେଇଛନ୍ତି । ସେଇ ବୃକ୍ଷ ଭିତରେ ପରମାତ୍ମା ତାଙ୍କର ଜଳରୂପୀ ପ୍ରାଣକୁ ଭରି ଦେଇଛନ୍ତି ।

ପରମାତ୍ମା ତୁମରି ଭିତରେ ବସିଛନ୍ତି । ତୁମେ କାହାର ପୂଜା, ପାଠ, ମନ୍ତ୍ର, ଜପ ଇତ୍ୟାଦି କରିଚାଲିଛ ? ତୁମେ ଯାହାର ପୂଜା କରୁଛ, ପ୍ରାର୍ଥନା କରୁଛ ସିଏ ପୂଜା, ପ୍ରାର୍ଥନା ପୂର୍ବରୁ ହିଁ ତୁମରି ଭିତରେ ବିରାଜମାନ ହୋଇଛନ୍ତି । ତୁମେ ତାଙ୍କୁ କେଉଁ କାବା, କୈଳାସରେ ଯାଇ ଖୋଜୁଛ ?

ଯେତେବେଳେ ଗୋଟିଏ ବିଚାର ସମାପ୍ତ ହୋଇଯିବ ଏବଂ ଦ୍ୱିତୀୟ ବିଚାର ଉଦୟ ହୋଇନଥିବ ସେଇ ସମୟ ମଝିରେ ଖାଲି ଜାଗା ଆସିଗଲେ, ସେଇ ଖାଲି ଜାଗା ଭିତରେ ତୁମେ

ନିଜକୁ ଦର୍ଶନ କରିପାରିବ । ଏଇ ଦୁହିଁଙ୍କ ମଝିରେ ତୁମରି ଅସ୍ତିତ୍ୱର ଯେଉଁ ଖାଲିପଣିଆ ରହିଥାଏ, ଯାହା ହେଉଛି ତୁମର ଶୁଦ୍ଧ ନିରାକାର ରୂପ, ତାହା ପ୍ରକଟ ହେବ ।

କୌଣସି ସାଧକ ଅନ୍ୟ ଆଡ଼କୁ, ବାହାର ଆଡ଼କୁ, ଭିଡ଼ ଆଡ଼କୁ ସେପର୍ଯ୍ୟନ୍ତ ଦଉଡ଼ି ଚାଲିଥାଏ, ଯେପର୍ଯ୍ୟନ୍ତ ସିଏ ନିଜର ରସ ଚାଖି ନଥାଏ । ଯିଏ ଜ୍ଞାନକୁ ଉପଲବ୍ଧ ହୋଇଗଲା, ସାକ୍ଷୀକୁ ଉପଲବ୍ଧ ହୋଇଗଲା, ତୁରୀୟରେ ଅବସ୍ଥାନ କରିଗଲା, ତା' ପାଇଁ ବାହାରେ କୌଣସି ରସ ରହିଲା ନାହିଁ, ବର୍ତ୍ତମାନ ତାକୁ ସବୁ ନୀରସ ମନେ ହୋଇଥାଏ ।

କେବଳ ଶ୍ରବଣ ଦ୍ୱାରା ସତ୍ୟ ଉପଲବ୍ଧ ହୋଇପାରେ, କାହାର ହାତ ଧରି କୁଆଡ଼େ ଯିବାର, ମଝିରେ କାହାକୁ ଧରି ନେବାର ଆବଶ୍ୟକତା ନାହିଁ । ଜନକ ଥରେ ଅଷ୍ଟାବକ୍ରଙ୍କୁ ସମ୍ପୂର୍ଣ୍ଣ ଶୁଣିନେବାରୁ ସିଏ ମୋକ୍ଷକୁ ଉପଲବ୍ଧ ହୋଇଗଲେ । ନା ସେ' ରାଜ୍ୟ ତ୍ୟାଗକଲେ, ନା ପତ୍ନୀ ତ୍ୟାଗ କଲେ, ନା ଯୋଗକଲେ ନା କର୍ମକଲେ, ନା ଭକ୍ତିକଲେ ନା ଜପ କଲେ ନା ତପ କଲେ, ନା କିଛି ମନ୍ତ୍ର,ମାଳା, ପୂଜା ପାଠ କଲେ । କାରଣ ସିଏ ଭିନ୍ନ ନୁହଁନ୍ତି । ସତ୍ୟ ତୁମ ଭିତରେ ଅଛି, ତୁମେ ହିଁ ନିଜେ ! କେବଳ ସେଇ ଆଡ଼କୁ ଜାଗିଯିବାକୁ ହେବ । ପାଇବାକୁ ନୁହେଁ, ପାଇ ଯାଇ ସାରିଛ । ଦ୍ୱିପ୍ରହରର ପ୍ରଖର ସୂର୍ଯ୍ୟତାପରେ ଏବଂ ରଶ୍ମିରେ ତାତି ଯାଉଥିବା କୌଣସି ବ୍ୟକ୍ତି ଯଦି ପଚାରୁଥାଏ ଯେ ସୂର୍ଯ୍ୟ ଥିବାର ପ୍ରମାଣ କ'ଣ, ରଶ୍ମିକୁ କେଉଁଠି ଖୋଜିବା ? ତେବେ ଏଭଳି ଲୋକକୁ ପାଗଳ ଛଡା ଆଉ କ'ଣ କୁହାଯିବ ?

ଶ୍ରଦ୍ଧା ହେଉଛି ଅନୁଭବର ସୁଗନ୍ଧ । ଅନୁଭବ ବିନା ଶ୍ରଦ୍ଧା ହେଉଛି ଅନ୍ଧ ଏବଂ ଯେଉଁ ଶ୍ରଦ୍ଧା ପାଖରେ ଆଖି ନଥିବ, ସେଇ ଅନ୍ଧତା ଦ୍ୱାରା ସତ୍ୟ ପର୍ଯ୍ୟନ୍ତ ପହଞ୍ଚିହେବ ନାହିଁ । ମିଥ୍ୟାରୁ ଯେତେବେଳେ ମୁକ୍ତ ହୋଇଗଲ, ଅନ୍ଧ ବିଶ୍ୱାସରୁ ଯେତେବେଳେ ମୁକ୍ତ ହୋଇଗଲ, ତାପରେ ଯାହା ବାକୀ ରହିଯାଏ ତାହାହିଁ ହେଉଛି ସତ୍ୟ । ଚାଲିଗଲା ବେମାରୀ, ଯାହା ରହିଗଲା ସିଏ ହିଁ ସ୍ୱାସ୍ଥ୍ୟ ।

ସତ୍ୟକୁ ପାଇବା ପାଇଁ ସ୍ୱୟଂକୁ ହରାଇବାକୁ ପଡ଼ିବ, ସ୍ୱୟଂକୁ ନଷ୍ଟ କରିଦେବାକୁ ହେବ । ସ୍ୱୟଂକୁ , ଅହଂକାରକୁ ବଳି ନଚଢ଼ାଇବା ଯାଏ, କେହି ଜ୍ଞାନକୁ, ସତ୍ୟକୁ, ଆତ୍ମାକୁ ଉପଲବ୍ଧ ହୋଇପାରିବ ନାହିଁ ।

କଲ୍ୟାଣ ସାଧନକାରୀ ଚିତ୍ର, ମୂର୍ତ୍ତି ତ ଏହିପରି, ଯେପରି ଘରର ଅନ୍ଧାରକୁ ନଷ୍ଟ କରିବା ପାଇଁ ଦୀପର ଚିତ୍ରକୁ ତିଆରି କରିଦେବା, ବା ଦୀପ ଶବ୍ଦକୁ କହି ଚାଲିବା, ଜ୍ୟୋତି ଜ୍ୟୋତି ବୋଲି ଚାଲିବା । ତୁମେ ଯଦି ନିଜ ପ୍ରେମିକର ଚିତ୍ରପଟ ନେଇ ବସିରହ, ଚିତ୍ରପଟକୁ ଦେଖିଦେଲେ କ'ଣ କିଛି ତୃପ୍ତି ମିଳିପାରିବ ? ପାଣି ପାଣି ବୋଲି ରଡ଼ି କରୁଥିଲେ କ'ଣ ଶୋଷ ମେଣ୍ଟିପାରିବ ?

ଯେପର୍ଯ୍ୟନ୍ତ ତୁମର ଆତ୍ମା ସହିତ ପରିଚୟ ନ ହୋଇଯାଇଛି, ସେ ପର୍ଯ୍ୟନ୍ତ ଏୟା ମାନିନେବା ଯେ 'ଆତ୍ମା ଅଛି' ଏହା ନିରର୍ଥକ । ବର୍ତ୍ତମାନ ତ ଆମେ ନିଜକୁ ଭିତରେ ଭିତରେ ମାଟିର ଶରୀର ବୋଲି ମାନିନେଇଥାଉ, ନାମ, ଜାତି, ସମ୍ବନ୍ଧ, ରୂପଯୁକ୍ତ ବୋଲି ଭାବିନେଇଥାଉ କିନ୍ତୁ ଏଭଳି ମାନିନେବା ହିଁ ବ୍ୟର୍ଥ, ବାଚାଳତା କେବଳ ।

ତୁମକୁ ଖୋଜିବାକୁ ପଡ଼ିବ । ଆତ୍ମା ତୁମେ ସେତେବେଳେ ଯାଇ ହୋଇପାରିବ, ଯେତେବେଳେ ତୁମେ ଖୋଜିନେଇଛ । କୋଟି କୋଟି ଟଙ୍କାର ଖଜଣା ମାଟିତଳେ ଦବିହୋଇ ପଡ଼ିରହିଛି ଏବଂ ତୁମେ ତା' ଉପରେ ବସି ଭିକ୍ଷାମାଗିବ, ଏହାର ଉପଯୋଗିତା କ'ଣ ? ଖୋଜ, ଆତ୍ମାକୁ ଖୋଜିଲେ ହିଁ ମିଳିଥାଏ ।

ତୁମେ ବୁଦ୍ଧ ପୁରୁଷମାନଙ୍କ ଠାରୁ ଶୁଣିକରି ବି ହରାଇଲ, ମହାବୀର ମାନଙ୍କ ଠାରୁ ଶୁଣି ବି ହରାଇଲ, କୃଷ୍ଣଙ୍କ ଠାରୁ ଶୁଣି ବି ହରାଇଲ । ଆଜି ପର୍ଯ୍ୟନ୍ତ ତୁମେ ସମସ୍ତଙ୍କ ପାଖରେ ବସିଥାଇ ବି ଶୋଇଥିଲ । ପାତ୍ରକୁ ଓଲଟା କରିଦେଇ ବସିଥିଲ, ସେହିପରି ତୁମେ ମୋ' ପାଖରେ ଆସି ବସିଯାଇଛ । ତୁମେ କିଛି ନୂଆ କରି ପ୍ରଥମଥର ପାଇଁ ମୋତେ ହିଁ ଶୁଣୁନାହଁ, ଅନାଦିକାଳରୁ ଅନନ୍ତ ମହାପୁରୁଷ ମାନଙ୍କୁ ଶୁଣି ଆସୁଛ । ତୁମେ ନିଜକୁ ଜାଗ୍ରତ କରାଇ ଦେଇ ଶୁଣ । ଯେମିତି ପରୀକ୍ଷିତ ରାଜା ଶୁକଦେବଙ୍କୁ, ଅର୍ଜୁନ କୃଷ୍ଣଙ୍କୁ ଥରେ ମାତ୍ର ଶୁଣିଦେଲେ ଏବଂ ନିଜକୁ ପାଇଗଲେ ।

ହୋଶ୍ ରଖିବାର ଉଦ୍ଦେଶ୍ୟ ହେଉଛି ତୁମେ ଜାଗ୍ରତ ରୁହ । ତୁମ ସମ୍ମୁଖରେ ଯାହା କିଛି ବି ହେଉଛି ତୁମେ ତାକୁ ଦେଖିଚାଲ । ତୁମ ବିନା ଜାଣ କିଛି ହୋଇନପାରୁ । ଯିଏ ଜାଗ୍ରତ ହୋଇ ଜୀଇଁଛି ତାଙ୍କ ଜୀବନରେ ପାପ ନଷ୍ଟ ହୋଇଯାଇଛି । ଶୋଇ ଶୋଇ ଜୀଇଁବାର ଅର୍ଥ ହେଉଛି ପାପ ଭିତରେ ଜୀଇଁବା । ପୁଣ୍ୟର ଅର୍ଥ ହେଉଛି ଜାଗି-ଜାଗି ଜୀଇଁବା ।

ଅସତ୍ୟକୁ ଅସତ୍ୟ ବୋଲି ଜାଣିନିଅ । ଅସାରକୁ ଅସାର ଜାଣିନିଅ । ବାସ୍, ସତ୍ୟର ଦୁଆର ଖୋଲିବାର ସମୟ ଆସିଗଲା । ସାରକୁ ଜାଣିବାର ଭୂମିକମ୍ପ ସୃଷ୍ଟି ହୋଇଗଲା । ଯିଏ ନାହିଁ, ତାକୁ ଜାଣିନିଅ ଯେ ସିଏ ନାହିଁ, ତାପରେ ଯିଏ ଅଛି, ତା' ପାଇଁ ତୁମର ଦ୍ୱାର ଖୋଲିଗଲା ।

ଯଦି ତୁମର ଜାଣିବା କେବଳ ଜାଣିବା ହୋଇଥାଏ, ତେବେ ତାହା ସମ୍ୟକ୍ ଦୃଷ୍ଟି ନୁହେଁ, ତାହା ହେଉଛି ମିଥ୍ୟାଦୃଷ୍ଟି । ଯଦି ତୁମର ଜାଣିବା ଅନୁଭବରେ ଉତ୍ତରିତ ହୋଇସାରିଛି, ତୁମେ ଜାଣିସାରିଛ, ତୁମେ ସ୍ୱାଦ ଚାଖି ନେଇଛ, ତେବେ ଆଖି ସଫା ହୋଇଗଲା, ସେତେବେଳେ ହିଁ ସମ୍ୟକ୍ ଦୃଷ୍ଟି ହୋଇଛି । ଅନ୍ୟଥା ତୁମର ଦୃଷ୍ଟି ଉପରେ ତ ଅନ୍ୟର ବିଚାରର ପର୍ଦ୍ଦା ପଡ଼ିଯାଇଛି, ଯିଏ ସ୍ୱୟଂ ଜାଣିନେଇ ତୁମକୁ ବତାଇ ନାହାନ୍ତି ବରଂ ସିଏ ବି କାହାଠାରୁ ଶୁଣିକରି ବତାଇଦେଇଛନ୍ତି

ବା ପଢ଼ିଦେଇ ବତାଇଦେଇଛନ୍ତି । ତାଙ୍କର ବତାଇଥିବା ସାଧନ, ଭଜନ, ମାର୍ଗ, ସଂକେତ ଦ୍ୱାରା ତୁମେ ସେଇଠି ପହଞ୍ଚିପାରିବ ନାହିଁ । ଯେମିତି ପିତା ପୁତ୍ରକୁ ଭଗବାନ ଅଛନ୍ତି ବୋଲି ଶିଖାଇ ଦେଇଥାଏ କିନ୍ତୁ ପୁତ୍ର ଯଦି ପଚାରେ କ'ଣ ତୁମେ ତାଙ୍କୁ ଜାଣିଛ, ସେତେବେଳେ ସିଏ କହନ୍ତି ଆମର ପିତା ଆମକୁ କହିଥିଲେ ଯେ ଈଶ୍ୱରଙ୍କ ଉପରେ ଭରସା କର । ଈଶ୍ୱର ଅଛନ୍ତି କିନ୍ତୁ ମୁଁ ତାଙ୍କୁ ଜାଣି ନାହିଁ । ଯଦି ମିଥ୍ୟା ଦୃଷ୍ଟିକୁ ଥରେ ଭରସା କରିନେଲ ତେବେ ତା' ଠାରୁ ରକ୍ଷାପାଇବା କଠିନ ହୋଇପଡ଼ିବ, ସେ ତା'ର ଚେରକୁ ଗଭୀରରୁ ଗଭୀର ସ୍ତର ପର୍ଯ୍ୟନ୍ତ ବିଛାଇ ଦେବ, ସିଏ ତୁମକୁ ଶୋଷି ନେବ, ପ୍ରାଣକୁ ଦୁର୍ବଳ କରିଦେବ, ପୁଣି ତା'ଠାରୁ ରକ୍ଷାପାଇବା ମୁସ୍କିଲ୍ ହୋଇପଡ଼ିବ । ପଣ୍ଡିତମାନେ ଯାହା କିଛି କହୁଛନ୍ତି, ସେମାନେ ଶାସ୍ତ୍ରର ଆଧାର ଉପରେ କହୁଛନ୍ତି । ସେଥିରୁ ଅସିଲି ଯିଏ, ସିଏ ଖସି ଚାଲିଯାଇଛି । ଯାହା ସମ୍ବନ୍ଧରେ କହିଲେ, ତାହା ଜଡ଼ ଶାସ୍ତ୍ରରେ ଉତ୍ତରିତ ହୋଇପାରିବ ନାହିଁ, ସିଏ ତ କହିବାବାଲା ଭିତରେ ହିଁ ଲୁଚି ରହିଛି । ଶୁଣିଦେଇ ମାନିନେଲେ ଆବାଗମନର ଚକ୍ର ସର୍ବଦା ସେଇମିତି ଚାଲିଥିବ ।



## ।। କ'ଣ ଦୁଃଖ ବି ସ୍ୱପ୍ନ ନୁହେଁ ତ ? ।।

ଯେତେବେଳେ କୌଣସି ପ୍ରେମିକ, ପ୍ରେମିକାଙ୍କ ଭିତରେ ଅଚାନକ ମିଳନ ହୋଇଯାଏ ସେତେବେଳେ ସେମାନଙ୍କୁ ବଡ଼ ସୁଖ ମିଳିଥାଏ କିନ୍ତୁ ସେମାନଙ୍କର ଏହା ବିଶ୍ୱାସ ହୋଇନଥାଏ ଏବଂ ସେମାନେ ଏମିତି କହି ଦେଇଥାନ୍ତି ଯେ – ''କ'ଣ ଇଏ ସ୍ୱପ୍ନ ନୁହେଁ ତ ? କ'ଣ ମୁଁ ସ୍ୱପ୍ନ ଦେଖୁନାହିଁ ତ ?'' ନାଁ, ଏହା ସତ୍ୟ ନୁହେଁ, ଏହା ହେଉଛି ଜାଗ୍ରତର ସ୍ୱପ୍ନ ।

ମାତ୍ର ଯେତେବେଳେ ଜୀବନକୁ ଦୁଃଖ ଆସି ଘେରିଯାଏ, ସେତେବେଳେ କେହି ଏଭଳି କେବେ କହୁଥିବାର ଦେଖାଯାଇନଥାଏ ଯେ– ''ଇଏ ସ୍ୱପ୍ନ ତ ଦେଖୁନାହିଁ, ଇଏ କଳ୍ପନା ନୁହେଁ ତ ?'' ସୁଖ ପ୍ରଥମ ଥର ମିଳୁଥିଲେ ତୁମେ କହିଥାଅ – ''କାହିଁ କଳ୍ପନା ନୁହେଁ ତ ?'' ସୁଖକୁ ମାନିନେବାକୁ ମନ ଯେମିତି ପ୍ରସ୍ତୁତ ହୁଏନାହିଁ ଏବଂ ଦୁଃଖକୁ କଳ୍ପନା କହିବାକୁ ମନ ସେମିତି ପ୍ରସ୍ତୁତ ହୁଏନାହିଁ । ସୁଖକୁ ମିଛ କହିବାକୁ ଇଚ୍ଛା ହୋଇଥାଏ ଏବଂ ଦୁଃଖକୁ ମାନିନେବାକୁ ମନ ହୋଇଥାଏ । ତୁମେ ଦୁଃଖରେ ପୀଡ଼ିତ ହୋଇଥାଅ, କିନ୍ତୁ ଦୁଃଖକୁ ତ୍ୟାଗ କରିବାକୁ ଚାହିଁ ନଥାଅ । ଯଦି ତୁମେ ଦୁଃଖକୁ ତ୍ୟାଗ କରିବାକୁ ଚାହୁଁଥାନ୍ତ, ତେବେ ବର୍ତ୍ତମାନ ସୁଦ୍ଧା ଦୁଃଖର ତ୍ୟାଗ ହୋଇଯାଇଥାନ୍ତା । ତୁମେ ଧରି ରଖିନଥିଲେ, ଦୁଃଖ ରହିପାରିନଥାନ୍ତା । ଦୁଃଖକୁ ନାଶ କରିବାର ଅର୍ଥ ହେଉଛି ନିଜେ ନିଜକୁ ନଷ୍ଟ କରିବାକୁ ରାଜିହେବା । କାରଣ ଦେହାଭିମାନ ହେଉଛି ସମସ୍ତ ଦୁଃଖ ଗୁଡ଼ିକର କେନ୍ଦ୍ର । ତୁମେ ଦୁଃଖର ମୂଳ ଦେହାଭିମାନକୁ ଲୁଚାଇ ରଖିଥାଅ, ସେଥିପାଇଁ ମନରେ ଦୁଃଖ ହୋଇଥାଏ । ଦୁଃଖ ତୁମ ବିନା ବଞ୍ଚି ରହିପାରିବ ନାହିଁ ।

ତୁମର ମନ ଯେଉଁଠୁ ରସ ନେଇଥାଏ, ତାହାହିଁ ହେଉଛି ବନ୍ଧନ । ଯେତେବେଳେ ମନ ସେଇଠୁ ବିରସ ହୋଇଯାଏ, ତାହା ହେଉଛି ସେଇଠୁ ମନର ମୁକ୍ତି । ''ମନ ହିଁ ହେଉଛି ବନ୍ଧନ ଓ ମୋକ୍ଷର କାରଣ'' । ଯଦି ତୁମର ମନ କେଉଁଠି ଅଛି, ତେବେ ସେଇଠି ରସ ଥିବ ଏବଂ ତାହାହିଁ ହେଉଛି ତା'ର ବନ୍ଧନ । ଏବଂ ତୁମର ମନ କେଉଁଠି କାହାଠାରୁ ରସ ଗ୍ରହଣ କରୁନାହିଁ, ତା'ପାଇଁ ସବୁ ଚିଜ, ସବୁ ବିଷୟ, ସବୁ ବ୍ୟକ୍ତି ବିରସ ହୋଇଗଲେ – ସିଏ ହିଁ ମୁକ୍ତ ।

**ଜ + ଗତ** = ଜଗତ ଅର୍ଥାତ୍ ଯାହା ଧାଇଁ ପଳାଉଛି, ଯେଉଁଥିରେ ଗତି ଅଛି, ଯିଏ ଚାଲି ହିଁ ଯାଉଛି । ଏଇ ଜଗତ ହେଉଛି ଏକ ସ୍ୱପ୍ନ, କାରଣ ସିଏ ବି ପ୍ରତି ମୁହୂର୍ତ୍ତରେ ବଦଳିଯାଉଛି ।

ଯେତେବେଳେ ଜାଣିନେଲ ଯେ ସଂସାର ହେଉଛି ମିଥ୍ୟା, ଛଳନା, ସେତେବେଳେ ଆଉ କିଛି ପାଇବାର ଆକାଂକ୍ଷା ବି ରହେନାହିଁ । ଯେତେବେଳେ ଜାଣିନେଲ ଯେ ଦଉଡ଼ି ଅଛି ସାପ ନାହିଁ, ସେତେବେଳେ ସେଇ ସାପଠାରୁ ରକ୍ଷାପାଇବା ପାଇଁ ଦୂରକୁ ପଳାଇବା ବା ହାତରେ ଖଣ୍ଡାଧରି ଚାଲିବାର ଆବଶ୍ୟକତା କ'ଣ ଅଛି ? କାହାକୁ ଏୟା କହିବାର ବି ଆବଶ୍ୟକତା କ'ଣ ଅଛି ଯେ ଆଗରେ ଦଉଡ଼ିର ସାପ ଅଛି, ତୁମେ ଦୂରେଇ ଦୂରେଇ ଯିବ ? ଯିଏ ମାୟା, ତା'ଠାରୁ ପୁଣି ରକ୍ଷା ପାଇବା କ'ଣ ? ମାୟାର ଅର୍ଥ ହେଲା ଯାହାର ଅସ୍ତିତ୍ୱ ହିଁ ନାହିଁ । କାମିନୀ, କାଞ୍ଚନ ପ୍ରତି ସାବଧାନ ରୁହ ଏୟା ବି କୁହାଚାଲିଛି ଏବଂ ସଂସାର ବି ମିଛ ବୋଲି କହୁଛ । ଯିଏ ଅସତ୍ୟ, ଏତିକି ଜାଣିନେଲ ତ ତୁମେ ମୁକ୍ତ ହୋଇଗଲ ।

ଯଦି ତୁମେ ଦୁଃଖୀ ହେଉଛ, ତେବେ ତାହା ନିଜ କାରଣରୁ ବୋଲି ଜାଣ, ଯଦି ସୁଖୀ ହେଉଛ ତେବେ ବି ନିଜକୁ କାରଣ ବୋଲି ଜାଣ । ଏହାର ନାମ ହେଉଛି ଧାର୍ମିକତା । କାରଣ ଏବେ ତୁମ ହାତର କଥା ହେଉଛି ସୁଧାର କରିବା । ବର୍ତ୍ତମାନ ତୁମେ ଭଲ ଭାବରେ ଜାଣିପାରିବ ଯେ ଦୁଃଖୀ ହେବା ପାଇଁ କିଭଳି ବ୍ୟବହାର ଅନ୍ୟମାନଙ୍କ ପ୍ରତି କରିବା । ବର୍ତ୍ତମାନ ଦୁଃଖୀ ହେବାକୁ ଚାହୁଁଛ ତ ଆରାମରେ ଏଭଳି ବିକୃତ କର୍ମର ବୀଜ ଲଗାଉଥାଅ ଏବଂ କାନ୍ଦୁଥାଅ । ପ୍ରେମ ବୀଜ ବୁଣିଦେଲ ତ ମଜାରେ ଅମୃତର ପିଆଲାକୁ ପିଇଚାଲ ଏବଂ ହସି ହସି ଜୀଇଁରୁହ ।

ସିଏ ମୋତେ ଗାଳି ଦେଲା, ସିଏ ମୋତେ ମାରିଲା, ସିଏ ମୋର ଅପମାନ କଲା, ସିଏ ମୋତେ ହରାଇଦେଲା, ମୋର ଧନ ଲୁଟିନେଲା– ଯିଏ ଏହିଭଳି ଶତ୍ରୁତାର ଗଣ୍ଠିଲିକୁ ମନରେ ବସାଇନଥାଏ ସେଇ ନିର୍ବିକାର ଭାବରେ ଜୀଉଁଥିବା ବ୍ୟକ୍ତି ସର୍ବଦା ଶାନ୍ତ ରହିଥାଏ ।

ଅହଂକାର ପାଇଁ କୌଣସି ପ୍ରକାର ବିଶେଷତ୍ୱର ଆବଶ୍ୟକତା ରହିଛି, କୌଣସି ବସ୍ତୁ, ସ୍ଥାନ, ପଦ, ସମ୍ପତ୍ତିର ଆବଶ୍ୟକତା ଅଛି କିନ୍ତୁ ଆନନ୍ଦ ପାଇଁ କୌଣସି ବାହ୍ୟ ସାମଗ୍ରୀର

ଆବଶ୍ୟକତା ନାହିଁ । ଦେଖ ସୁଷୁପ୍ତି ଅବସ୍ଥାରେ ବିନା ବାହ୍ୟବସ୍ତୁ ଏବଂ ବ୍ୟକ୍ତିରେ ଆନନ୍ଦାନୁଭୂତି ସମସ୍ତଙ୍କର ଅନୁଭବ ହୋଇଥାଏ । ଯେପର୍ଯ୍ୟନ୍ତ ତୁମର ସୁଖପାଇଁ ଅନ୍ୟ କୌଣସି ପଦାର୍ଥ, ବ୍ୟକ୍ତି ପାଇଁ ଅପେକ୍ଷା ରହିଛି, ସେପର୍ଯ୍ୟନ୍ତ ସେଇ ସୁଖ ହେଉଛି ପରର । ସେ ପର୍ଯ୍ୟନ୍ତ ଦୁଃଖୀ ହୋଇ ରହିବ ।

ଏଇ ସଂସାରରେ କେହି ସର୍ବଦା ରହିବେ ନାହିଁ । ପ୍ରତ୍ୟେକ ବ୍ୟକ୍ତି ତଳେ ୧୦ ଜଣ ବ୍ୟକ୍ତିଙ୍କର ଶବ ପୋତି ହୋଇପଡ଼ିଛି । ଏକାଦଶ ବ୍ୟକ୍ତି ତୁମେ ତା' ଉପରେ ବସିଛ ଏବଂ ଖୁବ୍ ଶୀଘ୍ର ଏକାଦଶତମ ଶବ ତୁମେ ହୋଇଯିବ ଏବଂ ଦ୍ୱାଦଶତମ କେହି ତୁମ ଭଳି ସେଇ ଜାଗାରେ, ତା' ଉପରେ ଅହଂକାର କରି ବସିଯିବ । ଧ୍ୟାନ ରଖ । ତୁମେ ଲକ୍ଷ ଲକ୍ଷ, କୋଟି କୋଟି ଟଙ୍କା ସଂଗ୍ରହ କରିନିଅ, କିନ୍ତୁ କୋକେଇରେ କେଉଁଠି ହେଲେ ପକେଟ୍ ନଥାଏ । ଯଦି ତୁମେ ସେଇ ଧନକୁ କୋକେଇରେ ବି ବାନ୍ଧିନେଲ, ତେବେ ତାହା ବି ଦାହ ସଂସ୍କାର ବେଳେ ତୁମ ଠାରୁ ଛଡ଼େଇ ନିଆଯିବ । ଯଦି ତୁମେ ତାକୁ ମୁହଁରେ ଗିଳିଦେଇ ପେଟରେ ଭରିନେଲ, ତଥାପି ସୁଦ୍ଧା ସିଏ ଶରୀର ଭସ୍ମ ହୋଇଗଲା ପରେ ଏଇଠି ରହିଯିବ । ତୁମେ ଲକ୍ଷେ ଚେଷ୍ଟାକଲେ ସୁଦ୍ଧା ତାକୁ ତୁମ ସାଙ୍ଗରେ ନେଇଯାଇ ପାରିବ ନାହିଁ ।

ଭାବ, କିଏ ତୁମକୁ ସୁଖ ଦେଇଥାଏ କିଏ ତୁମକୁ ଦୁଃଖ ଦେଇପାରେ । ଏ ସବୁ ହେଉଛି ତୁମ ମନର ନିଶ୍ଚୟ । ଏବେ ଏଇ ଘଣ୍ଟାଏ ପୂର୍ବରୁ ଯେଉଁ କଥା ତୁମକୁ ଦୁଃଖ ଭଳି ଲାଗୁଥିଲା, ତାହା ବର୍ତ୍ତମାନ ସୁଖ ଭଳି ଲାଗୁଛି । ଘଣ୍ଟାଏ ପୂର୍ବରୁ ଯାହା ସୁଖ ଭଳି ଲାଗୁଥିଲା, ବର୍ତ୍ତମାନ ତାହା ଦୁଃଖ ଭଳି ଲାଗୁଛି । ଯଦି ତୁମକୁ ଏଇକଥା ଦେଖାଯାଉଥାଏ ଯେ ଅନ୍ୟ କେହି ସୁଖ ଦେଇପାରିବ ନାହିଁ, ତେବେ ପୁଣି ଆଉ କିଏ ଦୁଃଖ ଦେବ କେମିତି ?

ବର୍ତ୍ତମାନ ଯେଉଁ ଧନ, ସମ୍ପତ୍ତିକୁ ନିଜର ବୋଲି ମାନିନେଇ ପ୍ରସନ୍ନ ହେଉଛ ତୁମ ପୂର୍ବରୁ ସେଇ ଧନ, ସମ୍ପତ୍ତି, ଜମି, ଘର, ପତ୍ନୀ, ପତି, ପୁତ୍ର ଉପରେ ହଜାର ହଜାର ଲୋକ ନିଜର ଅଭିମାନ ରଖି ମରିଯାଇ ସାରିଛନ୍ତି । ବର୍ତ୍ତମାନ ତୁମେ ତାକୁ କେତେଦିନ ପର୍ଯ୍ୟନ୍ତ ନିଜର କରି ରଖିପାରିବ ? ଯେଉଁ ଟଙ୍କା ତୁମ ପକେଟରେ ବର୍ତ୍ତମାନ ରଖିଛ, ସେଇ ନୋଟ୍‌ଗୁଡ଼ିକ ହଜାରେ ପକେଟ୍‌କୁ ଖାଲି କରିଦେଇ ବର୍ତ୍ତମାନ ତୁମ ପକେଟ୍‌କୁ ଭରି ଦେଇଛି । ଏହି ନୋଟ୍‌ଗୁଡ଼ିକର ମଇଳା, ଲୋଚା କୋଚା ଫଟା–ପୁରଣା ଅବସ୍ଥା ବତାଇ ଦେଉଛି ଯେ ଇଏ ଭଲା କ'ଣ ତୁମର ହୋଇ ରହିବ ?

ଯେଉଁ ମଣିଷର ବୁଦ୍ଧିରେ ଏଇ କଥା ଆସିଗଲା, ତାକୁ ସଂସାରରେ ରହିବାର ଢଙ୍ଗ ଆସିଗଲା । ଏଇ ମୁହୂର୍ତ୍ତରେ ସେ ସ୍ୱର୍ଗରେ ପ୍ରବେଶ କରିଗଲା । ତା'ପାଇଁ ସ୍ୱର୍ଗ କାଲି ନୁହେଁ, ବର୍ତ୍ତମାନ ଅଛି ଏବଂ ଏଇଠି ଅଛି ।

## ବୁଝ ଏବଂ ବୁଝାଇଦିଅ ।

ଯେବେ ବି ଯିବା ଏଇଠୁ　　କିଛି ପାଖରେ ନଥିବ
ଦୁଇଗଜର କନା ଖଣ୍ଡିଏ　　ନିଜର ଆଶ୍ରୟ ହେବ ।।୦।।

ଯେବେ ଆସିଯିବ ନିମନ୍ତ୍ରଣ,　　ରହିପାରିବନି ଏକ କ୍ଷଣ
ପଡ଼ି ରହିଥିବ ସବୁ କିଛି　　ଧନ, କୋଷ ଆଉ କାଞ୍ଚନ ।
ଛିଡ଼ା ହୋଇରହିଥିବେ　　ପତି, ପତ୍ନୀ ଆଉ ସ୍ୱଜନ
କହି ବି ପାରିବନି କିଛି　　ମନରେ ଯେ ଭାବ ଥିବ
　　ଦେହରେ ଯେ କଷ୍ଟ ହେବ
ଦୁଇଗଜର କନା ଖଣ୍ଡିଏ　　ନିଜର ଆଶ୍ରୟ ହେବ ।।୧।।
　　ଯେ ବି ଯିବା ଏଇଠୁ...

କିଆଁ କାହାକୁ କଷ୍ଟ ଦେବା　　କିଆଁ କାହା ଲୁହ ଗଡ଼ାଇବା
କିଆଁ କାହାର ଧନକୁ ଲୁଟି,　　ନିଜ ମହଲକୁ ସଜାଇବା । (୨)
ଯେବେ ଜାଣିଛ ତୁମେ ଅନ୍ତିମ　　ଶ୍ମଶାନରେ ବାସ ହେବ
　　ଭୂମିରେ ହିଁ ବାସ ହେବ ।
ଦୁଇଗଜର କନା ଖଣ୍ଡିଏ　　ସିଏ ବି ପାଖେ ନଥିବ ।।୨।।
　　ଯେ ବି ଯିବା ଏଇଠୁ...

କିଛି ବି ନୁହଁଇ ତୋର　　କିଛି ବି ନୁହଁଇ ମୋର
କହିଥାନ୍ତି ଏହାକୁ ଦୁନିଆ　　ଆଖି ପିଛୁଳାର ଭଡ଼ା ଘର । (୨)
ଯିବା ଯେତେବେଳେ ଛାଡ଼ିଦେଇ
　　କେହି ତ ନିରାଶ ହେବ
　　କେହି ତ ଉଦାସ ହେବ
ନା ପତି ସାଙ୍ଗରେ ଥିବ　　ନା ପୁତ୍ର ସାଥୀ ହେବ ।।୩।।
　　ଯେ ବି ଯିବା ଏଇଠୁ...

ଯେବେ ବି ଯିବା ଏଇଠୁ    ଉଠାଇ ନିଜର ଡେରା
ଭବସିନ୍ଧୁର ଭଉଁରୀରେ    ସବୁ ହୋଇଯିବେ ଘେରା ।(୨)
କେହି ରାମଦାସ ହେବ    କେହି କୃଷ୍ଣଦାସ ହେବ
କେବଳ ସିଏ ତରିବ    ଯା'ର ଆତ୍ମଭାସ ହେବ
ଯା'ର ସୋଽହଂ ଭାସ ହେବ ।।୪।।
ଯେବେ ବି ଯିବା ଏଇଠୁ...



# ।। ସଦ୍‌ଗୁରୁ ମୃତ୍ୟୁଃ ।।

ଗୁରୁ ଦର୍ଶନର ଏକମାତ୍ର ଅର୍ଥ ହେଉଛି ଆପଣାର ମୃତ୍ୟୁ ହେବା । ଗୁରୁ ହେଉଛନ୍ତି ମୃତ୍ୟୁ । ନିଜକୁ ନଷ୍ଟ କରିଦେବା ପାଇଁ ପ୍ରସ୍ତୁତି । ଗୁରୁଙ୍କ ପାଖ ହେବାର ଉଦ୍ଦେଶ୍ୟ ହେଉଛି ମୃତ୍ୟୁର ନିକଟବର୍ତ୍ତୀ ହେବା । ଗୁରୁଙ୍କ ନିକଟବର୍ତ୍ତୀ ହେବା ଏକ ସତତ ସାଧନା । ସେଥିପାଇଁ ସତ୍‌ସଙ୍ଗର ମହିମା କୁହାଯାଇଛି । ସନ୍ଥ କବୀର ତ କହିଥାନ୍ତି **''ଜୋ ଘର ଫୁଙ୍କେ ଆପନୋ, ଚଲେ ହମାରେ ସଙ୍ଗ ।''**

**ଏକ ଘଡ଼ୀ ଆଧୀ ଘଡ଼ୀ, ଆଧୀ ମେଁ ପୁନିଆଧ ।**
**ତୁଲସୀ ସଂଗତ ସଂତ କୀ, ହରେ କୋଟି ଅପରାଧ ।।**

ଗୁରୁଙ୍କ ପାଖରେ ସବୁପ୍ରକାରର ଅହଂକାର ଭାଙ୍ଗିଯିବ । ତୁମକୁ ପୁଣି ଅଲଗା ଅଲଗା କରି ତିଆରି କରାଯିବ । ତୁମକୁ ମାର୍ଜଣା କରାଯିବ, ପୂର୍ଣ୍ଣ ଶୁଦ୍ଧ ସୁବର୍ଣ୍ଣ ରୂପ ଦିଆଯିବ । ଗୁରୁଙ୍କ ପାଖକୁ ଖାଲିହୋଇ ଯାଅ, କୌଣସି ଅହଂକାରକୁ ନେଇ ଯାଅନାହିଁ, ଯଦ୍ଦ୍ୱାରା ସିଏ ତୁମ ଭିତରେ କିଛି ନୂତନତାକୁ ଭରିଦେଇ ପାରିବେ, ଜାଗ୍ରତ କରାଇ ପାରିବେ । ତୁମେ ତାଙ୍କୁ ଲେଖିବାର ସୁଯୋଗ ଦିଅ । ଗୁରୁଙ୍କ ପାଖକୁ ବାସୀ, ଉଧାର ଜ୍ଞାନ, ଶାସ୍ତ୍ରର ଜ୍ଞାନ ନେଇ କେବେହେଲେ ଯାଅନାହିଁ । ତୁମେ ସିଦ୍ଧାନ୍ତ ଓ ତର୍କର ଜାଲ ଭିତରେ ପଡ଼ିଯାଅନାହିଁ ।

ଗୁରୁ ନାରାଜ ହୋଇଯାଇ ତୁମ ଜିଜ୍ଞାସାର ପରୀକ୍ଷା କରିଥାନ୍ତି ଯେ ତୁମେ ନାରାଜ ହୋଇଥିବା ଗୁରୁଙ୍କୁ ସ୍ୱୀକାର କରୁଛ ନା ନାହିଁ ? ପ୍ରିୟ ଲୋକ ସହିତ ତ ସମସ୍ତେ ରହିବାକୁ ଚାହିଁଥାନ୍ତି, ସେଇଠି କୌଣସି ପ୍ରକାର କଠିନତା ନଥାଏ । ଗୁରୁଙ୍କର ରୁକ୍ଷପଣିଆ, କଡ଼ାପଣିଆ, ନାରାଜ ହେବା ପରେ ବି ଯେ ଅଟକି ରହିଥାଏ, ସିଏ ହିଁ ଅମୃତକୁ ଅନୁଭବ କରିଥାଏ । କୁହାଯାଏ – **'ଗୁରୁ ଅମୃତର ଖଣି'** ।

ଯଦି ପ୍ରେମ ରହିଛି ତେବେ ଏହା ବି ହେଉଛି ଗୁରୁଙ୍କ ସୌନ୍ଦର୍ଯ୍ୟ । ଗୁରୁଙ୍କ ପାଖରେ ଯେମିତି ଘଟୁଛି ଘଟୁ, ହସିଦେଇ ସ୍ୱୀକାର କରିନେବାର କଳା ହେଉଛି ଶିଷ୍ୟତ୍ୱ । ମନରେ ଉଦାସ ହୋଇ, ନାରାଜ ହୋଇ ସ୍ୱୀକାର କରିନେବାର ଅର୍ଥହେଲା ଶିଷ୍ୟତ୍ୱ ଜାଗ୍ରତ ହୋଇନାହିଁ । ଗୁରୁଙ୍କ ଆଦେଶକୁ ଆନନ୍ଦପୂର୍ଣ୍ଣ ଭାବରେ ସ୍ୱୀକାର କରିନେବା ଉଚିତ୍ ।

ଗୁରୁଙ୍କ ପାଖକୁ ଯେତେବେଳେ ବି ଯାଅ ପୂଜାର ଭାବ ନେଇ ଯାଅ, ଯେମିତି ମନ୍ଦିର, ତୀର୍ଥକୁ ଯାଇଥାଅ । ପବିତ୍ର ଆଶା ଓ ପ୍ରେମପୂର୍ଣ୍ଣ ଭାବରେ ଯାଅ, ଯେମିତି କି ତୁମେ ସାକ୍ଷାତ୍ ପରମାତ୍ମାଙ୍କ ପାଖକୁ ହିଁ ଯାଉଛ । ସେତେବେଳେ ଯାଇ କ୍ରାନ୍ତି ଘଟିବ । ଗୋଟିଏ ଜନ୍ମ ହୋଇଥିଲା ମାତା ପିତାଙ୍କ ଠାରୁ ଏଇ ଶରୀରର, ବର୍ତ୍ତମାନ ଅସଲ ଜନ୍ମ ହୋଇଥାଏ ସଦ୍‌ଗୁରୁଙ୍କ ଠାରୁ । ବର୍ତ୍ତମାନ ଜନ୍ମ ହେବ ଚେତନାର, ବୋଧର ।

ସଦ୍‌ଗୁରୁଙ୍କ ପାଖରେ ଜଣେ ଅହଂକାରୀ ଅଧିକ ସମୟ ଧରି ରହିପାରିବ ନାହିଁ । ସଦ୍‌ଗୁରୁ ତୁମର ମନୋରଂଜନ କରୁନାହାନ୍ତି ଯେ ତୁମକୁ କିଛି ଅଧିକ ମଜା ଆସିଯିବ, ଯେହେତୁ ତୁମକୁ ଭଲ ଲାଗିଲା ସେଥିପାଇଁ ତୁମେ ଅଧିକ ସମୟ ବିତାଇ ଚାଲିଗଲ । ସଦ୍‌ଗୁରୁ ତ ତୁମର ମନୋରଂଜନ କରିନଥାନ୍ତି, ସିଏ ତ ମନୋଭଂଜନ କରିଥାନ୍ତି । ମନୋରଂଜନ କରି କରି ତ ତୁମେ ନିଜର ଅନେକ ଜନ୍ମ ଅଯଥାରେ ହରାଇଦେଲ । ଏବେ ଉଠ ! ଅଜ୍ଞାନ ନିଦ୍ରାରୁ ଏବଂ ଶ୍ରେଷ୍ଠ ପୁରୁଷଙ୍କ ଶରଣ ନେଇ, ନିଜ କଲ୍ୟାଣର ସାଧନ ସାକ୍ଷୀ ଭାବରେ ପ୍ରବେଶ କରିବା ପାଇଁ ଚେଷ୍ଟାକର ।

ସଦ୍‌ଗୁରୁ ହେଉଛନ୍ତି ସିଏ, ଯିଏ ତୁମକୁ ଭିତରେ ପହଞ୍ଚାଇ ଦେବେ ଏବଂ ସତ୍‌ସଙ୍ଗ, ସତ୍‌ଶାସ୍ତ୍ର ବି ହେଉଛି ସିଏ, ଯିଏ ତୁମକୁ ତୁମ ସହିତ ଯୋଡ଼ିଦେବ । ସଦ୍‌ଗୁରୁମାନଙ୍କ ସଙ୍ଗକଲେ ତୁମକୁ ସତ୍ୟ ମିଳିବ ନାହିଁ କିନ୍ତୁ ସତ୍ୟର ପିପାସା ତୁମ ଭିତରେ ଜାଗିଉଠିବ । ନିଜ ଭିତରେ ସତ୍ୟକୁ ଖୋଜିବାର ଆକାଂକ୍ଷା ବଳବତୀ ହୋଇଗଲା ତ ବହୁତ ହୋଇଗଲା । ବେଦ, ପୁରାଣ, ଗୀତା, ରାମାୟଣ ପଢ଼ିଦେଲେ ସତ୍ୟକୁ ଖୋଜିବାର ଆକାଂକ୍ଷା ଯଦି ବଳବତୀ ହୋଇଯାଉଥାଏ, ତେବେ ତ ଯଥେଷ୍ଟ ହୋଇଛି । ନହେଲେ ଶାସ୍ତ୍ର ପାଠ ହେଉଛି କେବଳ ଅହଂକାରକୁ ବଢ଼ାଇବାର ସାଧନ ।

ପ୍ରକୃତ ସଦ୍‌ଗୁରୁ, ସନ୍ଥ, ମହାତ୍ମା ହେଉଛନ୍ତି ସେଇମାନେ, ଯିଏ ତୁମକୁ ସାକ୍ଷୀ ରହିବାର ପ୍ରେରଣା ଦେଇଥାନ୍ତି । ସତ୍‌କର୍ମ କରିବାର ପ୍ରେରଣା ସମସ୍ତେ ଦେଇଥାନ୍ତି କିନ୍ତୁ ସତ୍‌କର୍ମ କରୁଥିବା ବେଳେ ପାପକର୍ମ ବି ନିଶ୍ଚୟ ହୋଇ ଚାଲିଥିବ । ବିନା ପାପକର୍ମରେ ମନ୍ଦିର ତିଆରି କରିବା ଭଳି ସତ୍‌କର୍ମ କେବେ ବି ହୋଇପାରିବ ନାହିଁ । ପ୍ରକୃତ ସନ୍ଥ ତ ତୁମକୁ ଏୟା କହିନଥାନ୍ତି ଯେ ଏୟା

କର, ଏୟା କରନାହିଁ ବୋଲି, ସିଏ ତ ଏୟା କହିଥାନ୍ତି ଯେ ତୁମେ ନିଜକୁ ଜାଣିନିଅ ଯେ ତୁମେ କିଏ । ତୁମେ କେବଳ ସାକ୍ଷୀ ହୋଇଯାଅ । ତା'ପରେ ଯାହା ହେବ ସବୁ ଠିକ୍ ହେବ ଏବଂ ନିଜକୁ ନଜାଣିବା ପୂର୍ବରୁ ଯାହାବି ହେବ ତାହା ଭୁଲ୍ ହିଁ ହେବ । ସାକ୍ଷୀ ଭାବରେ ଜାଗିଗଲେ ସବୁ ସମସ୍ୟାଗୁଡ଼ିକର ସମାଧାନ ହୋଇଯାଇଥାଏ । ନ ଜାଗିବା ଯାଏ କୌଣସି ସମସ୍ୟାର ସମାଧାନ ହୁଏନାହିଁ ।

ଜ୍ଞାନୀ ପୁରୁଷ ତୁମ ଶରୀରର ସୁଖ-ଦୁଃଖ ଦେଖି ଟିକିଏ ହେଲେ ବି ପ୍ରଭାବିତ ହୁଅନ୍ତି ନାହିଁ ଏବଂ ଯିଏ ହୁଅନ୍ତି, ସିଏ ଜ୍ଞାନୀ ନୁହଁନ୍ତି । ଯେତେବେଳେ ବୁଦ୍ଧ ପୁରୁଷ ତୁମର ଦୁଃଖ ଦେଖି ତୁମ ପ୍ରତି ସହାନୁଭୂତି ଦେଖାଇଥାନ୍ତି, ତାହା ହେଉଛି ଏକ ନାଟକ, ସୌଜନ୍ୟତା ବଶତଃ ସେ କରୁଛନ୍ତି, ଯଦ୍ଦ୍ୱାରା ତୁମକୁ ଖରାପ ନଲାଗୁ, ପୀଡ଼ା ନହେଉ ଏବଂ ତୁମକୁ ବି ସେ ଜାଗ୍ରତ କରି ଚାଲିଥାନ୍ତି ଯେ ଛାଡ଼, ଏସବୁ ହେଉଛି ମାୟା, ଏବେ ଜାଗିଯାଅ । କେତେଦିନ ପର୍ଯ୍ୟନ୍ତ ଶୋଇ ରହିଥିବ ? କିନ୍ତୁ ଭିତରେ ଭିତରେ ସେ ହସୁଥାନ୍ତି, କାରଣ ମରିବା, ଜୀଇଁବା, ଜନ୍ମଦିବସ, ବିବାହ ଇତ୍ୟାଦି ଏସବୁ ହେଉଛି ମିଛ ମିଛିକା ଖେଳ ।

ଯିଏ ସାକ୍ଷୀ ହୋଇଗଲା ତାଙ୍କୁ ଦେଖାଯାଇଥାଏ ଯେ ମୋର କରିଥିବା କର୍ମ କିଛି ହେଉନାହିଁ, ମୁଁ ଅଯଥାରେ ଆଜି ପର୍ଯ୍ୟନ୍ତ କର୍ତ୍ତା ବନିଯାଇ ବୋଝ ବହି ଆସୁଥିଲି । ଜ୍ଞାନୀର ଅର୍ଥ ହେଉଛି ଯିଏ ନିଜ ତରଫରୁ କିଛି କରନ୍ତି ନାହିଁ । ତୁମେ ଜ୍ଞାନୀଙ୍କୁ କର୍ମଠ ବୋଲି କହିବ ନାହିଁ କି ଅଳସୁଆ ବୋଲି ବି କହିବ ନାହିଁ । ଜ୍ଞାନୀ ନିଜ ତରଫରୁ କିଛି ହୋଇନଥାନ୍ତି, ବନିଯାଇ ନଥାନ୍ତି । ଯାହା ପ୍ରକୃତି ଚାହିଁଥାଏ ସେ ତା'ଦ୍ୱାରା କରାଇ ଚାଲିଥାନ୍ତି ।

ଜ୍ଞାନୀ ହେଉଛନ୍ତି ତୀର୍ଥ । ଜ୍ଞାନୀଙ୍କ ଚତୁଃପାର୍ଶ୍ୱରେ ତୀର୍ଥର ସୁଗନ୍ଧ ଖେଳାଇ ହୋଇ ରହିଥାଏ, ସେଇଠି ଜୀବର ଅନ୍ତରାତ୍ମା ଶୁଦ୍ଧ ହୋଇଯାଇଥାଏ । ଭିତରେ ତାଙ୍କର ଜ୍ଞାନର ଗଙ୍ଗା ଅହର୍ନିଶ ବହି ଚାଲିଥାଏ । ମାତ୍ର ଚୈତନ୍ୟ ଜ୍ଞାନର ଗଙ୍ଗାରେ ତୁମର ଚୈତନ୍ୟ, ତୁମର ଆତ୍ମା ବି ସ୍ନାନ କରିନେବ ।

ଯଦି ତୁମେ ସଦ୍‌ଗୁରୁଙ୍କ ପାଖକୁ ଖାଲି ମନନେଇ ଆସିଛ, ତେବେ ଭରି ହୋଇ କରିଯିବ, ଯଦି ତୁମେ ଭରା ମନନେଇ ଆସିଥାଅ, ତେବେ ସେଇଠୁ ଖାଲି ହୋଇ ଫେରିଯିବ । ତୁମେ ଯେମିତି ଅହଂକାର, ଦମ୍ଭରେ ଭରି ହୋଇ ଆସିଥିଲ, ସେହିଭଳି ଅହଂକାରୀ ହୋଇ ଫେରଯିବ । ସାଧାରଣ ଲୋକମାନେ ଯେମିତି ରହିଥାନ୍ତି ସେଇଭଳି ତୁମେ ରୁହ । ତୁମେ ନାମ, ବେଶ, କେଶ, ତିଳକ, ମୁଣ୍ଡନାଦି ଦ୍ୱାରା ଅସାଧାରଣ ବନିଯାଇ, ଦେଖାଇହେବା ପାଇଁ ଚେଷ୍ଟା କର ନାହିଁ । ପରିବର୍ତ୍ତନ

ଆସିବାର ଅଛି ଭିତର ମନର ଧାରଣାରେ, ତୁମେ ଭିତରେ ସାକ୍ଷୀ ହୋଇଯାଅ । ପରମାତ୍ମା ଅସାଧାରଣ ନୁହଁନ୍ତି, ସିଏ ହେଉଛନ୍ତି ସାଧାରଣ ।

ଗୁରୁ ହେଉଛନ୍ତି ସିଏ, ଯିଏ ତୁମକୁ ଆତ୍ମନିର୍ଭର ବନାଇ ଦେବେ । ଯେଉଁ ଗୁରୁ ଆତ୍ମନିର୍ଭର କରାଇନଥାନ୍ତି, ସିଏ ଗୁରୁ ନୁହଁନ୍ତି । ଗୁରୁ ହେଉଛନ୍ତି ତୁମକୁ ତୁମ ଭିତରେ ପହୁଞ୍ଚାଇବାର ଦୁଆର । ଗୁରୁ ଯଦି ତାଙ୍କ ଭିତରେ ବାନ୍ଧିନେଉଥାନ୍ତି, ତେବେ ସିଏ ହେଉଛନ୍ତି ତୁମର ଶତ୍ରୁ, ଆତ୍ମ ହତ୍ୟାକାରୀ । ଯେମିତି ରାମକୃଷ୍ଣଙ୍କୁ, ସଦ୍‌ଗୁରୁ ତୋତାପୁରୀ କାଳୀଙ୍କ ଠାରୁ ହଟାଇନେଇ ଆତ୍ମାରେ ଯୋଡ଼ି ଦେଇଥିଲେ ।

ସଦ୍‌ଗୁରୁ କେବଳ ସ୍ମରଣ କରାଇଦେବା ବ୍ୟତୀତ ଆଉ କିଛି କରିନଥାନ୍ତି । ଯାହା ହେଉଛି ତୁମର, ତା' ବିଷୟରେ ହୋଶ୍ ଆଣି ଦେଇଥାନ୍ତି । ଯେଉଁ ମିଥ୍ୟାକୁ ମାନି ନେଇଥିଲ, ତା'ପ୍ରତି ଜାଗ୍ରତ କରାଇ ଦେଇଥାନ୍ତି । ବତାଇ ଦେଇଥାନ୍ତି ଯେ ଯାହାକୁ ତୁମେ ମାନି ନେଇଥିଲ, ସେ'ସବୁ ଭ୍ରମ ଥିଲା, ମିଛ ଥିଲା, ମାନ୍ୟତା ଥିଲା, ତୁମେ ଦଉଡ଼ିକୁ ସାପ ବୋଲି ମାନି ନେଇଥିଲ, ମୁଁ ଦୀପ ଦେଖାଇ ଭ୍ରମକୁ ଘଉଡ଼ାଇ ଦେଲି ।

ସଦ୍‌ଗୁରୁଙ୍କର ଏତିକି ମାତ୍ର ଅର୍ଥ ହେଉଛି ଯେ ସେ ତୁମକୁ ମେଣ୍ଢାପଲ ଭିତରୁ ବଳପୂର୍ବକ ଧରିଆଣି ବାହାରକୁ ନେଇଆସିବେ ଏବଂ ତୁମର ବାସ୍ତବ ସ୍ୱରୂପକୁ, ସ୍ୱଭାବକୁ ସ୍ମରଣ କରାଇପାରିବେ । ତୁମେ ନାରାଜ ହୋଇ କହିବ ଯେ – ଇଏ ହେଉଛି ମୋର ମନ୍ଦିର ଯିବାର, ତୀର୍ଥ ଯିବାର, ପୂଜା–ପାଠ କରିବାର ସମୟ, ମୋତେ ଏଇଠି ରହିବାକୁ ଦିଅ, ମୋର ବେଦାନ୍ତ ଜାଣିବା ଦରକାର ନାହିଁ । ମୁଁ ହେଉଛି ହିନ୍ଦୁ, ବ୍ରାହ୍ମଣ, ମୋର ନିତ୍ୟକର୍ମ ମୋତେ କରିବାକୁ ଦିଅ, ମୋତେ ମୋର ଧର୍ମରୁ ଭ୍ରଷ୍ଟ କରନାହିଁ । କିନ୍ତୁ ସଦ୍‌ଗୁରୁ ତୁମକୁ ବିଚାର ଦର୍ପଣ ଆଗରେ ହିଁ ଛିଡ଼ା କରାଇଦେବେ ଏବଂ ଦେଖାଇଦେବେ ଯେ ଯିଏ ରାମ, କୃଷ୍ଣ, ମହାବୀର, ଯୀଶୁ, ଗୁରୁ ଏବଂ ତୀର୍ଥ, ମନ୍ଦିର, ମୂର୍ତ୍ତି ଭିତରେ ଅଛନ୍ତି, ସେଇ ସଚ୍ଚିଦାନନ୍ଦ ହେଉଛ ତୁମେ । ତା'ପରେ ଗର୍ଜନ ବାହାରି ପଡ଼ିବ **ଅହଂ ବ୍ରହ୍ମାସ୍ମି, ମୁଁ ହିଁ ବ୍ରହ୍ମ** ।

ତୁମେ ମେଣ୍ଢା ନୁହଁ, ଭିଡ଼ ଭିତରେ ପଶିଯାଇଛ, ସେଥିପାଇଁ ସିଂହର ଶାବକ ହୋଇଥିଲେ ବି ନିଜକୁ ମେଣ୍ଢା ବୋଲି ମାନିନେଇ ବସିଯାଇଛ । ଯାହା ତୁମର ମା'ବାପା ଜାଣିଥିଲେ ସେଇ ଭୁଲ୍ ଜ୍ଞାନକୁ ତୁମକୁ ଶୁଆ ଭଳି ଶିଖାଇଦେଇ, ପଢାଇଦେଇ ମରିଗଲେ, ବର୍ତ୍ତମାନ ତୁମେ ତାକୁ ସାରା ଜୀବନ ଧରି ରାମ–ରାମ କରିଚାଲିଛ । ପ୍ରତିଦିନ ମନ୍ଦିର, ମାଳା, ପୂଜା,ପାଠ କରିଚାଲିଛ ।

କୁମ୍ଭ ମେଳାକୁ ଚାଲିଯାଉଛ । ସେଇଠି ତୁମ ଭଳି ଲକ୍ଷ ଲକ୍ଷ ମେଣ୍ଢା ମିଳିଯାଉଛନ୍ତି, ଯିଏ ତୁମର ଭ୍ରମ ଧାରଣାକୁ ଆହୁରି ମଜବୁତ୍ କରିବା ପାଇଁ ପ୍ଲାଷ୍ଟର ଭଳି କାମ କରୁଛନ୍ତି ।

ଟିକିଏ ଭାବ ! ସେଇ ଯେଉଁ ବୁଢ଼ା ସିଂହ, ଯିଏ ମେଣ୍ଢାଙ୍କ ଭିତରେ ହଜିଯାଇଥିଲା, ସିଏ ଜଙ୍ଗଲର ସିଂହକୁ କହିଲା ଯେ ମୋର ବି ତୁମ ଭଳି ସିଂହ ହେବାର ଅଛି । ସେଥିପାଇଁ କିଛି ସାଧନ ମନ୍ତ୍ର ବତାଇଦିଅ । ଏବଂ ସେଇ ଜଙ୍ଗଲରେ ରହୁଥିବା ସିଂହ ସେଇ ମେଣ୍ଢାପଲରେ ରହୁଥିବା ବୁଢା ସିଂହକୁ ନିଜର ଶିଷ୍ୟ ବନାଇ ତାକୁ ଆସନ, ପ୍ରାଣାୟାମ ଶିଖାଇ ଏବଂ 'ମୁଁ ହେଉଛି ସିଂହ' ଏଇ ଜପ କରିବାକୁ ବତାଇ ଦେଇଥାଏ ଏବଂ କହିଦିଏ ଯେ ଧୀରେ-ଧୀରେ ଚିନ୍ତନ ମନନ, ନିଦିଧ୍ୟାସନ କରିବା ଦ୍ୱାରା ତୁ ସିଂହ ହୋଇଯିବୁ । ଯଦି ଏହିଭଳି ଜଙ୍ଗଲୀ ସିଂହ କରୁଥାଏ, ତେବେ ଏହାକୁ ତା'ର ଚାଲାଖୀ ବୋଲି କୁହାଯିବ । ସେଇ ଜଙ୍ଗଲୀ ସିଂହର ତ କର୍ତ୍ତବ୍ୟ ହେଉଛି ଏୟା ଯେ ସେ ସେଇ ମେଣ୍ଢାପଲରେ ରହୁଥିବା ସିଂହକୁ ତା'ର ପ୍ରକୃତ ସିଂହ ସ୍ୱରୂପ ସମ୍ବନ୍ଧରେ ବୋଧ କରାଇଦେବ । ଏହିଭଳି ପ୍ରକୃତ, ସଚ୍ଚା ସଦ୍‌ଗୁରୁଙ୍କର ଏୟା ହେଉଛି କର୍ତ୍ତବ୍ୟ ଯେ, ସିଏ ଜିଜ୍ଞାସୁକୁ ଶିଷ୍ୟ ବନାଇ ମନ୍ତ୍ର, ମାଳା, ପୂଜା ପାଠ ଭିତରେ ରଖି ବାଟବଣା ନକରାନ୍ତୁ ବରଂ ତାଙ୍କୁ ନିଜର ଆତ୍ମସ୍ୱରୂପର ଦୃଢବୋଧ କରାଇ ଦିଅନ୍ତୁ ।

ଶିଷ୍ୟ ହେବାର ଉଦ୍ଦେଶ୍ୟ ହେଉଛି ଯେ ସେ ବର୍ତ୍ତମାନ ବଢ଼ାଇଦେବ ନିଜ ହାତକୁ ଗୁରୁଙ୍କ ହାତରେ, ଯୁଆଡ଼େ ସେ ନେଇଯିବେ ସିଆଡ଼େ ସେ ଚାଲିଯିବ । ଜୀବନ ଶୁଖିଲା ପତ୍ର ଭଳି ହୋଇଯାଉ । ନିଜର କୌଣସି ଆଗ୍ରହ ନ ରହୁ, ଯେଉଁଆଡ଼େ ପ୍ରାରବ୍ଧ ପବନ ଉଡ଼ାଇ ନେଉଅଛି ସେହିଆଡ଼କୁ ଚାଲିଯାଉ ।

କେତେବେଳେ ଯଦି କୌଣସି ଧୀର ପୁରୁଷକୁ ତୁମେ କ୍ରୋଧରେ ଥିବାର ଦେଖ, ନାରାଜ ଥିବାର ଦେଖ, ଉଶୃଙ୍ଖଳ ହେବାର ଦେଖ, ସେତେବେଳେ ସାବଧାନ ଭାବରେ ଦେଖ ଯେ ତା' ପଛ ଆଡ଼େ ବି ଗହନ ଶାନ୍ତି, ମୌନ, ପ୍ରେମ ହିଁ ରହିଥିବ । ଜ୍ଞାନୀ ପୁରୁଷ ଉଦାସ ହେଉଛନ୍ତି, କାନ୍ଦୁଛନ୍ତି, ଦୁଃଖୀ ହେଉଛନ୍ତି ତ ତାହା ନିଜ ପାଇଁ ନୁହେଁ, ଅନ୍ୟ ପାଇଁ ।

ସଦ୍‌ଗୁରୁଙ୍କ ଉଦ୍ଦେଶ୍ୟ ହେଉଛି ବ୍ୟକ୍ତି ନ ହୋଇ ଅବ୍ୟକ୍ତି ହୋଇଯିବା । ସଦ୍‌ଗୁରୁଙ୍କ ସହିତ ରାଗାତ୍ମକ ସମ୍ବନ୍ଧ ଯେପର୍ଯ୍ୟନ୍ତ ନ ହୋଇଛି, ସେପର୍ଯ୍ୟନ୍ତ ସଦ୍‌ଗୁରୁଙ୍କ ଠାରୁ ଦୂରତା ରହିଥିବ ଏବଂ ତୁମର ଜୀବନରେ ସତ୍ୟ ପ୍ରକଟ ହୋଇପାରିବ ନାହିଁ । ରାଗାତ୍ମକ ସମ୍ବନ୍ଧ ହେଲେ ଯାଇ କିଛି ହୋଇପାରିବ । ତୁମେ ସଦ୍‌ଗୁରୁଙ୍କ ପଛରେ ପ୍ରେମରେ ପଡ଼ିଗଲ, ତାଙ୍କ ପ୍ରେମରେ ପାଗଳ ହୋଇଗଲ, ତେବେଯାଇ କିଛି ହୋଇପାରିବ । ସଦ୍‌ଗୁରୁ ହୃଦୟରେ ବସିଯା'ନ୍ତୁ, ତାଙ୍କ ପାଇଁ

ମତୁଆଲା ହୋଇଯାଅ । ଏହା ହେଉଛି ଗୁରୁ ଶିଷ୍ୟଙ୍କ ପ୍ରେମ ସମ୍ବନ୍ଧ । ସଦ୍‌ଗୁରୁ ବ୍ୟକ୍ତି ନୁହଁନ୍ତି ସିଏ ପରମାତ୍ମା ହୋଇଗଲେ । ଅବ୍ୟକ୍ତି ହେବା ହିଁ ପରମାତ୍ମା ହୋଇଯିବା । ସିଏ ଶୂନ୍ୟ ହୋଇଗଲେ । ମନକୁ ସମର୍ପିତ କରିଦେଲେ ସଦ୍‌ଗୁରୁ ମିଳିଥାନ୍ତି । ସଦ୍‌ଗୁରୁ ତାଙ୍କ ଅସ୍ମିତାକୁ ପୋଛି ପକାଇଲେ, ସିଏ ତାଙ୍କ ଅହଂକାର ନଷ୍ଟ କରିଦେଲେ । ଯେତେବେଳେ ସଦ୍‌ଗୁରୁ ତୁମର ହାତ ଧରନ୍ତି, ସେତେବେଳେ ପରମାତ୍ମା ହିଁ ତୁମର ହାତ ଧରିଲେ ବୋଲି ଜାଣ । ତାଙ୍କର ସବୁ ବ୍ୟବହାରକୁ ପ୍ରସାଦ ବୋଲି ବୁଝି ତାକୁ ପ୍ରେମରେ ଗ୍ରହଣ କର ।

**ଆଚାର୍ଯ୍ୟୋ ମୃତ୍ୟୁଃ** । ଗୁରୁ ହେଉଛନ୍ତି ମୃତ୍ୟୁ । ଗୋଟିଏ ଜନ୍ମ ମାତା-ପିତାଙ୍କ ଦ୍ୱାରା ଶରୀରର ହୋଇଥିଲେ ଅନ୍ୟ ଜନ୍ମଟି ଗୁରୁଙ୍କ ଦ୍ୱାରା ଆତ୍ମଭାବର ହୋଇଥାଏ । ଯେମିତି ମାଆକୁ ପିଲାର ଜନ୍ମ ନେବା ସମୟରେ ବହୁତ ପୀଡ଼ା ହୋଇଥାଏ, ସେହିପରି ଗୁରୁଙ୍କୁ ଆତ୍ମଭାବରେ ଜନ୍ମ ଦେବା ପାଇଁ, ଜୀବକୁ ଅଜ୍ଞାନ ଗର୍ଭରୁ ବାହାରକୁ ବାହାର କରିବା ପାଇଁ ବଡ଼ କଷ୍ଟ ହୋଇଥାଏ ।

ଜ୍ଞାନୀମାନଙ୍କୁ ସେମାନଙ୍କ ଦ୍ୱାରା ହେଉଥିବା କର୍ମଗୁଡ଼ିକ ମାଧ୍ୟମରେ କେବେହେଲେ ତଉଲ ନାହିଁ । ଯଦି ଜ୍ଞାନୀଙ୍କୁ କର୍ମଗୁଡ଼ିକ ମାଧ୍ୟମରେ ଦେଖୁଥାଅ, ତେବେ ତୁମେ ଜ୍ଞାନୀକୁ କେବେହେଲେ ଚିହ୍ନିପାରିବ ନାହିଁ । ଜ୍ଞାନୀ କୃତ୍ୟ ଭିତରେ ହଜିଯାଇ ନଥାନ୍ତି, ଜ୍ଞାନୀ କର୍ମର ସେପାରିରେ, କର୍ତ୍ତା ଠାରୁ ଦୂରରେ, ସାକ୍ଷୀଭାବରେ ଅବସ୍ଥାନ କରିଥାନ୍ତି । ତାଙ୍କ ପାଇଁ କୃତ୍ୟର କୌଣସି ମୂଲ୍ୟ ନଥାଏ । ସେଥିପାଇଁ ଜ୍ଞାନୀଙ୍କ ହାତରେ ଖଣ୍ଡା ବି ମିଳିପାରେ । କୃଷ୍ଣ ମହାଭାରତ ଯୁଦ୍ଧ କରାଇଦେଲେ । କୃଷ୍ଣଙ୍କୁ କୃତ୍ୟ ମାଧ୍ୟମରେ ବିଚାର କରନାହିଁ । ବାସ୍ତବରେ ଯିଏ ନିଜକୁ ଦ୍ରଷ୍ଟା, ସାକ୍ଷୀ ରୂପରେ ଜାଣିନେଇ "ମୁଁ କର୍ତ୍ତା ନୁହେଁ" ଏଭଳି ଜାଣିନେଲେ, ସିଏ ହେଉଛନ୍ତି ଜ୍ଞାନୀ । ଜ୍ଞାନୀଙ୍କ ପାଇଁ କୌଣସି ପରିଭାଷା ତିଆରି କରିବା ସମ୍ଭବ ନୁହେଁ । ଜ୍ଞାନୀ ପ୍ରତ୍ୟେକ ସ୍ଥିତିର ବାହାରେ । ଯେପରି ଦୁର୍ବାସା ସବୁ ଖାଇଦେଲା ପରେ ବି ଉପବାସୀ ଥିଲେ ଏବଂ କୃଷ୍ଣ ଅଷ୍ଟ ପାଟବଂଶୀଙ୍କର ସ୍ୱାମୀ ଓ ପିଲାମାନଙ୍କର ପିତା ହୋଇଥିଲେ ବି ବ୍ରହ୍ମଚାରୀ ହୋଇ ରହିଥିଲେ ।

ସଦ୍‌ଗୁରୁ ଅନେକ ହୋଇନଥାନ୍ତି । ଭଗବାନଙ୍କୁ ପାଇବା ସହଜ ହୋଇଥାଏ କିନ୍ତୁ ସଦ୍‌ଗୁରୁଙ୍କୁ ପାଇବା ବହୁତ ଦୁର୍ଲଭ । ହଜାର ହଜାର ବର୍ଷ ବିତିଯାଇଥାଏ, ତା'ପରେ ଯାଇ କେହି ଜଣେ ସଦ୍‌ଗୁରୁ ମିଳିଯାନ୍ତି । ସଦ୍‌ଗୁରୁଙ୍କ ପାଖରେ ପହଞ୍ଚିବା ହିଁ ବଡ଼ ସୌଭାଗ୍ୟର କଥା । ସଦ୍‌ଗୁରୁ ମିଳିଛନ୍ତି ନା ନାହିଁ ଏହାର ଏକମାତ୍ର ପରିଚୟ ହେଉଛି ଯେ ସିଏ ତୁମକୁ ଯେପରି ବତାଇବେ, ସେପରି କଲେ, ମାନିନେଲେ ତୁମ ଭିତରେ ଥିବା ଅଶାନ୍ତି, ଭୟ, ଚିନ୍ତା, ଅହଂକାର, ମୋହ କମ୍ ହେଉଛି ନା ନାହିଁ । ସଦ୍‌ଗୁରୁ ସିଏ ନା ନୁହଁନ୍ତି ସେ ବିଷୟରେ ଚିନ୍ତା କରିବା ଛାଡ଼ । ଯାହା ସିଏ

କହୁଛନ୍ତି ତାକୁ କରୁଥାଅ । ଯଦି ସିଏ ସଦ୍‌ଗୁରୁ ହୋଇଥାନ୍ତି, ତେବେ ଯାହା କହିଛନ୍ତି, ତାକୁ କଲେ, ତୁମ ଭିତରେ କିଛି ହେବା ଆରମ୍ଭ ହୋଇଯିବ । ଯଦି ସେ ସଦ୍‌ଗୁରୁ ନୁହଁନ୍ତି, ତେବେ ତାଙ୍କ ଭିତରେ ଯେତେବେଳେ କିଛି ହେଲାନାହିଁ, ସେତେବେଳେ ତୁମ ଭିତରେ ବି ତାଙ୍କ କହିବା ଅନୁସାରେ କିପରି ହୋଇଯିବ ?

ସଦ୍‌ସଙ୍ଗର ଅର୍ଥ ହେଉଛି ଏୟା ଯେ କୌଣସି ଏଭଳି ବ୍ୟକ୍ତିଙ୍କ ପାଖରେ, ଯିଏ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଯାଇଛନ୍ତି, ତାଙ୍କ ପାଖରେ ବସିବା, ରହିବାର ବି ବହୁ ମୂଲ୍ୟ ଅଛି । ତାଙ୍କର ପବନକୁ ବି ପିଇଯାଅ, ଯାହା ତାଙ୍କ ଶ୍ୱାସରେ ହୃଦୟକୁ ଛୁଇଁ ବାହାରକୁ ଆସୁଛି, ସେଇ ଶ୍ୱାସଗୁଡ଼ିକୁ ନିଜ ଭିତରକୁ ନେଇଯାଅ, ତାହା ତୁମର ଚିତ୍ତଦଶାକୁ ବଦଳାଇ ଦେବ ।

ସଦ୍‌ଗୁରୁ ମିଳିଗଲା ପରେ ତୁମେ ସେୟା ହୋଇ ରହିପାରିବ ନାହିଁ । ବର୍ତ୍ତମାନ ତୁମକୁ ସମ୍ପୂର୍ଣ୍ଣ ଦ୍ୱିଜ ହେବାକୁ ହିଁ ପଡ଼ିବ । ନୂଆ ହେବାକୁ ପଡ଼ିବ । ଜିଭ ଯେପରି ବସ୍ତୁର ସ୍ୱାଦକୁ ତତ୍‌କ୍ଷଣାତ୍ ଜାଣିନେଇଥାଏ, ସେହିପରି ଅଧିକାରୀ ଶ୍ରଦ୍ଧାଳୁ ତତ୍‌କ୍ଷଣାତ୍ ଧର୍ମକୁ, ଆତ୍ମାକୁ ଜାଣିନେଇଥାଏ । ନିଜର ହରାଇ ସାରିଥିବା ସ୍ୱରୂପର ସ୍ମୃତି ଶୀଘ୍ର ଆସିଯାଇଥାଏ ଯେ ମୁଁ ଏଇ ଶରୀର ନୁହେଁ ବରଂ ମୁଁ ହେଉଛି ଦ୍ରଷ୍ଟା, ଆତ୍ମା । ଯେମିତି କେହି ନିଜର ଚେହେରାକୁ ଦେଖି ନଥାଉ କିନ୍ତୁ ଯଦି ଅଚାନକ ସିଏ ଦର୍ପଣ ଆଗକୁ ଆସିଯାଏ, ତେବେ ସିଏ ତତ୍‌କ୍ଷଣାତ୍ ନିଜ ଚେହେରାକୁ ଦେଖି ନେଇଥାଏ । ସେହିଭଳି ଗୁରୁଙ୍କ ନିକଟତା ଯୋଗୁ ଶିଷ୍ୟର ଜୀବନରେ କ୍ରାନ୍ତି ଘଟିଯାଇଥାଏ ।

ସଦ୍‌ଗୁରୁଙ୍କ ପାଖରେ ତ ଲୋକ ପହଞ୍ଚି ଯାଇଥାନ୍ତି କିନ୍ତୁ ସେଇଭଳି ଖାଲି ଖାଲି ଫେରିଆସିଥାନ୍ତି ଯେପରି ତାଙ୍କ ଜୀବନରେ କିଛି ହିଁ ହୋଇନାହିଁ । କରେଇରେ ଚଟୁ ଚାଲିଥାଏ, ତଦ୍ୱାରା ତରକାରୀ, କ୍ଷୀର, ଡାଲି, ମିଠା ଇତ୍ୟାଦି ତିଆରି ହୋଇଥାଏ କିନ୍ତୁ ସେଇ କରେଇ, ଚଟୁ ଦୁହିଁଙ୍କୁ କିଛି ସ୍ୱାଦ ମିଳିନଥାଏ । ସେହିପରି ଯାହାଙ୍କର ବୁଦ୍ଧି ଅହଂକାର ଯୋଗୁ ପଥୁରିଆ ହୋଇଯାଇଛି, ଜଡ଼ ହୋଇଯାଇଛି, ତାଙ୍କୁ ସଦ୍‌ଗୁରୁଙ୍କ ଦ୍ୱାରା ଅମୃତ ପାନ କରାଇ ଦିଆଗଲେ ବି ତାଙ୍କ ଉପରେ କିଛି ପ୍ରଭାବ ପଡ଼ିନଥାଏ ।

ଯେତେବେଳେ ବି ପରମାତ୍ମାଙ୍କୁ ପାଇବାର ଇଚ୍ଛା ଜାଗ୍ରତ ହେଉଛି ସେତେବେଳେ ସଦ୍‌ଗୁରୁଙ୍କ ପାଖକୁ ଖୁବ୍ ଶୀଘ୍ର ଚାଲିଯାଅ । ଗୋଟିଏ ମୁହୂର୍ତ୍ତ ପାଇଁ ବି ଡେରି କରନାହିଁ । ପୂଜା, ଆରତୀ, ଭୋଗ, ରାଗ, ଦୀପ, ଚନ୍ଦନ ଯାହା କିଛି କରୁଥିଲ, ସେସବୁକୁ ସେମିତି ଛାଡ଼ିଦେଇ ବାହାରିପଡ଼ । ଯେମିତି ଘରେ ନିଆଁ ଲାଗିଗଲେ ତୁମେ ଅନ୍ୟର ଚିନ୍ତା ନକରି, ଶୁଭ, ଅଶୁଭ,

ସମୟ, ମୁହୂର୍ତ୍ତ ନପଚାରି, ଦର୍ପଣ ଆଗରେ ନିଜକୁ ସଜାସଜି ନକରି, ବାଥରୁମ୍‌ରେ ନଗ୍ନ ହୋଇଥିଲେ ବି ସେମିତି ବିନା ଲୁଗାରେ ବାହାରକୁ ଦୌଡ଼ି ପଳାଇଥାଅ ।

ସଦ୍‌ଗୁରୁଙ୍କ ସହିତ ବର୍ତ୍ତମାନ ହିଁ ସତ୍‌ସଙ୍ଗ ହୋଇପାରେ । ଅତୀତର ଗୁରୁ କାମରେ ଆସିବେ ନାହିଁ । ଭୂତପୂର୍ବ ଗୁରୁ କାମରେ ଲାଗିବେ ନାହିଁ । ଯିଏ ବର୍ତ୍ତମାନ ଅଛନ୍ତି, ଯିଏ ଏଇଠି ଅଛନ୍ତି, ଯିଏ ଅଛନ୍ତି, ସିଏ ହିଁ କାମରେ ଆସି ପାରନ୍ତି । ମୁହୂର୍ତ୍ତକ ପାଇଁ ବି ତାଙ୍କୁ ପୂଜା କରିନେଲ ତ ତାହା କୋଟି କୋଟି ବର୍ଷର ପୂଜା ଠାରୁ ଶ୍ରେଷ୍ଠ ହୋଇଗଲା । ତାଙ୍କରି ପୂଜାରେ ନଇଁଯାଇ ତୁମେ ନିଜକୁ ହରାଇ ଦେଲ । ନିଜକୁ ଯେ ହରାଇଦେବାକୁ ରାଜିହୁଏ, ତାକୁ ଉତ୍ତମ ଶିଷ୍ୟ, ପ୍ରକୃତ ସନ୍ୟାସୀ ବୋଲି ଜାଣିନିଅ । ସିଏ ହେଉଛି ପ୍ରକୃତ ଭିକ୍ଷୁ, ଯିଏ ନିଜର ସମ୍ପୂର୍ଣ୍ଣ ସମ୍ପଦ, ଅହଂକାର, ଉପାଧିଗୁଡ଼ିକୁ ତ୍ୟାଗ କରିଦେଇଥାନ୍ତି । ଅନ୍ୟମାନଙ୍କ ଠାରୁ ନିଜ ସମ୍ବନ୍ଧରେ ଆଜିପର୍ଯ୍ୟନ୍ତ ଯାହା କିଛି ଶୁଣିଛ, ତାକୁ ତୁମେ ଭୁଲାଇଦେଲେ, ତେବେ ଯାଇ ତୁମେ ନିଜର ସାକ୍ଷାତ୍‌କାର କରିପାରିବ, ସିଧା-ସଳଖ ନିଜର ମୁହାଁମୁହିଁ ହୋଇପାରିବ ।

ଜ୍ଞାନୀ ଜ୍ଞାନ ଭିତରେ ଜୀଇଁଥାନ୍ତି, କର୍ମରେ ନୁହେଁ । ଅଜ୍ଞାନୀ ଅଜ୍ଞାନରେ ଜୀଇଁଥାଏ, ଜ୍ଞାନରେ ନୁହେଁ । ଯିଏ ତୁମକୁ କହିଥାଏ ସଂସାର ଭିତରକୁ ଯିବାରେ ବିପଦ ଅଛି, ଯିବ ଯଦି ଛନ୍ଦି ହେଇଯିବ, ଏଇଭଳି ଯେଉଁମାନେ କହିଥାନ୍ତି, ସେମାନଙ୍କର ଡରଥାଏ ଯେ ସେଇଠି ତାଙ୍କୁ ଯଦି ତୃପ୍ତି ମିଳିଯାଏ ତେବେ ପୁଣି ସେ ମୋକ୍ଷର ଇଚ୍ଛା ଛାଡ଼ିଦେବେ । ଯେମିତି ପୃଥିବୀ ଓ ଆକାଶର ମିଳନ କେବେହେଲେ ସମ୍ଭବ ନୁହେଁ, ସେହିପରି ସଂସାରରେ କାହାକୁ କେବେହେଲେ ତୃପ୍ତି ମିଳିବା ସମ୍ଭବ ନୁହେଁ ।

ସନ୍ଥଙ୍କ ଦ୍ୱାରା ଯେଉଁ ନିନ୍ଦା ଓ ଆଲୋଚନା ହେଉଥିଲା ଭଳି ଅଜ୍ଞାନୀକୁ ଜଣା ପଡ଼ିଥାଏ, ଜ୍ଞାନ ଦୃଷ୍ଟିରୁ ତାକୁ କରୁଣା ବୋଲି ଜାଣ । ତୁମେ ହୁଏତ ବାଟବଣା ହୋଇ ଶ୍ରେଷ୍ଠକୁ ତ୍ୟାଗ କରି ନିକୃଷ୍ଟକୁ ବାଛିନେବ, ସେଥିପାଇଁ ଅସତ୍ୟର ନିନ୍ଦା କରିବାକୁ ପଡ଼ିଥାଏ । କ'ଣ ସଦ୍‌ଗୁରୁଙ୍କୁ ନିନ୍ଦା କରିବା ଉଚିତ୍ ? ଏହିଭଳି ସଦ୍‌ଗୁରୁଙ୍କ ପ୍ରତି ଆରୋପ କରୁଥିବା ବ୍ୟକ୍ତିଙ୍କୁ ଯଦି ପଚରାଯାଏ ଯେ କ'ଣ ଅସତ୍ୟର ବିନା ନିନ୍ଦା, ଆଲୋଚନା କରି କେହି କେବେ ସଦ୍‌ଗୁରୁ ହୋଇଛନ୍ତି ? ଯିଏ ସତ୍ୟର ପ୍ରତିପାଦନ ପାଇଁ ଅସତ୍ୟର ସମାଲୋଚନା କରି ନାହାନ୍ତି, ତାଙ୍କୁ ସନ୍ଥ ନୁହେଁ, ରାଜନେତା ବୋଲି ବୁଝିବା ଉଚିତ୍ । ପୃଥିବୀ ପୃଷ୍ଠରେ ୩୦୦ ଧର୍ମ ଅଛି, ଯଦି ସେମାନଙ୍କ ଭିତରେ ସମନ୍ୱୟ ରକ୍ଷାକରି ଚାଲୁଥିବ କେବେ ବି ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବ ନାହିଁ । ଚାରିଛକରେ ହିଁ ଘୂରି ଘୂରି ଛିଡ଼ା ହୋଇ ହୋଇଥିବ । ପାଣି ପାଇବା ପାଇଁ ପ୍ରତ୍ୟେକ ଦିନ ପାଞ୍ଚଫୁଟ ନୂଆ ଗାତ ଖୋଳି ଚାଲିଥିଲେ ତ

ଶୋଷରେ ମରିବାକୁ ହେବ । ଗୋଟିଏ ଜାଗାରେ ଯଦି ୧୦ଦିନ ଧରି ଖୋଳିଚାଲିବ, ତେବେ ପାଣି ବାହାରିପଡ଼ିବ ।

ସଦ୍‌ଗୁରୁଙ୍କ ଅର୍ଥ ହେଲା ବର୍ତ୍ତମାନ ତୁମେ ହଜିଗଲ, ଏବେ ସିଏ ବଞ୍ଚି ରହିଲେ । କାହାଠାରୁ ତୁମେ ନିଜ ଗୁରୁଙ୍କ ନିନ୍ଦା ଶୁଣିନେଲ ଏବଂ ତୁମର ଗୁରୁଙ୍କ ପ୍ରତି ଥିବା ଶ୍ରଦ୍ଧା ଟଳମଟଳ ହୋଇଗଲା, ତେବେ ବୁଝିବା ଉଚିତ୍ ଯେ ତୁମେ ବର୍ତ୍ତମାନ ତାଙ୍କୁ ସମର୍ପଣ କରିନାହଁ, ନିଜର ହୃଦୟ ତାଙ୍କୁ ଅର୍ପଣ କରିନାହଁ । ନିନ୍ଦା ଶୁଣିଲା ପରେ ଯଦି ଗୁରୁଙ୍କ ଉପରେ ଶ୍ରଦ୍ଧା ତିଷ୍ଠି ରହିଥାଏ, ତେବେ ଜାଣିବ ଯେ ପୂର୍ଣ୍ଣ ସମର୍ପଣ ହୋଇଛି ।

ଜ୍ଞାନୀ ସହଜ ହୋଇଥାନ୍ତି । କାହାକୁ ଭଲ ଲାଗିଲା ତ ଠିକ୍, ନ ଲାଗିଲା ବି ଠିକ୍ । ତୁମରି ପାଇଁ ଜ୍ଞାନୀ ନିଜକୁ କୌଣସି ଢାଞ୍ଚାରେ ଢାଳନ୍ତି ନାହିଁ । ତୁମରି ଅପେକ୍ଷା ଅନୁସାରେ ନିଜକୁ ଚଳାଇ ନଥାନ୍ତି । ସିଏ ତାଙ୍କର ମନ ଅନୁସାରେ ଚାଲିଥାନ୍ତି । ପ୍ରାରବ୍ଧ ଅନୁସାରେ ଯେପରି ନିଶ୍ଚିତ ହୋଇଛି, ସେହିପରି ବ୍ୟବହାର କରିଥାନ୍ତି ।

ଯେତେବେଳେ ତୁମ ପାଖରେ ସବୁ ଥିବ ଏବଂ ଖାଲି ଖାଲି ଲାଗୁଥିବ, ବୁଦ୍ଧିଥିବ କିନ୍ତୁ ବୁଦ୍ଧୁ ଭଳି ଲାଗୁଥିବ, ଶକ୍ତି ଥିବ କିନ୍ତୁ ନିର୍ବଳ ଲାଗୁଥିବ, ଧନ ଥିବ୍ କିନ୍ତୁ ନିର୍ଦ୍ଧନ ଭଳି ଲାଗୁଥିବ, ସେତେବେଳେ ସଦ୍‌ଗୁରୁଙ୍କ ପାଖକୁ ଯିବ, ସଦ୍‌ଗୁରୁଙ୍କ ଖୋଜିବ ।

ସଦ୍‌ଗୁରୁଙ୍କୁ ଯେତେବେଳେ ଶୁଣୁଛ ସେତେବେଳେ ଏମିତି ଶୁଣ, ଯେମିତି ସାରା ଶରୀର ହେଉଛି ଗୋଟିଏ କାନ । ସମ୍ପୂର୍ଣ୍ଣ ଭାବରେ ଗୁରୁଙ୍କ ଅମୃତ ବଚନଗୁଡ଼ିକୁ ପିଇଯାଅ, ଯେପରି ତୃଷାର୍ତ୍ତ ବ୍ୟକ୍ତି ପାଣି ପିଇଯାଇଥାଏ । ହୃଦୟ ଖୋଲି କରି ଶୁଣ ଗୁରୁଙ୍କ ସମ୍ପୂର୍ଣ୍ଣ ବଚନଗୁଡ଼ିକୁ, ପିଇଗଲା ପରେ ଘଟଣା ଘଟିଯିବ ।

ଜୀବିତ ଗୁରୁଙ୍କ ପୂଜା କରିବା ବଡ଼ କଠିନ, କାରଣ ସିଏ ତୁମକୁ ପ୍ରତିଦିନ ତୁମ ଭିତରର ଅହଂକାର ପଥରକୁ ନଷ୍ଟ କରି ମୁକ୍ତ କରିଦେଲା ପରେ ହିଁ ଛାଡ଼ିବେ । ସେଥିପାଇଁ ମୃତଗୁରୁଙ୍କୁ ପୂଜା କରିବା ସହଜ କାରଣ ସିଏ ତୁମ ଭିତରେ କୌଣସି ପ୍ରକାରର ପରିବର୍ତ୍ତନ କରିପାରିବେ ନାହିଁ । ତୁମେ ହିଁ ତୁମର ମନମାନୀ କରି ଚାଲିଥିବ ।

ଲୋକେ ସନ୍ଥମାନଙ୍କ ପାଖକୁ ହିଁ ଯାଆନ୍ତି ନାହିଁ । ମନ୍ଦିରରେ, ତୀର୍ଥରେ ଲକ୍ଷ ଲକ୍ଷ ଲୋକ ପହଞ୍ଚିଯାନ୍ତି । ଯଦି ବି ଲୋକ ଯାଉଥାନ୍ତି ତେବେ ଏଭଳି ସନ୍ଥ ପାଖକୁ ଯାଆନ୍ତି, ଯିଏ ତାଙ୍କ ଆଖି ଉପରେ ଅଜ୍ଞାନର ପଟି ବାନ୍ଧିଦିଅନ୍ତି, ହାତରେ କର୍ମକାଣ୍ଡର ଜଞ୍ଜିର ବାନ୍ଧି ଦିଅନ୍ତି, ତାଙ୍କ ଘା'

ଉପରେ, କ୍ୟାନ୍‌ସର ଉପରେ, କ୍ଷତ ସ୍ଥାନ ଉପରେ ସୁଗନ୍ଧ ଛିଟିକାଇ, ପଟି ବାନ୍ଧି, ସୁନ୍ଦର ପ୍ରଶଂସାର ଫୁଲମାଳା ପିନ୍ଧାଇ ଦିଅନ୍ତି ।

ତୁମେ ଗୁରୁ ବା ପରମାତ୍ମାଙ୍କର କେତେ ସୁନ୍ଦର ଢଙ୍ଗରେ ସ୍ତୁତି କରୁଛ କରୁଥାଅ, ପ୍ରାର୍ଥନା କରୁଥାଅ, ଗୀତ ଗାଉଥାଅ, ନାଚୁଥାଅ ଏହାଦ୍ୱାରା କିଛି ହେବନାହିଁ । ତୁମେ ନିଜ ଭିତରକୁ କେବେ ଫେରିବ ? ସ୍ତୁତି କରି ସମୟ ନଷ୍ଟ କରନାହିଁ । ବହୁତ ସ୍ତୁତି କରିଛ, ମନ୍ଦିର, ମସ୍‌ଜିଦ୍ ଯାଇଛ, ପ୍ରାର୍ଥନା, ପୂଜା କରିସାରିଛ । କ'ଣ ପାଇଲ ? ହାତ ଯେମିତି ଖାଲି କି ସେମିତି ଖାଲି । ବର୍ତ୍ତମାନ ତୁମ ଭିତରେ ଥିବା ମନ୍ଦିର ଭିତରକୁ ଯାଅ, ସେଇଠି ଅନାହତ ନାଦକୁ ଜଗାଅ । ଅସଲି ମନ୍ଦିରର ଘଣ୍ଟନାଦ ଶୁଣ, ଯିଏ ତୁମରି ଭିତରେ ଶୋଇଯାଇଛି ତାକୁ ଉଠାଅ । ନିଜର ଅନୁସନ୍ଧାନ କର – **'ମୁଁ କିଏ'** ? ସ୍ୱୟଂକୁ ଜାଣିନେଲେ ଯାଇ ପରମାତ୍ମାଙ୍କୁ ଜାଣିପାରିବ, କାରଣ ପରମାତ୍ମା ହେଉଛନ୍ତି ତୁମର ସ୍ୱଭାବ । ତୁମକୁ ହେବାର ଅଛି, ତୁମର ଅସ୍ତିତ୍ୱ ଅଛି । ତୁମେ କାହାର ବି ସାହାରା ନେଲେ ବାଟବଣା ହେବ । ସିଏ ଦିନେ ନା ଦିନେ ଚାଲିଯିବ । ଗୁରୁ ହେଉଛନ୍ତି ସିଏ, ଯିଏ ଜିଜ୍ଞାସୁକୁ ସବୁ ଦିଗରୁ ହଟାଇ ନେଇ ସ୍ୱୟଂ ଉପରକୁ ଫେରାଇ ଆଣନ୍ତି । ଗୁରୁ, ପରମାତ୍ମାଙ୍କ ଭିତରକୁ, ନିଜ ଭିତରକୁ ପ୍ରବେଶ କରିବାର ଦୁଆର ହୋଇଥାନ୍ତି, ପାଚେରୀ ହୁଅନ୍ତି ନାହିଁ, ସିଏ ନିଜ ଭିତରେ ଅଟକି ରହନ୍ତି ନାହିଁ ।

ମୁଁ ତୁମକୁ ମୋ ନିଜ ପାଖରେ ଅଟକାଇ ରଖିବାକୁ, ବାନ୍ଧିଦେବାକୁ ଚାହେଁନା । ମୋ' ଭିତର ଦେଇ, ମୋତେ ଦୁଆର ବନାଇ, ଖୋଲା ଆକାଶରେ ବାହାରକୁ ଆସିଯିବା ପାଇଁ ମୁଁ ତୁମକୁ ନିମନ୍ତ୍ରଣ ଦେଉଛି । ମୁଁ ପାଚେରୀ ହୋଇଯାଇ ଅଟକାଇ ରଖିବାକୁ ଚାହୁଁନାହିଁ । ତୁମେ ତ ପହଞ୍ଚିଯିବା ଉପରେ ।

ମୁଁ ତୁମର ସବୁ ବନ୍ଧନକୁ ଭାଙ୍ଗି ଦେଉଛି । ମୋ ସାଥୀରେ ତ ବହୁତ ସାହସଥିବା ଲୋକ ହିଁ ଚାଲିପାରିବେ । ଯଦି ଦୁର୍ବଳ ଅଛ ତେବେ କୌଣସି ମାନ୍ୟତାର, ଅନ୍ଧବିଶ୍ୱାସର କାରାଗାର ଭିତରେ ଯାଇ ରୁହ । ମୋ' ପାଖକୁ ସିଏ ଆସିପାରେ, ଯିଏ ସମସ୍ତ ମାନ୍ୟତାରେ ନିଆଁ ଲଗାଇପାରେ ।

**'ଜୋ ଘର ଫୂଙ୍କେ ଆପନା, ଚଲେ ହମାରେ ସାଥ'** –କବୀର ।

ଯେତେବେଳେ ବି ସତ୍ୟ କୌଣସି ମହାପୁରୁଷଙ୍କ ଦ୍ୱାରା ପ୍ରକଟ ହେବ, ସେତେବେଳେ ସିଏ ମହାକ୍ରାନ୍ତିକାରୀ ହେବ, ବିଦ୍ରୋହୀ ହେବ, ଗଣ୍ଡଗୋଳ ସୃଷ୍ଟିକାରୀ ହେବ । କାରଣ ତୁମେ ଅସତ୍ ଭିତରେ ବଞ୍ଚିବାର ଅଭ୍ୟାସ କରିସାରିଛ । ସିଏ ଯେତେବେଳେ ବି ଆସିବ, ସେତେବେଳେ

ତୁମର ବିଚାରଗୁଡ଼ିକ ମୃତଧର୍ମର ଶବ, ମାନ୍ୟତାଗୁଡ଼ିକ, ଅନ୍ଧବିଶ୍ୱାସ ମଧ୍ୟରେ ତିକ୍ତତା ସୃଷ୍ଟି ହେବ, ସେତେବେଳେ ସେଇ ସତ୍ୟ ତୁମକୁ ସେଇଠୁ ଉଠେଇନେଇ, ଆଗରେ ଥିବା ଶିଖରୀ ଉପରେ ପହଞ୍ଚାଇଦେବ । ସଂସ୍କାର, ସଂସ୍କୃତି, ସଭ୍ୟତା, ଧର୍ମ ପୁରାତନର ଯେଉଁ ଘର ଅଛି, ତାକୁ ଜଳାଇଦେବ । ଏକ ନୂତନ ଅମୃତ ଜୀବନ ପ୍ରଦାନ କରିବ ।

ହେ ଆତ୍ମନ୍ ! ପରମାତ୍ମା ଓ ଜିଜ୍ଞାସୁ ମଧ୍ୟରେ ଗୁରୁ ହେଉଛନ୍ତି ଆବଶ୍ୟକ ସେତୁ । କିନ୍ତୁ ଯଦି ସିଏ ପରମାତ୍ମା ଓ ତୁମ ଭିତରେ ପାଚେରୀ ହୋଇଯାନ୍ତି, ତେବେ ଏହା ବି ହେଉଛି ବଡ଼ ଦୁର୍ଭାଗ୍ୟପୂର୍ଣ୍ଣ, କାରଣ ଏହା ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ବାଧା ସୃଷ୍ଟି କରୁଛି ।

ଗୁରୁଙ୍କ ସେତୁ ବନାଇଦିଅ, ଗୁରୁଙ୍କ ନୌକା ବନାଇ ନିଅ, ଗୁରୁଙ୍କ ସିଢ଼ୀ ବନାଇ ଦିଅ, ତେବେ ଯାଇ ସିଏ ପରମାତ୍ମାଙ୍କ ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ସହାୟକ ହେବେ । ଗୁରୁଙ୍କ ଠାରୁ ଆଗକୁ ବଢ଼ି ଚାଲିଗଲ ଯଦି ତେବେ ଅନ୍ତିମ ଲକ୍ଷ୍ୟ ହେଉଛି ପରମାତ୍ମା ଏବଂ ଗୁରୁଙ୍କ ଠାରେ ଅଟକିଗଲ ଯଦି ତାହା ହେଉଛି ସଂସାର । ଯେମିତି ମୀରାଙ୍କ ପାଇଁ କୃଷ୍ଣ, ରାମକୃଷ୍ଣଙ୍କ ପାଇଁ କାଳୀ, ଅନ୍ତିମ ବାଧା ହୋଇ ଛିଡ଼ା ହୋଇଥିଲେ । ଗୁରୁ ଯେମିତି ଶେଷ ବାଧାକୁ ହଟାଇଦେଲେ, ସେମିତି ସେମାନେ ପରମାତ୍ମାଙ୍କ ସହିତ ଏକତ୍ୱକୁ ପ୍ରାପ୍ତ ହୋଇଗଲେ । ତା'ପରେ ଗୁରୁ ହଟି ଯାଇଥାନ୍ତି । ଅସତ ଗୁରୁ ହେଉଛନ୍ତି ସିଏ, ଯେ ତୁମେ ଓ ପରମାତ୍ମାଙ୍କ ମଝିରେ ପ୍ରତିବନ୍ଧକ ହୋଇ ଛିଡ଼ା ହୋଇଯାନ୍ତି । ଏଇ ପ୍ରତିବନ୍ଧକ ଗୁରୁଙ୍କ ତରଫରୁ ଛିଡ଼ା ହେଉ, ବା ଜିଜ୍ଞାସୁ ତରଫରୁ ହେଉ ସେଇ ଏକା କଥା ।

ଗୁରୁ ପ୍ରଥମେ ଶିଷ୍ୟକୁ ସଂସାରରୁ ଟାଣିନେଇ, ନିଜ ଆଡ଼କୁ ଆକର୍ଷିତ କରିଥାନ୍ତି । ପୁନଶ୍ଚ ନିଜ ପାଖରୁ ହଟାଇଦେଇ ପରମାତ୍ମାଙ୍କ ଆଡ଼କୁ ଠେଲି ଦେଇଥାନ୍ତି ଯେ ପ୍ରଥମେ ସଂସାରରୁ ହଟିଯାଇ ମୋତେ ପ୍ରେମ କଲ, ଏହା ଭଲ କଥା କିନ୍ତୁ ବର୍ତ୍ତମାନ ମୋ'ପାଖରୁ ବି ହଟିଯାଇ, ପରମାତ୍ମାଙ୍କ ସହିତ ଲାଖିଯାଅ, ଏହା ହେଉଛି ସର୍ବୋତ୍ତମ କଥା ।

ମାଆ ପିଲାକୁ ପ୍ରଥମେ ତା' ହାତର ସାହାରା ଦେଇଥାଏ ଏବଂ ପରେ ପରେ ଧୀରେ ଧୀରେ ଛାଡ଼ିଦେଇ ଚାଲିଥାଏ, ଯଦ୍ୱାରା ଦିନେ ସିଏ ନିଜ ପାଦରେ, ନିଜ ସହାୟତାରେ ଚାଲିପାରିବ । ଯଦି ମାଆ ନଛାଡ଼ିବ ତେବେ ପିଲାର ଜୀବନ ପଙ୍ଗୁ ପାଲଟିଯିବ । ଗୁରୁ ବି ମଝିରେ ମଝିରେ ଶିଷ୍ୟକୁ ନିଜ ବ୍ୟବହାର ଦ୍ୱାରା ତଥା ବଚନ ଦ୍ୱାରା ଧକ୍କା ଦେଇଥାନ୍ତି, ତଦ୍ୱାରା ଦିନେ ସିଏ ଗୁରୁଙ୍କୁ ଛାଡ଼ିବାରେ ସମର୍ଥ ହୋଇପାରିବ । ଯେମିତି କୁମ୍ଭାର ଗୋଟିଏ ହାଣ୍ଡିକୁ ଭିତର

ହାତରେ ସାହାରା ଦେଇଥାଏ ତଥା ଅନ୍ୟ ହାତରେ କରଣୀର ଚୋଟ ମାରିମାରି ତା' କୁରୂପତାକୁ ଦୂର କରି ସୁନ୍ଦର, ସୁଢ଼ୋଲ ବନାଇଥାଏ, ସେହିପରି ସଦ୍‌ଗୁରୁ ଶିଷ୍ୟର କଲ୍ୟାଣ କରିଥାନ୍ତି ।

ଶିଷ୍ୟ, ଗୁରୁଙ୍କ କରୁଣା, ଉଦାରତା, ପ୍ରେମ, ଦୟାକୁ ବୁଝିପାରିବ ନାହିଁ । ସିଏ ତ ଅଭିଯୋଗ କରିବ ଯେ ଗୁରୁ ନୂଆ ନୂଆ ଲୋକଙ୍କ ପ୍ରତି ପ୍ରେମ କରୁଛନ୍ତି ଏବଂ ପୁରୁଣା, ବୁଢ଼ାମାନଙ୍କୁ ତିରସ୍କାର କରୁଛନ୍ତି । ଯଦି ତିରସ୍କାର କରିବାର ଥିଲା, ନିଜ ଠାରୁ ଦୂରେଇ ଦେବାର ଥିଲା, ତେବେ ପ୍ରଥମେ ଆମକୁ ଭଲ ପାଉଥିଲେ କାହିଁକି ? ମାତ୍ର ଶିଷ୍ୟ ଏୟା ବୁଝେନାହିଁ ଯେ ଗୁରୁଙ୍କ ତରଫରୁ ଯଦି ପ୍ରଥମେ ପ୍ରେମ ମିଳିନଥାନ୍ତା, ତେବେ ସିଏ ସଂସାର ପଙ୍କରୁ କେବେହେଲେ ବାହାରି ପାରିନଥାନ୍ତା, ସେଇଥିରେ ପଡ଼ି ଦୁଃଖ ପାଇ ଚାଲିଥାନ୍ତା ।

**ଆଗ ଲଗୀ ଆକାଶ ମେଁ, ଝର ଝର ପଡ଼େ ଅଙ୍ଗାର ।**
**ସନ୍ତ ନ ହୋତେ ଜଗତ ମେଁ, ତୋ ଜଲ ମରତା ସଂସାର ।। –କବୀର**

ହେ ଆତ୍ମନ୍ ! ସାଧାରଣତଃ ସାଧକ ବିଭୂତି, ଚମତ୍କାରିତା, ଧ୍ୟାନ, ଜ୍ୟୋତି, ଅବତାର ଏବଂ ଗୁରୁଙ୍କ ପ୍ରତି ଏତେ ପରିମାଣରେ ଆସକ୍ତ ହୋଇଯାଏ ଯେ ସେ ଭୁଲିଯାଏ ଆମକୁ ବର୍ତ୍ତମାନ ଆଉ ଗୋଟିଏ ପାଦ ଆଗକୁ ବଢିବାର ଅଛି । ଗୁରୁ, ଜ୍ୟୋତି, ବିଭୂତି ଇତ୍ୟାଦି ପରମାତ୍ମାଙ୍କ ଆଡ଼କୁ ଯିବା ପାଇଁ ମାଇଲ ଷ୍ଟୋନ୍ ତ ହୋଇଥାନ୍ତି, ମାତ୍ର ସେମାନେ ଲକ୍ଷ୍ୟ ନୁହଁନ୍ତି । ସିଢ଼ୀ, ସେତୁ ତଥା ମାର୍ଗ ଉପରେ ଘର ତିଆରି କରିନେବା ହିଁ ମୂଢ଼ତା । ଏହାକୁ ଉପଯୋଗ କରି ଆଗକୁ ବଢ଼ିବା ହିଁ ବୁଦ୍ଧିମାନତା ।

ହେ ଆତ୍ମନ୍ ! ସିଏ ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ଦେବନାହିଁ । ସିଏ ତୁମକୁ ଧକ୍କା ମାରିବ । ସିଏ ଏମିତି ଧକ୍କା ଦେବ ଯେ ପୁଣି ତୁମେ ସିଧା ପରମାତ୍ମାଙ୍କ ଶରଣରେ ଯାଇପଡ଼ିବ ଏବଂ କୌଣସି ଆଡ଼େ ଛନ୍ଦି ହୋଇଯାଇପାରିବ ନାହିଁ । ବୁଦ୍ଧ ତାଙ୍କର ଶିଷ୍ୟ ମାନଙ୍କୁ କହୁଥିଲେ ଯେ ଯଦି ମୁଁ ତୁମର ଓ ପରମାତ୍ମାଙ୍କ ମଝିରେ ବି ଆସୁଥାଏ, ତେବେ ତୁମେ ମୋତେ ଖଣ୍ଡ ଖଣ୍ଡ କରି କାଟିଦେବ, କାଳୀଙ୍କ ପାଇଁ ରାମକୃଷ୍ଣ ପରମହଂସ ଯେମିତି କରିଥିଲେ, ସେହିପରି ମୋତେ ବି ରାସ୍ତାରୁ ହଟାଇ ଦେବ । ଗୁରୁ ଏରୋ (➔), ସେତୁ, ସିଢ଼ୀ, ନୌକାର ଏୟା ହିଁ ହେଉଛି ପ୍ରୟୋଜନ ଯେ ତୁମେ ଲକ୍ଷ୍ୟ ଆଡ଼କୁ ବଢ଼ିଚାଲ, ସେଇଠି ଅଟକି ରହିଯାଅ ନାହିଁ । ଧ୍ୟାନ ବା ମୂର୍ତ୍ତି ତୁମକୁ ନିଜଠାରୁ କେବେ ହେଲେ ହଟାଇ ପାରିବେ ନାହିଁ, କାରଣ ସେସବୁ ହେଉଛି ଜଡ଼ ଏବଂ ତୁମେ ସେମାନଙ୍କ ମୋହ ଭିତରେ, ରୂପ ମାଧୁରୀ ଭିତରେ ଛନ୍ଦି ହୋଇ ହୋଇଯାଇଛ । କିନ୍ତୁ ଗୁରୁ ହେଉଛନ୍ତି ଚୈତନ୍ୟ, ସିଏ ତୁମକୁ ତାଙ୍କ ଠାରୁ ହଟାଇଦେବା ପାଇଁ କେତେ ପ୍ରକାରର ଅବସର ସୃଷ୍ଟି

କରିଦେବେ । କିନ୍ତୁ ମୂର୍ଖ ଶିଷ୍ୟ ଗୁରୁଙ୍କ ଠାରୁ ହଟିଯିବା ପାଇଁ ଯଦି ନଚାହିଁବ, ତେବେ ପୁଣି ଗୁରୁ ବିଚରା ଏକୁଟିଆ କିଛି କରିପାରିବ ନାହିଁ । ଏହା ତ ଉଭୟଙ୍କ ସହଯୋଗ ଦ୍ୱାରା ହିଁ ସମ୍ଭବ ହେବ । ଅର୍ଥାତ୍ ଶିଷ୍ୟ ବି ନିଜର ଅନ୍ତିମ ଲକ୍ଷ୍ୟରେ ପହଞ୍ଚିବାକୁ ଚାହୁଁଥିବ ଏବଂ ସଦ୍‌ଗୁରୁଙ୍କ ତାକୁ ପହୁଞ୍ଚାଇବାକୁ ଚାହୁଁଥିବେ । ସଦ୍‌ଗୁରୁ ତାଙ୍କ ପାଖରେ ଅଟକାଇ ରଖି ଶିଷ୍ୟର ଜୀବନକୁ ନଷ୍ଟ କରିବାକୁ ଚାହିଁନଥାନ୍ତି ଏବଂ ସେତେବେଳେ ଯାଇ ଗୁରୁଶିଷ୍ୟଙ୍କ ପବିତ୍ର ସମ୍ବନ୍ଧରେ ସଫଳତା ମିଳିଥାଏ ।

ଆତ୍ମା ହେଉଛି ନିରପେକ୍ଷ, ଅଖଣ୍ଡାନନ୍ଦ ସ୍ୱରୂପ । ଯଦି ଗୁରୁ, ମୂର୍ତ୍ତି, ଧ୍ୟାନ, ଜ୍ୟୋତି, ସତ୍‌ସଙ୍ଗ, ଏକାନ୍ତ ସ୍ଥଳ, ବିଷୟ ଭୋଗ ଦ୍ୱାରା ଜୀବକୁ ଆନନ୍ଦାନୁଭୂତି ହେଉଥାଏ, ତେବେ ତା'ର ସେଇ ଆନନ୍ଦ ନିଜର ନୁହେଁ, ସେଇ ଆନନ୍ଦ ହେଉଛି ପରର । ତାହା ପରତନ୍ତ୍ର, ସ୍ୱତନ୍ତ୍ର ନୁହେଁ ।

ଲୋକେ ମୁର୍ଦ୍ଦାର ଉପରେ ଅଧିକ ଭରସା କରିଥାନ୍ତି, ତା'ର କାରଣ ହେଉଛି ଏୟା ଯେ ମୁର୍ଦ୍ଦାର ସହିତ ଯେମିତି ବ୍ୟବହାର କରିବାକୁ ଚାହୁଁଛ କରିପାରିବ– ପୂଜା କର, ଲୁଗା ପିନ୍ଧାଅ, ଭାଙ୍ଗିଦିଅ, ଖଣ୍ଡିଆ ଖାବରା କରିଦିଅ କୌଣସି ପ୍ରକାର ବାଧା ନାହିଁ । ଜୀବନ୍ତ ସଦ୍‌ଗୁରୁଙ୍କ ସହିତ ତୁମେ ଯାହା ଚାହିଁବ, ତାହା କରାଇ ପାରିବ ନାହିଁ । ଗୁରୁ ଯାହା ଚାହିଁବେ ସେୟା ହେବ ।

ସଦ୍‌ଗୁରୁଙ୍କ କଥାକୁ ସମ୍ପୂର୍ଣ୍ଣ ଶୁଣିବା ପୂର୍ବରୁ, ଶୁଣିବା ସମୟରେ କେବଳ ଶୁଣି ଚାଲିଥାଅ । କିଛି ଭାବନାହିଁ, ବିଚାର କରନାହିଁ । ପୁଣି ପଛରେ ଗୁଣିଚାଲିଛ, ବିଚାର କରୁଛ ତ ଠିକ୍ ଭାବରେ କର । ଯେଉଁମାନେ ଗୁରୁଙ୍କୁ, ଅଷ୍ଟାବକ୍ରଙ୍କୁ, ଶୁକଦେବଙ୍କୁ, ଜନକଙ୍କୁ ଠିକ୍ ଭାବରେ ଶୁଣିଛନ୍ତି, ସେମାନେ ଶ୍ରବଣ ମାତ୍ରକେ ମୁକ୍ତ ହୋଇଯାଇଛନ୍ତି ।



## ।। ଦେହାଧାସ ଛାଡ଼ ।।

ଯେଉଁ ବ୍ୟକ୍ତି ଏଇ କଥାକୁ ଭଲଭାବରେ ବୁଝିଗଲା ଯେ ମୁଁ ଶରୀର ନୁହେଁ, ସିଏ ପୁଣି ଦ୍ୱିତୀୟ ଥର ପାଇଁ ଶରୀର ଭିତରକୁ ଆସିପାରିବ ନାହିଁ । ଯିଏ ବି ଆତ୍ମଭାବରେ ସ୍ଥିର ହୋଇଗଲା, ସିଏ ଜୀବିତାବସ୍ଥାରେ ବି ମୁକ୍ତ ହୋଇଗଲା । କାରଣ ଶରୀର ଭିତରକୁ ଆସିବାର ଯେଉଁ ମୂଳ ହେତୁ ହେଉଛି ଯେ 'ମୁଁ ଶରୀର', ତାହା ତା'ଠାରୁ ଚାଲିଗଲା – ତାଦାତ୍ମ୍ୟ ଭାଙ୍ଗିଗଲା । ''ମୁଁ ହେଉଛି ଶରୀର'' ଏଇ କାରଣ ଯୋଗୁ ଶରୀର ସହିତ ଆତ୍ମା ଯୋଡ଼ି ହୋଇଛି । ଶରୀର କାହାକୁ ଜାବୁଡ଼ି ଧରିନାହିଁ । ତୁମେ ଦେହକୁ ଧରିଛ । ଯେତେବେଳେ ତୁମେ ସ୍ୱରୂପରେ ଜାଗି ଯାଇଥାଅ, ସେତେବେଳେ ଦେହ ନିର୍ଜୀବ ହୋଇଯାଇଥାଏ । 'ମୁଁ ଶରୀର ନୁହେଁ' ଏଇ ନିଷ୍ଠା ଦ୍ୱାରା ଶରୀରର ମୂଳ ଉପୁଡ଼ିଯାଏ, ଶରୀର ଶୁଖି ଯାଏ ।

ତୁମେ ନିଜକୁ ଶରୀର ଠାରୁ ଅଲଗା କରି ପାରୁନାହଁ, ସେଥିପାଇଁ ତୁମକୁ ମୋର ଶରୀର ଦେଖାଯାଉଛି କିନ୍ତୁ ମୁଁ ହେଉଛି ସଂପୂର୍ଣ୍ଣ ସୁସ୍ଥ । ଶରୀର କାହାର ବି ସଂପୂର୍ଣ୍ଣ ଭାବରେ ସୁସ୍ଥ ହୋଇପାରିବ ନାହିଁ, କି ରହିପାରିବ ନାହିଁ । ମୋର ସମ୍ବନ୍ଧ ତା'ଠାରୁ ତୁଟିଯାଇଛି । ତାଦାତ୍ମ୍ୟ ତୁଟିଗଲା ପରେ ଶରୀର ସୁସ୍ଥ ହୋଇପାରିବ ନାହିଁ । ଫ୍ରିଜ୍‌ରୁ ବରଫ ବାହାର ହୋଇଗଲାପରେ ସିଏ ଧୀରେଧୀରେ ନଷ୍ଟ ହୋଇଯାଇଥାଏ, ତାକୁ ବଞ୍ଚାଯାଇପାରିବ ନାହିଁ, କାରଣ ବରଫର ପ୍ରାଣ, ଜୀବନ ତ ହେଉଛି ଅତିଶୟ ଶୀତଳ ଜଳବାୟୁ । ସେହିପରି ଜ୍ଞାନୀଙ୍କର ଦେହ ଠାରୁ ସମ୍ବନ୍ଧ ତଥା ଅହଂ ଚାଲିଗଲା ପରେ, ଶରୀର ଦିନକୁ ଦିନ କମି କମି ଯାଉଥିବ, କାରଣ ଜୀବନର ସମ୍ବନ୍ଧ ଦେହଭାବ ସହିତ ରହିଥାଏ ।

ଶରୀରର ଚିନ୍ତା କରିବା, ଉପଚାର କରିବା ଉଚିତ, ତଥାପି ସୁଦ୍ଧା ସିଏ ଯିବ । ଦେହ ପ୍ରତି ରହିଥିବା ମୋହରୁ ମୁକ୍ତ ହେବାର ଏକମାତ୍ର ଉପାୟ ହେଉଛି ଯେ ନିଜକୁ ଓ ଶରୀରକୁ

ଅଲଗା-ଅଲଗା କରି ଦେଖ । ନିଜକୁ ଆତ୍ମା ଭାବରେ ଦେଖ, ଶରୀରକୁ ଭୁଲିଯାଅ । ଶରୀରକୁ ମରିବାର ଅଛି ତ ସେ ରୁଗ୍ଣ ହୋଇ କରି ମରିବ । ଶରୀର ଭିତରେ ଯିଏ ଅଛି, ତୁମେ ତାକୁ ନିଜର ବୋଲି ଜାଣ, ଯିଏ ହେଉଛି ସନାତନ, ଅମର, ଯିଏ ହେଉଛି ଅନାଦି ଅନନ୍ତ ।

ଯାହା ସାଧନ ଦ୍ୱାରା, ପ୍ରସ୍ତୁତି ଦ୍ୱାରା, ସମୟ ଅନୁସାରେ ମିଳିଥାଏ ତାହା ହେଉଛି ସଂସାର, କିନ୍ତୁ ପରମାତ୍ମା ସାଧନ-ସାଧ୍ୟ ବସ୍ତୁ ନୁହଁନ୍ତି ।

ଲୋକେ ଗାଳିଦେବା ପାଇଁ ଅତି ବ୍ୟଗ୍ର ହୋଇପଡ଼ିଥାନ୍ତି । କାଲି ଗାଳି ଦେଇଦେବି ଏଭଳି କେବେ ଭାବନ୍ତି ନାହିଁ କିନ୍ତୁ ପ୍ରେମ ମାଗିଲା ପରେ ବି ଦିଅନ୍ତି ନାହିଁ । ଲୋକ ସବୁ ଅଭିଯୋଗ କରିଥାନ୍ତି ଯେ ସିଏ ଆମକୁ ପ୍ରେମ କରୁନାହିଁ । ମାଗିଲେ ବି ପ୍ରେମ ବଣ୍ଟାଯାଉନାହିଁ । ଯେତେବେଳେ କି ଗାଳି, ନିନ୍ଦାକୁ ଏହାର ପରିଣାମ କ'ଣ ହେବ ନଜାଣି ସୁଦ୍ଧା ତତ୍‌କ୍ଷଣାତ୍ ଦେବାକୁ, କରିବାକୁ ସମସ୍ତେ ତତ୍ପର ରହୁଛନ୍ତି ।

ତୁମକୁ ଦେଖି କେହି ଗାଳି ଦେଉଥିଲେ ତୁମେ ଆଦୌ ଚିନ୍ତା କରନାହିଁ, ତୁମେ ତାକୁ ଟିକିଏ ହେଲେ ସ୍ୱୀକାର କରନାହିଁ । ସେତେବେଳେ ସେଇ ଗାଳି ତୁମଠାରେ ଧକ୍କା ଖାଇ ତୁମ ଭିତରକୁ ପ୍ରବେଶ ନକରି ପୁନଶ୍ଚ ସେଇ ଗାଳିଦେଉଥିବା ଲୋକ ପାଖକୁ ଫେରିଯିବ । ତୁମର ଅସଙ୍ଗ ହେଇଯିବା ହିଁ ପର୍ଯ୍ୟାପ୍ତ ।

ନିଦ, ପ୍ରତିଦିନ ପାଇଁ ଛୋଟିଆ ମୃତ୍ୟୁ ଭଳି, ମୃତ୍ୟୁ ହେଉଛି ଜୀବନର ଶେଷରେ ହେଉଥିବା ବଡ଼ ନିଦ । ପୁରୁଣା ବସ୍ତ୍ରକୁ ତ୍ୟାଗ କଲାପରି ସେଇ ମୃତ୍ୟୁ । ନିଦ ତାଜା ବନାଇଦେଇ ଉଠାଇଥାଏ । ମୃତ୍ୟୁ ବାର୍ଦ୍ଧକ୍ୟକୁ ଛଡ଼େଇନେଇ, ଶୈଶବ ଦିଆଇ, ତାଜା ପଣିଆ ଭରିଦେଇ ଉଠାଇଦେଇଥାଏ ।

ଇଏ ମଲା, ସିଏ ମଲା, ଏହାକୁ ତୁମେ କେତେ ପର୍ଯ୍ୟନ୍ତ ଦେଖି ଚାଲିଥିବ, ଏହି ସ୍ଥିତି ତୁମ ସହିତ ମଧ୍ୟ ହେବାକୁ ଯାଉଛି, ବର୍ତ୍ତମାନ ସମୟ ଆସି ସାରିଛି । ଯାହା ସୁନିଶ୍ଚିତ ତାହା ହେଉଛି ମୃତ୍ୟୁ ଏବଂ ଅନ୍ୟ ସବୁ ହେଉଛି ଭାଗ୍ୟର କଥା । ଧନ, ଯଶ, ସନ୍ତାନ, ସମ୍ପତ୍ତି ମିଳୁ ନ ମିଳୁ କିନ୍ତୁ ମୃତ୍ୟୁ ନିଶ୍ଚିତ, ତେଣୁ ଆଜି ଠାରୁ ହିଁ ମାନିନିଅ ଯେ ମୁଁ ମରିଗଲି । ଅଶାନ୍ତି, ଚାହିଁବା ଶେଷ ହେଇଗଲା । ଆମେ ସବୁ ମୃତ୍ୟୁର ଧାଡ଼ିରେ ପଂକ୍ତି ବାନ୍ଧି ହିଁ ଛିଡ଼ା ହୋଇଚେ, ଆଗରେ ଥିବା ଲୋକଟି ହଟି ଯାଉ ଯାଉ ଆମର ଶରୀର ମୃତ୍ୟୁ ଦ୍ୱାର ଆଡ଼କୁ ବଢ଼ିଚାଲିଯିବ ।

କିଏ ବଞ୍ଚିବା ପାଇଁ ଚେଷ୍ଟା କରେ ନାହିଁ ? ମାତ୍ର କିଏ ବଞ୍ଚିପାରିଥାଏ ? ମୃତ୍ୟୁ ସହିତ କିଏ ଲଢ଼େ ନାହିଁ ? କିନ୍ତୁ କିଏ ମୃତ୍ୟୁକୁ ଜିତିଛି ? ମୃତ୍ୟୁ ସମସ୍ତଙ୍କୁ ହରାଇ ଦେଇଥାଏ । ଯେତେବେଳେ ପ୍ରତି ଶ୍ୱାସରେ ମରି ମରି ଯାଉଛ, ସେତେବେଳେ ହସଖୁସି କ'ଣ ପାଇଁ ? ତୁମେ କେଉଁଠୁ ହେଲେ ଯାଅ, କେଉଁଠାକୁ ବି ଯାଅ, ରାଜା ହୁଅ ବା ଭିକାରୀ, ମୂର୍ଖ ହୁଅ ବା ପଣ୍ଡିତ, ବାହାଦୂର ହୁଅ ବା ନିର୍ବଳ ସମସ୍ତେ ଯାଇ ଶ୍ମଶାନରେ ପହଞ୍ଚୁଛନ୍ତି ।

ମୃତ୍ୟୁ ଗୋଟିଏ ଦିନରେ ଘଟିନଥାଏ ଏହା ପ୍ରତ୍ୟେକ ଶ୍ୱାସରେ ଘଟିଚାଲିଛି । ସତୁରୀ ବର୍ଷର ବୁଢ଼ା ଅଚାନକ ଗୋଟିଏ ଦିନରେ ମରିନଥାଏ । ସିଏ ତ ଜନ୍ମରୁ ମରି–ମରି ଚାଲିଆସୁଥିଲା ଓ ଆଜି ତା'ର ମରିବା ସମ୍ପୂର୍ଣ୍ଣ ହୋଇଗଲା । ଯେଉଁ ମୃତ୍ୟୁର ଯାତ୍ରାରେ ବାହାରିଥିଲା ପିଲାଟି ଦିନରୁ, ତାହା ବର୍ତ୍ତମାନ ପୂର୍ଣ୍ଣ ହୋଇଗଲା । ଜନ୍ମ ଦିନ ଠାରୁ ହିଁ ମୃତ୍ୟୁ ଆରମ୍ଭ ହୋଇଯାଇଛି । ଜନ୍ମଦିନ ହେଉଛି ମୃତ୍ୟୁର ଦିନ । ଏଣେ ପିଲା ଜନ୍ମ ନେଇନାହିଁ ତେଣେ ମରିବା ଆରମ୍ଭ ହୋଇଗଲାଣି । ତୁମେ ଟିକିଏ ଆଖି ଖୋଲିକରି ଦେଖିଲ ଦୁଇଜଣ ପ୍ରେମୀଙ୍କ ମିଳନରେ କ'ଣ ହେଉଛି । ଦୁଇଟି ଅସ୍ଥି ପଞ୍ଜରାର ଘର୍ଷଣ, ହାଡ଼–ହାଡ଼ର, ମାଂସ–ମାଂସର ଘର୍ଷଣ, ଯାହାକୁ ଅଜ୍ଞାନୀ ଆଲିଙ୍ଗନ ବୋଲି କହିଥାଏ । ମାତ୍ର ଢଙ୍କା ହୋଇଛି ଚର୍ମରେ, ଖୁବ୍ ସୁନ୍ଦର ଭାବରେ ଢଙ୍କା ହୋଇଛି କିନ୍ତୁ ସିଏ ତ ହେଉଛି କେବଳ ହାଡ଼–ମାଂସ–ମଜ୍ଜା । ଏଇ ଶରୀରକୁ ମାନିନିଅ ହାଡ଼ ଗୁଡ଼ିକରେ ଗଢ଼ା ହୋଇଥିବା ଗୋଟିଏ ଘର, ଯାହାକୁ ମାଂସରେ ଛାଉଣି କରି ଚମଡ଼ାରେ ଢାଙ୍କି ରଖାଯାଇଛି । ଏଇଠି କେହି କାହାର ନୁହଁନ୍ତି । ଏଇ ଶରୀର ହେଉଛି କ୍ଷଣ ଭଙ୍ଗୁର । ତୁମେ ତ ନିଜ ଦେହ ଉପରେ ଭରସା କରିପାରିବ ନାହିଁ, ପୁଣି ଅନ୍ୟ ଶରୀର ଉପରେ ଭରସା କ'ଣ ? ସିଏ ହେଉଛି ପଚା, ସଢ଼ା, ଦୁର୍ଗନ୍ଧର ଭଣ୍ଡାର ।

ଦିନବେଳେ ଯାହା ସୁନ୍ଦରତମ ଦେଖାଯାଇଥାଏ, ରାତିର ନିଦବେଳେ ତାହା ଭୟାବହ ହୋଇଯାଇଥାଏ । ଆଖି ଖୋଲା, ମୁହଁ ମେଲା, ନାକର ଘୁଂଗୁଡ଼ି, ଲାଳ ବହିଚାଲିଛି, ମୂତ୍ର ବା ରଜ– ବୀର୍ଯ୍ୟ ବହିଚାଲିଛି । ଶୃଙ୍ଗାର ଇତସ୍ତତଃ ହୋଇଗଲା, ଲୁଗା ତଳୁ ଉପରକୁ ଚଢ଼ିଗଲା, ଗୋଡ଼ ଲଙ୍ଗଳା ହୋଇଗଲା, ଛାତି ଲାଖିଯାଇଛି, ଦାନ୍ତ ବାହାରିପଡ଼ିଛି, ନକଲି ବାଳ ତଳକୁ ଖସି ପଡ଼ିଛି, ଲୁଗା ଖାଲି ପଡ଼ିଛି, ମାସିକ ଧର୍ମ ଯୋଗୁ ରକ୍ତ ବହିଚାଲିଛି । ପାଣି ଫୋଟକା ଯେପର୍ଯ୍ୟନ୍ତ ଅଛି, ସେପର୍ଯ୍ୟନ୍ତ ସୂର୍ଯ୍ୟଙ୍କ ଚମକ ହୀରା ଭଳି ଚମକି ଉଠିଥାଏ । ଫୋଟକା ଫାଟିଗଲେ ଜଣାପଡ଼େ ନି କୁଆଡ଼େ ଗଲା । ଏଇ ଜୀବନ ଥିବା ପର୍ଯ୍ୟନ୍ତ ଶରୀର ଚମକୁଥାଏ, ଜୀବନ ଗଲା ତ ଶରୀର ସମାପ୍ତ । କେବଳ ଏକମାତ୍ର ବସ୍ତୁ ଅଛି, ଯାହା ଜରାଜୀର୍ଣ୍ଣ ହୁଏନାହିଁ, ସିଏ ହେଉଛି ତୁମେ

ଆତ୍ମା । ଶରୀର ହେଉଛି ମାଟି, ସିଏ ମାଟିରେ ମିଶିଯିବ । ମୃତ୍ୟୁପୂର୍ବରୁ ତାକୁ ଜାଣିନିଅ ଯାହାର ମୃତ୍ୟୁ ନାହିଁ, ଯାହାର ଜନ୍ମ ନାହିଁ ।

ଯେଉଁ ଚିଜକୁ ଯୋଡ଼ିକରି ବନାଯାଇଛି, ତାହା ଭାଙ୍ଗିବ । ଯୋଡ଼ା ହୋଇଥିବା ପଦାର୍ଥ ସହିତ ଯୋଡ଼ିହୋଇ ରୁହନା, ସିଏ ତ ନିଶ୍ଚିତ ଭାବରେ ଭାଙ୍ଗିବ । ଘର, ରଥ, ସାଇକେଲ୍, ଘଡ଼ି, ଚେନ୍ କେତେ ଦିନଯାଏ ସେମିତି ଲାଗି ରହିଥିବ ? ଯିଏ ଅଖଣ୍ଡ, ଅଯୋଡ଼ ତାକୁ ଖୋଜ । ତାହା କେବେହେଲେ ଭାଙ୍ଗିବନାହିଁ । ଯାହାର ଖଣ୍ଡ ନାହିଁ, ତା'ର ବିସର୍ଜନ କିପରି ହୋଇପାରିବ ?

ଏଇ ଶରୀର ତ ହେଉଛି ବ୍ରଣ, ଏଥିରେ ଖାଲି ଘାଆ ହିଁ ଘାଆ, ରୋଗ ହିଁ ରୋଗ ଲୁଚି ରହିଛି । ସମସ୍ତେ ହେଉଛନ୍ତି ରୋଗୀ । ଯେପର୍ଯ୍ୟନ୍ତ ରୋଗ ପ୍ରକଟ ହୋଇନାହିଁ, ସେପର୍ଯ୍ୟନ୍ତ ବ୍ୟକ୍ତିକୁ ସୁସ୍ଥ ରହିଥିବାର ଭ୍ରାନ୍ତି ହୋଇଯାଇଛି । ବୀଜ ଓ ରୋଗ ସମୟ ସୁବିଧାର ଉପଯୁକ୍ତ ବାତାବରଣ ଅନୁସନ୍ଧାନରେ ରହିଥାଏ, ସମୟ ମିଳିଗଲେ ପ୍ରକଟ ହୋଇଯିବେ । ବେମାରୀ ତ ସମସ୍ତଙ୍କ ଭିତରେ ଅଛି । ବେମାର ହୋଇଗଲେ ବେମାରୀ ହୋଇନଥାଏ । ବେମାରୀ ଅଛି, ସେଥିପାଇଁ ବେମାର ହୋଇଗଲା । କାହାର ପ୍ରକଟ ହୋଇଯାଇଛି, କାହାର ପ୍ରକଟ ହୋଇନାହିଁ, ଏତିକି ହିଁ ବେମାର ଓ ସୁସ୍ଥ ବ୍ୟକ୍ତି ଭିତରେ ଫରକ । ରୋଗ ପ୍ରକଟ ହେବାର ପ୍ରତୀକ୍ଷାରେ ବସିଅଛି ।

ଥରେ ଭାବି ଦେଖିଲ ଏଇ ଶରୀର ଏତେଗୁଡ଼ିଏ ବେମାରୀର ଘର ହୋଇ ସୁଦ୍ଧା ଏପର୍ଯ୍ୟନ୍ତ ଜୀବିତ କିପରି ରହିଲା ? ମରିଗଲା ତ ତା' ପାଇଁ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ଜୀବିତ କେମିତି ରହିଲା ଏହା ହିଁ ହେଉଛି ଆଶ୍ଚର୍ଯ୍ୟ ।

ତୁମର ହେବା ନା ଶରୀରରେ ଅଛି ନା ମନରେ ଅଛି, ଏ ଦୁହେଁ ହଜିଯିବେ, ଉଭୟ ପଞ୍ଚଭୂତ ଦ୍ୱାରା ଗଠିତ । ତୁମର ହେବା ତ ସେଥିରେ ଅଛି, ଯିଏ ଶରୀର ଓ ମନ ସେପାରିରେ ଛିଡ଼ା ହୋଇଛି । ସିଏ ଦୁହିଁଙ୍କୁ ଦେଖୁଛି, ଯିଏ ହେଉଛି ଶରୀର ଓ ମନ ଦୁହିଁଙ୍କର ସାକ୍ଷୀ ।

ପାଚେରୀ ତଳେ, ଫାଟ ଜାଗାରେ ଛୋଟ ଗଛ ଜନ୍ମ ହୋଇ ତା' ମୂଳକୁ ମେଲାଇ ଚାଲିଥାଏ । ପୁଣି ସେଇ ଛୋଟ ଗଛକୁ ଓପାଡ଼ିବାକୁ ଗଲେ ପାଚେରୀ, ଘରକୁ ବି ଭାଙ୍ଗିବାକୁ ପଡ଼ିଥାଏ, ତା ଅର୍ଥ ହେଲା ଛୋଟଗଛକୁ ଶୀଘ୍ର ଓପାଡ଼ିଦେବା ଉଚିତ୍ । ସେହିପରି ଅନ୍ଧବିଶ୍ୱାସର ମୂଳକୁ ବ୍ୟାପୀବାକୁ ଦିଅନାହିଁ, ନଚେତ୍ ତାକୁ ଓପାଡ଼ିବା, କାଟିବା, ଜଳାଇବା ପାଇଁ ବହୁତ କଷ୍ଟ ହେବ ।

ସତ୍ୟ ପାଇଁ ତୁମେ ବାହାରେ ବୁଲି ବାଟବଣା ହେଉଛ । ତୁମେ ତାକୁ କେଉଁଠି ଖୋଜୁଛ ? କାହାକୁ ମାଗିବାକୁ ଯାଉଛ ? ଯିଏ ଏଇଠି ତୁମ ଭିତରର ସମ୍ପଦ, ତାହା ଆଉ କେଉଁଠି ମିଳିବ

ନାହିଁ । ଜନ୍ମ-ଜନ୍ମ ଧରି ଅନେକ ଦୁଆରରେ ବୁଲି ବୁଲି ଭିକ ମାଗିଲ କିନ୍ତୁ ନିଜର ଭିକ୍ଷା ପାତ୍ରକୁ ଦେଖିଲ କେତେ ମିଳିଲା, ସିଏ ଯେମିତି କି ସେମିତି ଖାଲି କି ଖାଲି ହୋଇ ପଡ଼ିଛି ।

କ୍ରୋଧ ଠାରୁ ବଡ଼ ମୂଢ଼ତା ନାହିଁ । ଅନ୍ୟର ଭୁଲ୍ ପାଇଁ, ମୂଢ଼ତା ପାଇଁ ତୁମେ ନିଜକୁ ଦଣ୍ଡ ଦେଇଥାଅ । ଜଣେ ଲୋକ ତୁମ ଆଡ଼କୁ ମୁହଁ କରି ଗାଳିଦେଲା, ଅସୁବିଧା ତା'ର ଥିଲା, ଭୁଲ୍ ତା'ର ଥିଲା, ସିଏ ତା'ର ପୀଡ଼ାକୁ ଶାନ୍ତ କରିବା ପାଇଁ ଗାଳିକୁ ବାହାରକଲା, ତୁମେ ତାକୁ ନିଜ ପାଇଁ କାହିଁକି ସ୍ୱୀକାର କରିନେଲ ? ଏଇ ନାମଧାରୀ ବ୍ୟକ୍ତି ଆଉ କେହି ଅଛନ୍ତି । ଭାବିନିଅ ସିଏ ତୁମ ପଛରେ ହିଁ ଛିଡ଼ା ହୋଇଛନ୍ତି । ତୁମେ ଏତେ ଶୀଘ୍ର ତାଙ୍କ ମଝିରେ ରହି ନିଜ ପାଇଁ କାହିଁକି ସ୍ୱୀକାର କରିନେଲ ଯେ ମୋତେ ଗାଳିଦେଲା । ବର୍ତ୍ତମାନ ତୁମେ ତା' ଉପରେ କ୍ରୋଧିତ ହେଉଅଛ । କ୍ରୋଧ କରି ଦଣ୍ଡ ତୁମେ ନିଜକୁ ଦେଉଅଛ । ତୁମେ ତାକୁ ସ୍ୱୀକାର କରନାହିଁ । ଗାଳି ସିଏ ଦେଲା, ସିଏ ହେଉଛି ତା' ସମସ୍ୟା । ତୁମେ ତାକୁ ଗ୍ରହଣ କରିବ ଏହାର କୌଣସି ଆବଶ୍ୟକତା ନାହିଁ, ତୁମେ କାହିଁକି ମଝିରେ ଆସିଯାଉଛ । ସେଇ ଗାଳିକୁ ନେବା ନନେବା ତୁମ ଆୟତ୍ତରେ ଅଛି । ଗାଳି ଦେବା ନଦେବା ଏହା ତାଙ୍କ ଆୟତ୍ତରେ ଅଛି । ମୁଁ ଚାହିଁବି ତ ସେଇ ଗାଳିକୁ ସ୍ୱୀକାର କରିବି ବା ନ କରିବି, ଏହା ମୋ' ଆୟତ୍ତରେ ଅଛି । ଗାଳି ଦେଲାବାଲା ଦୁଇଆଡୁ ଦୁଃଖ ଭୋଗ କରିଥାଏ । ଗାଳିର ତୀର ହେଉଛି ଦୋମୁହାଁ ।

**ଗାଲି ଆୱତ ଏକ ହେି, ପଲଟତ ହୋୟ ଅନେକ ।**
**ଜୋ ରହିମ ପଲଟୋ ନହିଁ, ବାକୀ ଏକ କୀ ଏକ ।।**

ଗାଳିର ଉତ୍ତର ଗାଳିରେ ମିଳିଗଲା ତ ପୁଣି ଗାଳି ଦେଲାବାଲାକୁ ହିଁ ଦୁଃଖ ଭୋଗିବାକୁ ପଡ଼ିବ । ଯେତେବେଳେ ଆମେ କାହାର ବ୍ୟବହାରକୁ ନିଜ ଭିତରକୁ ନେଇଯାଉ, ସେତେବେଳେ ତାହା ପ୍ରତିକ୍ରିୟାରେ ପରିଣତ ହୋଇଯାଇଥାଏ । ସେତେବେଳେ ତାହା ସକ୍ରିୟ ହୋଇଯାଇଥାଏ । ତୁମେ ଅକାରଣରେ ହିଁ ନିଜ ଭିତରେ ଦୁଃଖର ବୀଜ ସୃଷ୍ଟି କରିନେଇଥାଅ । ତୁମର ଅନ୍ୟ କେହି ଦେଇଥିବା ବ୍ୟବହାର, ଗାଳି ଇତ୍ୟାଦିକୁ ସ୍ୱୀକାର କରିନେବାର କୌଣସି ଆବଶ୍ୟକତା ନାହିଁ । ପ୍ରତିକ୍ରିୟାରେ ଅନ୍ୟ ଜଣେ ହେଉଛି ମାଲିକ । କ୍ରିୟାରେ ତୁମେ ହେଉଛ ମାଲିକ । ଯେତେବେଳେ କରିବାର ଅଛି କ୍ରୋଧ କରିନେଉଛ, ନାହିଁ ତ ନାହିଁ ।

ଯିଏ ଦେହଭାବରେ ଜୀଇଁ ରହିଛି, ସିଏ ଶୋଇ ଶୋଇ ଜୀଇଁ ରହିଛି, ସିଏ ମୃତ୍ୟୁ ଆଡ଼କୁ ଯାଉଛି । ଯିଏ ସାକ୍ଷୀଭାବରେ ଜୀଇଁ ରହୁଛି, ସିଏ ଅମୃତ ଆଡ଼କୁ ଚାଲିବା ଆରମ୍ଭ କରିଦେଇଛି । ସେଇ ରାସ୍ତା ହେଉଛି ଅମୃତର ରାସ୍ତା । ଯେପର୍ଯ୍ୟନ୍ତ ସଦ୍‌ଗୁରୁଙ୍କ ଜ୍ଞାନର ଆଲୋକ ତୁମର

ଅନ୍ତଃକରଣ ରୂପୀ ଘର ଭିତରେ ପ୍ରବେଶ କରିପାରିନାହିଁ, ସେପର୍ଯ୍ୟନ୍ତ ତୁମ ଘର ହେଉଛି ଅନ୍ଧକାରପୂର୍ଣ୍ଣ । ତୁମ ଘର ଭିତରେ ଅମୃତର ଝରଣା ଲୁଚି ରହିଛି, ଶାଶ୍ୱତର ଖଜଣା ଲୁଚି ରହିଛି । ମାତ୍ର ଘରେ ଅନ୍ଧାର ଅଛି, ତୁମେ ହେଉଛ ଅନ୍ଧାରୀ ଘରର ନିବାସୀ, ଯାହାକୁ ଜ୍ଞାନର ଆଲୋକ ଭଲ ଲାଗେ ନାହିଁ । ଯାହାକୁ ନିଜର ଅଜ୍ଞାନ ଅନ୍ଧକାର ହିଁ ପ୍ରିୟ ଲାଗିଥାଏ, ସିଏ ମନୁଷ୍ୟ ରୂପରେ ପେଚା ଜାତୀୟ । ପେଚାକୁ ଦିନର ଆଲୋକ ଶତ୍ରୁ ଭଳି ଲାଗିଥାଏ, ରାତିର ଅନ୍ଧାର ଜୀବନ ଭଳି ଲାଗିଥାଏ ।

ଏହା ହେଉଛି ତୁମର ଭ୍ରାନ୍ତ ଧାରଣା ଯେ ତୁମେ ହେଉଛ ମରଣଧର୍ମା ଶରୀର, କିନ୍ତୁ ତୁମେ ତ ହେଉଛ ଅଶରୀରୀ ଅମୃତ ଆତ୍ମା । ଅମୃତର ସନ୍ତାନ । ତୁମେ ଏଇ ଶରୀର ଜନ୍ମ ହେବା ପୂର୍ବରୁ ବି ଥିଲ ଏବଂ ଦେହର ମୃତ୍ୟୁ ହେଲାପରେ ବି ରହିଥାଅ । ତୁମେ ଏୟା ହିଁ ଭୁଲି ଯାଇଛ ଯେ ତୁମେ ହେଉଛ ଶରୀର ଠାରୁ ପୃଥକ୍ । ଯେତେବେଳେ ଶରୀର ମରିଥାଏ, ସେତେବେଳେ ତୁମେ ମାନିନେଇଥାଅ ଯେ 'ମୁଁ ମଲି ।' ଏଇ ଦେହ ସହିତ ରହିଥିବା ପ୍ରମାଦ, ମୂର୍ଚ୍ଛା, ତାଦାତ୍ମ୍ୟକୁ ଭାଙ୍ଗିଦେବାକୁ ପଡ଼ିବ ।

ଯେତେବେଳେ ଆମେ ଶ୍ୱାସକୁ ଦେଖିବାରେ ଲାଗିଥାଉ, ସେତେବେଳେ ଆମର ଆତ୍ମା ଓ ଶରୀର ଭିତରେ ଥିବା ଦୂରତା ବଢ଼ି ବଢ଼ି ଚାଲିଥାଏ । ବୁଦ୍ଧ ତାଙ୍କର ଅନୁଗାମୀମାନଙ୍କୁ ଏକ ମାତ୍ର ସାଧନା ଶିଖାଉଥିଲେ "ଅନାପାନ-ସତୀଯୋଗ" ଅର୍ଥାତ୍ ତୁମେ ନିଜ ଶ୍ୱାସର ଯିବା-ଆସିବାକୁ ଦେଖିଚାଲ, ତାହାର ସ୍ମୃତିକୁ ରଖ । ଯଦି ଗୋଟିଏ ମାସ ପାଇଁ ଏଇ ଅଭ୍ୟାସ କରିନେବା ତେବେ ଆମେ ଶରୀରକୁ ନିଜଠାରୁ ପୃଥକ୍ ଭାବରେ ଦେଖିପାରିବା ଯେ ଶରୀର ଅଲଗା ପଡ଼ିରହିଛି ଏବଂ ମୁଁ ତାକୁ ଦେଖୁଛି । ସେତେବେଳେ ଶରୀରରେ ଥାଇ ଶରୀରଠାରୁ ବାହାର ହେବାର ଅନୁଭବ ହୋଇପାରିବ । ଜାଣୁ ଜାଣୁ ଶ୍ୱାସ ଭିତରକୁ ଯାଉ ଏବଂ ଜାଣୁ ଜାଣୁ ଶ୍ୱାସ ବାହାରକୁ ଆସୁ । ଯଦି ଉଠିବା-ବସିବା ବେଳେ, ଟ୍ରେନ୍‌ରେ ଯିବା ଆସିବା ବେଳେ, ଚେଇଁବା-ଶୋଇବା ବେଳେ ଏଇ ଧ୍ୟାନ ରଖିପାରିବା ଯେ ଶ୍ୱାସ ଭିତରୁ ଆସୁଛି ନା ବାହାରକୁ ଯାଉଛି ତେବେ ମନ ସେତିକି ଶାନ୍ତିର ଗଭୀରତାକୁ ଉପଲବ୍ଧ କରିପାରିବ । ପୁଣି ମନ ନିଜକୁ ନିଜେ ସେଆଡ଼କୁ ଯିବା ଆରମ୍ଭ କରିବ । ପ୍ରଥମେ ତୁମେ ଗୋଟିଏ ମାସ ପାଇଁ ଅଭ୍ୟାସ କରିବ ତ ପୁଣି ସେଇ ଆଡ଼କୁ ମନ ଟାଣି ହୋଇ ରହିବ । ମନର ସ୍ୱଭାବ ହେଉଛି ଯେଉଁଠି ତାକୁ ଆନନ୍ଦ ମିଳିଥାଏ, ସିଏ ସ୍ୱୟଂ ସେଆଡ଼କୁ ଚାଲିଯାଇଥାଏ । ଥରେ ଆମେ ତାକୁ ରାସ୍ତା ଧରାଇ ଦେଲେ, ତା'ପରେ ସିଏ ଆନନ୍ଦ ଆଡ଼କୁ ଦୌଡ଼ି ଚାଲିଥିବ । ଯେଉଁଠି ପୂର୍ଣ୍ଣାନନ୍ଦ ଅଛି, ସେଇଠି ପରମାତ୍ମା ଅଛନ୍ତି ।

ଯେତେବେଳେ ତୁମେ ଛୋଟ ପିଲାର ଶରୀରରେ ଥିଲ, ସେତେବେଳେ ତୁମେ ସେଇ ପିଲାର ଶରୀର ସହିତ ତାଦାତ୍ମ୍ୟ କରି 'ମୁଁ ହେଉଛି ପିଲା' ଏଇ ଭ୍ରାନ୍ତ ଧାରଣାକୁ ଧରି ପକାଇଥିଲ । ନା ତ ତୁମେ କେବେ ପିଲା ଥିଲ, ନା କିଶୋର ଥିଲ, ନା ଯୁବକ ଥିଲ, ନା ପ୍ରୌଢ଼ ଥିଲ, ନା କେବେ ବୁଢ଼ା ହୋଇ ମରିଛ, ନା ତୁମର ପୁନର୍ଜନ୍ମ ଅଛି । ପିଲାର ଚୈତନ୍ୟ ହେଉଛି ସେତିକି ପୁରୁଣା, ଯେତିକି ରାମ, କୃଷ୍ଣ, ବୁଦ୍ଧ, ମହାବୀରଙ୍କର । ସେଇ ଚୈତନ୍ୟ ସେଇଦିନରୁ ଅଛି, ଯେବେଠୁ ସୃଷ୍ଟି ରହିଛି । ସେଥିପାଇଁ ଏହାକୁ ସନାତନ, ନିତ୍ୟ, ଅବିନାଶୀ, ଅଜନ୍ମା, ଅନାଦି କୁହାଯାଇଥାଏ । ପୁଣି ଯେତେବେଳେ ତୁମେ କିଶୋର ଶରୀରରେ ଥିଲ ସେତେବେଳେ ସେଇ ଶରୀର ସହିତ ଏକତା କରି ମୁଁ କିଶୋର ବୋଲି ମାନିନେଲ । ଯେତେବେଳେ ତୁମେ ଯୁବା ଶରୀରରେ ଥିଲ ସେତେବେଳେ ମୁଁ ହେଉଛି ଯୁବା, ଏହିଭଳି ମିଥ୍ୟା ଅଭିମାନ କରିନେଲ ଏବଂ ଯେତେବେଳେ ଶରୀର ବୁଢ଼ା ହେଲା, ସେତେବେଳେ ସେଇ ଦୃଶ୍ୟ ଶରୀର ସହିତ ତାଦାତ୍ମ୍ୟ କରି ମୁଁ ହେଉଛି ବୁଢ଼ା, ଏଭଳି ମାନିନେଲ । ଶରୀରର ଧର୍ମକୁ, ଅବସ୍ଥାକୁ, ନାମ-ରୂପକୁ, ଜାତି-ଆଶ୍ରମକୁ, ସମ୍ବନ୍ଧ-ପରିଣାମକୁ, ଜନ୍ମ-ମୃତ୍ୟୁକୁ, ବୟସ-ଓଜନକୁ, ପଦ-ପ୍ରତିଷ୍ଠାକୁ, ଅଙ୍ଗ ଭଙ୍ଗ ହେବାକୁ ନିଜର ବୋଲି ମାନିନେବାରେ ଲାଗିଯିବା ହିଁ ହେଉଛି ଅଜ୍ଞାନୀ ପୁରୁଷର ଲକ୍ଷଣ । ଏହା ତ ହେଉଛି ଏଭଳି ଅଜ୍ଞାନ ଯେ ଲୁଗା ନୂଆ ହେଲା ତ ମୁଁ ନୂଆ, ଲୁଗା କଳା, ଗୋରା ତ ମୁଁ କଳା, ଗୋରା, ଲୁଗା ପୁରୁଣା ହେଲା ତ ମୁଁ ପୁରୁଣା, ଜରାଜୀର୍ଣ୍ଣ ହୋଇଗଲା ।

ଦେହର ଅବସ୍ଥାକୁ ନିଜର ବୋଲି କହିବା, ମାନିବା, ଜାଣିବା ତ ଏମିତି ହେଲା, ଯେମିତି କି ଟ୍ରେନ୍ ମୁମ୍ବାଇରେ ଅଟକିଗଲା ତ ଟ୍ରେନ୍‌ରେ ବସିଥିବା ମୁଁ ହେଉଛି ମୁମ୍ବାଇ, ଦିଲ୍ଲୀରେ ଅଟକିଗଲା ତ ମୁଁ ହେଉଛି ଦିଲ୍ଲୀ, ବୀନାରେ ଅଟକିଗଲା ତ ମୁଁ ହେଉଛି ବୀନା, ଏହିଭଳି ଶରୀର ଯାତ୍ରାର ଏଇ ଶିଶୁ, କିଶୋର, ଯୁବା, ପ୍ରୌଢ଼, ବୃଦ୍ଧ, ବେମାର, ଜନ୍ମ-ମୃତ୍ୟୁ ଇତ୍ୟାଦି ଷ୍ଟେସନ ଅଛି । ଇଏ ତ ହେଉଛି ଶରୀରର ରହଣି । ତୁମେ ହେଉଛ କେବଳ ଦ୍ରଷ୍ଟା, ସାକ୍ଷୀ, ଆତ୍ମା । ତୁମେ ପିଲା, କିଶୋର, ଯୁବକ, ପ୍ରୌଢ଼, ରୋଗୀ, ବୁଢ଼ା, ମରଣଧର୍ମୀ ନୁହଁ ।

ଏଇ ଶରୀରକୁ ହାଣ୍ଡି ଭଳି, ଘର ଭଳି, ବସ୍ତ୍ର ଭଳି, ଅନିତ୍ୟ କ୍ଷଣଭଙ୍ଗୁର ବୋଲି ଜାଣ । କେବଳ କହିଦେଲେ କାମ ଚଳିବ ନାହିଁ । ମନେ ରଖିଲେ, ଘୋଷି ଚାଲିଲେ ବି କିଛି କାମ ହେବନାହିଁ । ଜାଣିବାକୁ ପଡ଼ିବ । କାରଣ ଜାଣିନେବାରେ ହିଁ ମୁକ୍ତି, ନିର୍ଭୟତା, ଶାନ୍ତି ଇତ୍ୟାଦି ରହିଛି । ଶରୀର ମାଟିରେ ତିଆରି, ସିଏ ଦିନେ ମାଟିରେ ମିଶିଯିବ । ଏଭଳି ଯାହାଙ୍କର ଜ୍ଞାନ ହୋଇଗଲା, ସିଏ ଦେହ ବନ୍ଧନରୁ ମୁକ୍ତ ହୋଇଗଲା । ଯିଏ ଏୟା ଜାଣିନେଲା ଯେ 'ମୁଁ ହେଉଛି ଶରୀର', ବାସ୍ ସବୁ ଭ୍ରାନ୍ତି, ସବୁ ଦୁଃଖ, ଚିନ୍ତା, ଭୟ ଏଇଠୁ ଆରମ୍ଭ ହୋଇଯାଇଥାଏ । ଯେମିତି

ତୁମେ ନିଜର ବସ୍ତ୍ରକୁ ନିଜର ବୋଲି ମାନିନେଇଛ ଅଥବା ତୁମେ ନିଜ ଘରକୁ ନିଜର ହୋଇଥିବାର ମାନିନେଇଛ ଏହା ହେଉଛି ଯେମିତି ଭ୍ରମ, ସେହିପରି ତୁମେ ଏଇ ଶରୀରକୁ, ଯେଉଁଥିରେ ତୁମେ ରହୁଛ, ତାକୁ ନିଜର ବୋଲି ମାନିନେଇଛ । ଧର୍ମଶାଳାରେ କିଛି ସମୟ ପାଇଁ ରହିଛ, ସକାଳ ହେଲେ ଛାଡ଼ିଦେଇ ନିଜ ଯାତ୍ରାପଥରେ ବାହାରିପଡ଼ିବ । ଏଇ ଜୀବନ ଦୁଇ ଦିନର । ଯେଉଁଥିରୁ ଗୋଟିଏ ଦିନ ହେଉଛି ମୃତ୍ୟୁର, ଅନ୍ୟ ଦିନଟି ହେଉଛି ଜୀବନର । ତେଣୁ ନିଜର କଲ୍ୟାଣ କରିନିଅ । କାହିଁକି ଅହଂକାର କରୁଛ କ୍ଷଣିକ ଧନ, ବଳ, ପଦ, ରୂପକୁ ପାଇ ?

ଯାହା ତୁମର ନୁହେଁ ତାକୁ ତୁମେ ଆପଣାର ବୋଲି ମାନିନେଇଛ । ସେଥିପାଇଁ ଛଡ଼େଇ ନେବାର, ଭାଙ୍ଗିଯିବାର, ମରିଯିବାର ଭୟ ଲାଗିରହୁଛି । ଯାହା ହେଉଛି ତୁମର, ତାହା କେବେହେଲେ କାହା ଦ୍ୱାରା ଛଡ଼େଇ ନିଆଯାଇପାରିବ ନାହିଁ । ଅଭୟତା ତାକୁ ମିଳିଥାଏ, ଯିଏ ନିଜକୁ ଜାଣିନେଲା, ଯାହା ହେଉଛି ସତ୍ୟ, ଯାହାକୁ କେହି ଛଡ଼େଇ ନେଇପାରିବ ନାହିଁ । ଯାହା ତୁମର, ଯାହାର ତୁମେ ହେଉଛ ମାଲିକ, ତାକୁ ମାଗିବାର ଆବଶ୍ୟକତା ନାହିଁ । ତୁମକୁ ତ ପରମାତ୍ମା ତାହାର ମାଲିକ ବନାଇଛନ୍ତି ଏବଂ ଯାହା ତୁମର ନୁହେଁ, ତାକୁ କେତେ ଏକାଠି କରୁଛ କର, ବନ୍ଦ କରି ରଖ, ତୁମେ ତା'ର ମାଲିକ କେବେହେଲେ ହୋଇପାରିବ ନାହିଁ । ଯେମିତି ଆକାଶକୁ ମୁଠାରେ ବାନ୍ଧିପାରିବ ନାହିଁ ।

ଯିଏ କାମକୁ ବୁଝିଗଲା, କ୍ରୋଧକୁ ବୁଝିଗଲା, ଲୋଭକୁ ବୁଝିଗଲା, ମୋହକୁ ବୁଝିଗଲା ସିଏ ତା'ଠାରୁ ଦୂରକୁ ହଟିଯିବାରେ ଲାଗିଲା । କାମ, କ୍ରୋଧ, ଲୋଭ, ମୋହ ଦ୍ୱାରା ଆଜିଯାଏ କ'ଣ ମିଳିଲା ? କେବଳ ନର୍କ । ତୁମେ କାହା ଉପରେ କ୍ରୋଧାଗ୍ନିର ବର୍ଷା କଲ, ଗାଳିର ବର୍ଷା କଲ, ତା'ଉପରେ କ୍ରୋଧାଗ୍ନି, ଗାଳିର ପ୍ରଭାବ ପଡ଼ିବ ନା ପଡ଼ିବ ନାହିଁ ଏହା ତା'ଉପରେ ନିର୍ଭର କରିବ ଯେ ସିଏ ତାକୁ ଗ୍ରହଣ କରିବ ନା, କରିବ ନାହିଁ । କିନ୍ତୁ ତା' ଉପରେ ଅଗ୍ନିବର୍ଷା କରିବା ପୂର୍ବରୁ ପ୍ରଥମେ ତୁମକୁ ନିଜ ଭିତରେ ଅଙ୍ଗାର ତିଆରି କରିବାକୁ ପଡ଼ିବ । ସେଇ ଅଙ୍ଗାର ପ୍ରଥମେ ତୁମକୁ ଜଳାଇବ, ପୁଣି ତୁମେ ତାକୁ ଅନ୍ୟ ଉପରେ ବର୍ଷା କରିବାକୁ ଯିବ । ଏଇ ବେସୁର, ସେଇ ଛିଦ୍ର ତୁମ ଭିତରେ ତିଆରି ହେବ, ପୁଣି ସେଥିରେ ଘା' ହେବ, ଦୁର୍ଗନ୍ଧ ବାହାରିବ, ପୂଜ ବାହାରିବ। ଗାଳି, କ୍ରୋଧ କେଉଁ ଆକାଶରୁ ଗଳିଲା ଭଳି ନୁହେଁ । ତେଣୁ ଏହାକୁ ଶାନ୍ତ କରିବା ପାଇଁ ବୁଦ୍ଧି ଖଟାଅ ଯେ ଇଏ ମୁଁ କ'ଣ କରୁଥିଲି ଆଜି ଯାଏ ? ନିଜକୁ ହରାଇ, ନଷ୍ଟକରି, ଦୁଃଖୀକରି, କଷ୍ଟ ଦେଇ, ଜଳାଇ ଦେଇ ଅନ୍ୟକୁ ଜଳାଇବାର କି ପ୍ରକାର ମୂଢ଼ତା କରୁଥିଲି । କ୍ରୋଧ ପରେ, ଗାଳି ପରେ ତୁମେ ଦଣ୍ଡ ପାଇନଥାଅ ବରଂ କ୍ରୋଧ ସୃଷ୍ଟି କରିବା ଦ୍ୱାରା, ଗାଳିଦେବା ଦ୍ୱାରା, ତା'ର

ପ୍ରସ୍ତୁତି କରିବା ଦ୍ୱାରା ହିଁ କର୍ତ୍ତାକୁ ଦଣ୍ଡ ମିଳିଯାଇଥାଏ । ପୁଣି ସିଏ କ୍ୟାନସର୍‌ର ଭୟାନକ ରୂପ ଧାରଣ କରିବାରୁ ତୁମକୁ ପୁଣି ଦୁଇଥର ଦଣ୍ଡ ଭୋଗ କରିବାକୁ ପଡ଼ିଥାଏ ।

କେତେବେଳେ ସମ୍ବେଦନଶୀଳତା ଭିତରେ ଏଭଳି ବୁଡ଼ିଯାଅ ଯେ ଯେମିତି କି ତୁମେ ନାହଁ, ନା ସ୍ତ୍ରୀ, ନା ପୁରୁଷ, ନା ହିନ୍ଦୁ, ନା ମୁସଲମାନ, ନା ଯୁବକ, ନା ବୁଢ଼ା, ନା ଗରୀବ, ନା ଧନୀ, ନା କଳା, ନା ଗୋରା, ନା ବୁଦ୍ଧିମାନ, ନା ବୁଦ୍ଧିହୀନ । କେବେ କେବେ ପ୍ରେମରେ ଏମିତି ବୁଡ଼ିଯାଅ ଯେ ଏସବୁ ମିଥ୍ୟା ଦେହାଧ୍ୟାସ ଭୁଲି ହୋଇଯାଏ । କୌଣସି ଉପାଧି ଲେବୁଲ୍ ରହିନଯାଉ ଯେ ମୁଁ ହେଉଛି ଏଭଳି, ମୁଁ ସେଭଳି । ତୁମେ ରହିଯାଅ ନିରହଂକାର ହୋଇ, ନିର୍ବିକାର ଧଳା କାଗଜ ଭଳି, ଯାହା ଉପରେ କିଛି ଲେଖା ହୋଇନଥାଉ ।

ଅଜ୍ଞାନକୁ ସ୍ୱୀକାର କରିବା ହେଉଛି ଜ୍ଞାନ ଆଡ଼କୁ ଯିବାର ପ୍ରଥମ ପଦକ୍ଷେପ । ଅଜ୍ଞାନକୁ ସ୍ୱୀକାର କରିନେଲେ ଅହଂକାରର ମୃତ୍ୟୁ ହୁଏ । ଏହାଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଅନ୍ୟ କୌଣସି କଥା ନାହିଁ । ଅହଂକାର ନଷ୍ଟ ହେଉ ହେଉ ତୁମେ ହାଲୁକା ହୋଇଯିବ । ବର୍ତ୍ତମାନ ଆଉ କୌଣସି ପ୍ରକାରର ଡର ରହିବ ନାହିଁ ।

ଝିଟିପିଟି ଭାବୁଥାଏ ଛାତକୁ ମୁଁ ସମ୍ଭାଳୁଛି, ସେଥିପାଇଁ ସେ ତଳେ ଚାଲେନାହିଁ । ଗାଡ଼ି ତଳେ ଚାଲୁଥିବା କୁକୁର ଭାବୁଥାଏ ଯେ ମୁଁ ଗାଡ଼ିକୁ ଟାଣୁଛି । ସେହିଭଳି ବ୍ୟକ୍ତିର ବି ଭ୍ରମ ରହିଥାଏ ଯେ ମୁଁ ଦେହ, ପରିବାର, ଦେଶକୁ ଚଳାଉଛି ।

ଯେ ପର୍ଯ୍ୟନ୍ତ ମୁଁ ତିଷ୍ଠି ରହିଛି, ସେପର୍ଯ୍ୟନ୍ତ ସବୁକିଛି ଭୁଲ ହୋଇ ଚାଲିଥିବ । ଯେତେବେଳେ ମୁଁ ମରିଯିବ, ତା'ପରେ କିଛି ହେଲେ ବି ଭୁଲ ହୋଇପାରିବ ନାହିଁ । ଯାହା ପରମାତ୍ମାଙ୍କ ଦ୍ୱାରା ହୋଇଥାଏ, ତାହା ହିଁ ହେଉଛି ଠିକ୍ । ଯେତେବେଳେ ତୁମେ କହିଥାଅ ''ଏହା ମୁଁ କଲି' ବାସ୍ ସେଇଠି ଭୁଲ୍ ହୋଇଗଲା । କାମ, କ୍ରୋଧ, ଲୋଭ, ମୋହ, ଈର୍ଷା ଏସବୁ ଦେହ ଅହଂକାରର ମୂଳକୁ ଧରି ଛିଡ଼ା ହୋଇଛନ୍ତି । ଅହଂକାରର ନାଶ ହେଉ ହେଉ ସବୁ ଦେହାଧ୍ୟାସ ସ୍ୱତଃ ନଷ୍ଟ ହୋଇଯିବ ।



# ।। ଆତ୍ମଦର୍ଶନ ।।



ଇ ଆତ୍ମଦର୍ଶନ ଶବ୍ଦଟି ଠିକ୍ ନୁହେଁ । ଦର୍ଶନ ପାଇଁ ତ ଦୁଇର ଆବଶ୍ୟକ । ଗୋଟିଏ ହେଉଛି ଦେଖିବାବାଲା ଦ୍ରଷ୍ଟା, ଅନ୍ୟଟି ହେଉଛି ଦେଖାଯାଉଥିବା ଦୃଶ୍ୟ । ଆତ୍ମା ତ ହେଉଛି ଦ୍ରଷ୍ଟା, ସିଏ କେବେହେଲେ ଦୃଶ୍ୟ ହୋଇପାରିବ ନାହିଁ । ଯଦି ସେଇ ଦ୍ରଷ୍ଟା, ଦୃଶ୍ୟ ହୋଇଯିବେ, ତେବେ ଅନ୍ୟ ଦ୍ରଷ୍ଟାର ଅଭାବରେ ତାଙ୍କୁ କିଏ ଓ କିପରି ଦେଖିପାରିବ ?

କୁଣ୍ଡଳିନୀ ଜାଗ୍ରତ ହେଉଛି ମାଲୁମ ପଡ଼ିଗଲା, ଊର୍ଜା ମିଳିବାକୁ ଲାଗିଲା, ଜ୍ୟୋତିଦର୍ଶନ ହେଲା ତ ସେଇ ଦୃଶ୍ୟଗୁଡ଼ିକ ପ୍ରତି ଅଧିକ ଚିନ୍ତିତ ହୋଇଯାଆନା, ସିଏ ସବୁ ହେଉଛି ଦୃଶ୍ୟ । ଯିଏ ଜ୍ୟୋତିକୁ, କୁଣ୍ଡଳିନୀକୁ ଜାଗ୍ରତ ହେଉଥିବାର ଦେଖିଲା, ସେଇ ତୁମେ ହେଉଛ ହେଉଛ ସତ୍ୟ । ଦେଖିଚାଲ ଯାହାବି ଅନୁଭବ ହେଉଛି । ସେଥିରେ ଛନ୍ଦି ହୋଇଯାଅ ନାହିଁ, ତାକୁ ସତ୍ୟ ବୋଲି ମାନିନିଅ ନାହିଁ । ଅନୁଭବ ମାତ୍ରକେ ସବୁ କିଛି ହେଉଛି ସଂସାର । ତୁମେ ତ ଏତିକି କେବଳ ଧ୍ୟାନ ରଖ ଯେ ମୁଁ ହେଉଛି ଦ୍ରଷ୍ଟା, ଯାହାବି ଦେଖାଯାଉଛି, ତାହା ମୁଁ ନୁହେଁ । ଯାହା ବି ଅନୁଭବରେ ଆସୁଛି, ତାହା ମୁଁ ନୁହେଁ । ମୁଁ ତ ସବୁ ଅନୁଭବର ସେପାରିରେ ଛିଡ଼ା ହୋଇଛି ସାକ୍ଷୀ ଆତ୍ମା । କୌଣସି ବି ଅନୁଭବ, ଦର୍ଶନ, ପ୍ରାପ୍ତି ଇତ୍ୟାଦି ସତ୍ୟ ନୁହେଁ ଅର୍ଥାତ୍ ଧାର୍ମିକ ନୁହେଁ । ସବୁ ଅନୁଭବ ହେଉଛି ସାଂସାରିକ । ଯାହାଙ୍କୁ ଅନୁଭବ ହେଉଅଛି, ସିଏ ହେଉଛି ଧାର୍ମିକ, ସିଏ ହେଉଛି ସତ୍ୟ, ସିଏ ହିଁ ଆତ୍ମା, ସିଏ ହିଁ ତୁମେ । ଏଇ ଯାହା କିଛି ଦୃଶ୍ୟ ଅଛି ସେସବୁ ହେଉଛି ସଂସାର, କେବଳ ମୁଁ ଦ୍ରଷ୍ଟା ହିଁ ହେଉଛି ସତ୍ୟ । ଯେତେବେଳେ ସବୁ ଅନୁଭବ ଶୂନ୍ୟ ହୋଇଯିବ ଏବଂ କିଛି ବି ତୁମଠାରୁ ଭିନ୍ନ ଅନୁଭବରେ ନଆସିବ, ସେତେବେଳେ ତୁମେ ହିଁ ଏକମାତ୍ର ସତ୍ୟ ଶେଷରେ ରହିଯାଉଛ ।

**ଅହଂ ବ୍ରହ୍ମାସ୍ମି, ମୁଁ ହିଁ ବ୍ରହ୍ମ, ଅନଲ ହକ** ଅର୍ଥାତ୍ ମୁଁ ହିଁ ହେଉଛି ସତ୍ୟ । ଏହା ପାଇବାର ଘୋଷଣା ନୁହେଁ । ସିଏ ତ ଥିଲା, କେବଳ ଆଜି ଆପଣାର ସତ୍ୟ ସ୍ୱରୂପକୁ ଚିହ୍ନିଲି । ଏମିତି କ'ଣ

ହୋଇଗଲା ଯେ ଆଜି ତୁମେ ଜୀବରୁ ବ୍ରହ୍ମ ହୋଇଗଲ ? ଯାହା ପ୍ରଥମରୁ ନଥିଲା, ସିଏ ଆଜି କିପରି ବ୍ରହ୍ମ ହୋଇପାରିବ ? ଯାହା ତୁମେ ନୁହଁ ତାହା କିପରି ହୋଇପାରିବ ? ଯାହା ତୁମେ, ତାହା ହିଁ ତୁମେ ହୋଇପାରିବ ।

ପରମାତ୍ମାଙ୍କ ଭଜନ ଅଖଣ୍ଡ ସେତେବେଳେ ହୋଇପାରିବ, ଯେତେବେଳେ ତୁମର ଏଇ ସ୍ମରଣ ହୋଇଯିବ ଯେ ମୁଁ ହେଉଛି ପରମାତ୍ମା, ସେତେବେଳେ ତୁମର ଅଖଣ୍ଡତାକୁ କେହି ନଷ୍ଟ କରିବାକୁ ସମର୍ଥ ନୁହଁନ୍ତି । ପୁଣି ଶୋଇବା, ଉଠିବା ସମୟରେ ତୁମର ଏଇ ହୋଶ୍ ରହିଥାଏ ଯେ ମୁଁ ସବୁ ସମୟରେ, ସବୁ ଅବସ୍ଥାରେ, ସବୁ କାଳରେ ଅଛି । ଏଇ ମୁଁ ର ହୋଶ୍ ରହିବା ହିଁ ହେଉଛି ପରମାତ୍ମାଙ୍କର ଅଖଣ୍ଡତା ।

ମନୁଷ୍ୟ ବାହାରେ ଯାହା ଦେଖିଥାଏ ତାହା ହେଉଛି ଦୃଶ୍ୟ ଏବଂ ଦେହ ଭିତରେ ଯିଏ ଦେଖିବାବାଲା ଅଛନ୍ତି, ସେ ହେଉଛନ୍ତି ଦ୍ରଷ୍ଟା ପୁରୁଷ । ଦୃଶ୍ୟକୁ ଦେଖିବା ଦର୍ଶନ ନୁହେଁ । ଦ୍ରଷ୍ଟାକୁ ସ୍ୱରୂପରେ, ଆତ୍ମରୂପରେ ଦେଖିନେବା ହିଁ ଦର୍ଶନ ।

ଯଦି ପୁଷ୍ପର ରଙ୍ଗକୁ, ସୁଗନ୍ଧକୁ ଦେଖି, ପକ୍ଷୀର କଳରବକୁ ଶୁଣି ଆଖି ପ୍ରେମରେ ଭିଜି ଯାଉନି ତେବେ ସେଇ ପ୍ରାର୍ଥନା ହେଉଛି ଶୁଖିଲା ଶୁଖିଲା । ଲୁହ ଖବର ଦେଇଥାଏ ଯେ ତୁମର ନଇଁପଡ଼ିବା, ତୁମରି ପ୍ରାର୍ଥନା ହୃଦୟରୁ ହୋଇଛି । ଉଦିତ ସୂର୍ଯ୍ୟକୁ, ଚନ୍ଦ୍ରର ସୌନ୍ଦର୍ଯ୍ୟକୁ ଦେଖି, ମେଘଖଣ୍ଡର ଭାସିବୁଲିବା, ବର୍ଷା କରୁଥିବାର ଦେଖି, ପିଲାମାନଙ୍କୁ ହସୁଥିବାର ଦେଖି ଯଦି ତୁମର ଆଖିରେ ଲୁହ ଭରିଯାଏ ତେବେ ତ ସିଏ ପ୍ରଭୁପୂଜା, ପ୍ରଭୁ ଭକ୍ତି ହୋଇଗଲା ।

ଯିଏ ନଷ୍ଟ ହେବାର ଅଛି ସେଇ ଦୃଶ୍ୟବସ୍ତୁ ତୁମେ ନୁହଁ । ଯିଏ ଯାଉଥାଏ – ଆସୁଥାଏ, ସିଏ ତୁମେ ନୁହଁ । ଯିଏ ସର୍ବଦା ଅଛି, ସିଏ ହିଁ ତୁମେ । ତତ୍ତ୍ୱମସି । ସିଏ ଏକମାତ୍ର ସତ୍ୟ, ଯାହା କେବେ ଆସିନାହିଁ, କି କେବେ ଯାଇନାହିଁ ।

ତୁମେ କହୁଛ ତ ପରମାତ୍ମା କହୁଛନ୍ତି । ତୁମେ ଶ୍ୱାସ ନେଉଛ ତ ପରମାତ୍ମା ଶ୍ୱାସ ନେଉଛନ୍ତି । ସେ ହେଉଛନ୍ତି ବୃକ୍ଷ ଭିତରେ ବୃକ୍ଷ, ପକ୍ଷୀ ଭିତରେ ପକ୍ଷୀ, ହାତୀ ଭିତରେ ହାତୀ, ପିମ୍ପୁଡ଼ି ଭିତରେ ପିମ୍ପୁଡ଼ି, ସ୍ତ୍ରୀ ଭିତରେ ସ୍ତ୍ରୀ, ପୁରୁଷ ଭିତରେ ପୁରୁଷ । ପୁଣ୍ୟାତ୍ମାଙ୍କ ଭିତରେ ଧାର୍ମିକ, ପାପାତ୍ମାଙ୍କ ଭିତରେ ପାପୀ, ଅଧର୍ମୀ, ପିଲାମାନଙ୍କ ଭିତରେ ପିଲା, ବୁଢ଼ାମାନଙ୍କ ଭିତରେ ବୁଢ଼ା । ନରକ ଭିତରେ ନାରକୀୟ ଓ ସ୍ୱର୍ଗ ଭିତରେ ସ୍ୱର୍ଗୀୟ । ପରମାତ୍ମା ହେଉଛନ୍ତି ସାର୍ବଭୌମ । ଏହାଠାରୁ ଅଧିକ ସାଧାରଣ କିଏ ହେବ ? ଅଣୁରୁ ଅଣୁ ଭିତରେ ବି ସିଏ, ଅନନ୍ତ ଭିତରେ ବି ଅନନ୍ତ ସିଏ ।

**'ଅପ୍ପୋ ଦୀପୋ ଭବ'** ନିଜର ଦୀପ ନିଜେ ବନିଯାଅ । ଅନ୍ୟର ଆଲୁଅରେ କେତେ ଦିନ ପର୍ଯ୍ୟନ୍ତ ଚାଲିଥିବ । ତାଙ୍କର ମାର୍ଗ ଅଲଗା, ତାଙ୍କର ରୋଷଣୀ ତାଙ୍କ ସାଙ୍ଗରେ ରହିଥିବ । ତୁମର ଆଲୁଅରେ ଯାହା ଦେଖାପଡ଼ିବ, ତା' ଉପରେ ତୁମର ଆସ୍ଥା, ଶ୍ରଦ୍ଧା ଅଟଳ ରହିବ ।

ଯାହା ଦେଖାପଡୁଛି, ଅନୁଭବରେ ଆସୁଛି ତାକୁ ସ୍ୱପ୍ନ ବୋଲି ଜାଣ । ଯେଉଁଦିନ କିଛି ଦେଖାନଯିବ, କିଛି ଅନୁଭବରେ ନଆସିବ, କେବଳ ସାକ୍ଷୀ ରହିଯିବ, ଦୃଶ୍ୟ ହଜିଯିବ, ଦେଖିବାବାଲା ହିଁ ବଞ୍ଚିରହିବ, ବାସ୍ ତୁମେ କେବଳ ରହିଯିବ–ଏହାହିଁ ହେଉଛି ଆତ୍ମଦର୍ଶନ, ଆତ୍ମସାକ୍ଷାତ୍‌କାର, ନିର୍ବାଣ, ମୁକ୍ତି, ସହଜସମାଧି । ଯେ ପର୍ଯ୍ୟନ୍ତ ତୁମ ଆଗରେ ବା ଧ୍ୟାନରେ ଅନ୍ୟ କେହି ଅଛି, ସେସବୁ ହେଉଛି ଅନାତ୍ମା, ଦୃଶ୍ୟ ଏବଂ ମନର ଭୋଗ । ସିଏ ଲକ୍ଷ୍ୟ ନୁହେଁ, ସିଏ ହିଁ ମାର୍ଗ, ତାକୁ ତୁମେ ଲକ୍ଷ୍ୟଠାରୁ ଦୂରରେ ବୋଲି ଜାଣ ।

ତୁମେ ଏଇ ମୁହୂର୍ତ୍ତରେ ବାହାର ପରମାତ୍ମାଙ୍କ ପାଇଁ ଯାଅ ନାହିଁ । ପରମାତ୍ମା ହେଉଛନ୍ତି ନିତ୍ୟ, ବର୍ତ୍ତମାନ, ଅଖଣ୍ଡ, ତୁମ ଭିତରେ ବି ଅଛନ୍ତି, ତୁମେ ହିଁ ସିଏ ମିଳି ସାରିଛନ୍ତି । ମୋକ୍ଷ ତୁମ ଘର ଭିତରେ ହିଁ ଅଛି, ସିଏ ବାହାରେ କେଉଁ ଆକାଶ, ପାତାଳ, ସ୍ୱର୍ଗ ବୈକୁଣ୍ଠରେ ଖୋଜିବା ଭଳି ପରିଚ୍ଛନ୍ନ ଏକାଦେଶୀୟ ଜଡ଼ବସ୍ତୁ ନୁହେଁ ।

ସ୍ମରଣ ବାହାର ଲୋକର, ଅନ୍ୟର କରିବାକୁ ପଡ଼ିଥାଏ । ଶୁଆଭଳି ତାକୁ ରଟୁଥାନ୍ତି, ବାରମ୍ବାର ଭୁଲି ବି ଯାଇଥାନ୍ତି । ରାମ–ରାମ ଲୋକେ ରଟି ଚାଲିଥାନ୍ତି । ତାହା କଣ୍ଠରେ ରହିବ କିନ୍ତୁ ଯିଏ ଥରେ ହୃଦୟ ଭିତରକୁ ଚାଲିଗଲା ତାକୁ କେବେହେଲେ ଭୁଲି ହେବନାହିଁ । ତା'ର ସ୍ମୃତି ଚାରଣ ହୋଇ ଚାଲିଥିବ, କରିବାକୁ ପଡ଼ିବନାହିଁ । ସ୍ମରଣ ବି ଦୁଇ ଭିତରେ ହୋଇଥାଏ । ଯେଉଁଠି ନଦୀ, ସାଗରରେ ମିଶିଗଲା ସେଇଠି ସିଏ କିପରି ମନେ ପକାଇବ ଯେ ମୁଁ ଗଙ୍ଗାଥିଲି, ବର୍ତ୍ତମାନ ସାଗର ହୋଇଗଲି । ଯଦି ସେଠାକୁ ଯାଇ ବି ଗଙ୍ଗାକୁ, ଗଙ୍ଗାପଣିଆର ସ୍ମରଣ ରହୁଥାଏ, ତେବେ ସିଏ ସାଗରରେ ମିଶି ହିଁ ନାହିଁ ।

ଅଜ୍ଞାନୀ ସାଧକ ଆତ୍ମାର ପରିଚୟ ଏହିଭଳି ଦେଇଥାଏ ଯେ ଆତ୍ମା ହେଉଛି କୌଣସି ବସ୍ତୁ । ଯଥା ଘର ଭିତରେ ଆଲମାରି, ରେଡ଼ିଓ, ଟି.ଭି, ଇତ୍ୟାଦି ଭଳି ସେ ଅଛି । ସେହି ଭଳି ଲୋକେ କହିଥାନ୍ତି ମୋ ଭିତରେ ଆତ୍ମା ଅଛି । ଦେହ ଭିତରେ ପରମାତ୍ମା ଅଛନ୍ତି । ଯେତେବେଳେ ଏହିଭଳି କହନ୍ତି ସେତେବେଳେ ପୁଣି ତାଙ୍କ ମନରେ ଆତ୍ମା, ପରମାତ୍ମାଙ୍କୁ ଖୋଜିବାର ଅଶ୍ୱସ୍ତି ହୋଇଥାଏ ।

ଧ୍ୟାନ ଦିଅ ! ଯଦି ଆତ୍ମା, ପରମାତ୍ମା ଭିତରେ ରଖା ହୋଇଥିବା ବସ୍ତୁ ଭଳି ହୋଇଥାନ୍ତି, ତେବେ ସେମାନଙ୍କୁ ଖୋଜିବାକୁ ଭିତରକୁ କିଏ ଯିବ ? ଯଦି ଆତ୍ମା ହେଉଛି ଭିତରେ ରଖା ହୋଇଥିବା ବସ୍ତୁ ତେବେ ପୁଣି ବାହାରକୁ ଗଲା କିଏ ? ନା ଆତ୍ମାକୁ ଭିତରେ ବୋଲି କୁହ, ନା ଆତ୍ମାକୁ ବାହାରେ ବୋଲି କୁହ, ନା ତାକୁ ଭିତରକୁ ଯିବା ବାଲା କୁହ, ନା ବାହାରକୁ ଯିବାବାଲା କୁହ । ସିଏ ନିରନ୍ତର ଅଛନ୍ତି । କେଉଁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସରୋବର ପରି ନୁହଁ, ସିଏ ନଦୀର ପ୍ରବାହ ପରି, ନିରନ୍ତର ପ୍ରବାହ ଭଳି, ଆକାଶ ପରି ସର୍ବବ୍ୟାପକ । ଏଇ ଯେଉଁ ବାହାର–ଭିତର , ଯିବାବାଲା, ଆସିବାବାଲା ଚୈତନ୍ୟ, ଇଏ ସେଇ ଆତ୍ମା, ଇଏ ସେଇ ପରମାତ୍ମା, ଇଏ ହିଁ ତୁମେ ।

ଯଦି ତୁମେ ଭିତରେ ବୁଡ଼ିଗଲ, ତେବେ ତୁମେ ଶରୀରରେ ଥାଇ ବି ଅଶରୀରୀ ଆତ୍ମାର ଅନୁଭବ କରିବ । ଯେଉଁଠି ତୁମେ ନିଜକୁ ଆତ୍ମା ରୂପରେ ଜାଣିଲ, ସେଇଠି ତୁମେ ଦେହର ଷଡ ବିକାର ଠାରୁ ଯେ ଭିନ୍ନ ତାହା ତତ୍‌କ୍ଷଣାତ୍ ଅନୁଭବ କରିବ । ଆତ୍ମାରେ କୌଣସି ବିକାର ନାହିଁ । ଦେହରେ ହିଁ ସବୁ ରୋଗ, ବିକାର ହୋଇଥାଏ ।

ତୁମେ ତାକୁ ପାଇଯାଅ, ଯିଏ ପାଇବାକୁ ବାହାରିଛି ଅର୍ଥାତ୍ ସ୍ୱୟଂକୁ ଜାଣିନିଅ । ପରମାତ୍ମାଙ୍କୁ ପାଇଲେ ବି କ'ଣ କରିବ, କାରଣ ତୁମେ ତା'ଠାରୁ ଭିନ୍ନ ହୋଇ ରହିବ, ଦ୍ୱନ୍ଦ୍ୱ ହିଁ ରହିବ । ପାଇବାବାଲାକୁ କେମିତି ପାଇବ ?

ପରମାତ୍ମାଙ୍କ ପାଖକୁ ଆସିବାର ଗୋଟିଏ ମାତ୍ର ଉପାୟ ହେଉଛି ଯେ ତୁମେ ଏୟା ବୁଝିନିଅ ମୁଁ ନାହିଁ । ଏହି ପରି ତୁମେ ନିଜ ପାଖରେ ରହି ପାରିବ । ଯେତିକି ପରିମାଣରେ ମୁଁ ମଜବୂତ ହେବ, ସେତିକି ତୁମେ ନିଜ ଠାରୁ ଦୂରରେ ରହିବ, ସେପର୍ଯ୍ୟନ୍ତ ତୁମେ ବାଟ ହୁଡୁଥିବ । ଏଇଠି ମୁଁ'ର ପତନ ହେଲା ତ ତୁମକୁ ନିଜର ବାସ୍ତବିକତା ସହିତ ମିଳନ ହେଲା । ପ୍ରଥମଥର ତୁମର ନିଜ ସହିତ ସାକ୍ଷାତ୍‌କାର ହେବ ।

ତୁମେ ଗୁରୁ ବା ପରମାତ୍ମାଙ୍କ ଯେତେ ସୁନ୍ଦର ଢଙ୍ଗରେ ସ୍ତୁତିକର, ପ୍ରାର୍ଥନା କର, ଗୀତ ଗାଅ, ନାଚ, ତାହାଦ୍ୱାରା କିଛି ହେବନାହିଁ । ତୁମେ ନିଜ ଭିତରକୁ କେବେ ଫେରିବ ? ସ୍ତୁତିରେ ସମୟ ନଷ୍ଟ କରନାହିଁ । ବହୁତ ସ୍ତୁତି, ମନ୍ଦିର, ମସ୍‌ଜିଦ୍, ପ୍ରାର୍ଥନା, ପୂଜା କରି ସାରିଲଣି, କ'ଣ ପାଇଲ ? ହାତ ଖାଲି କି ଖାଲି । ବର୍ତ୍ତମାନ ଭିତରର ମନ୍ଦିରକୁ ଯାଅ, ସେଇଠି ଅନାହଦ ନାଦକୁ ଜଗାଅ । ଅସଲି ମନ୍ଦିରର ଘଣ୍ଟା ଶୁଣ, ଯିଏ ତୁମରି ଭିତରେ ଶୋଇଛନ୍ତି ତାକୁ ଜଗାଅ । ନିଜର ଅନ୍ୱେଷଣ କର ଯେ ମୁଁ କିଏ ? ନିଜକୁ ଜାଣିଲେ ତ ପରମାତ୍ମାଙ୍କୁ ଜାଣିପାରିବ, କାରଣ ପରମାତ୍ମା ହେଉଛନ୍ତି ତୁମର ସ୍ୱଭାବ । ତୁମର ହେବା ତୁମର ଅସ୍ତିତ୍ୱ । ତୁମେ କାହାର ବି ଯଦି ଆଶ୍ରୟ ନେଲ

ତ ବାଟ ହୁଡ଼ିଯିବ । ସିଏ ଦିନେ ଚାଲିଯିବ । ଗୁରୁ ହେଉଛନ୍ତି ସିଏ, ଯିଏ ଜିଜ୍ଞାସୁଙ୍କୁ ସବୁ ଦିଗରୁ ହଟାଇ ନେଇ ନିଜ ଉପରକୁ ଫେରାଇ ଆଣିବେ । ଗୁରୁ ପରମାତ୍ମାଙ୍କ ଭିତରେ, ନିଜ ଭିତରେ ପ୍ରବେଶ କରିବାର ଦ୍ୱାର ହୋଇଯାନ୍ତି, ପାଚେରୀ ହୁଅନ୍ତି ନାହିଁ । ସିଏ ନିଜ ଭିତରେ ଅଟକାଇ ରଖନ୍ତି ନାହିଁ ।

ମୁଁ ସର୍ବଦା ସ୍ୱୟଂରେ ଅବସ୍ଥିତ । ମୁଁ ହେଉଛି ସର୍ବଦା ନିର୍ବିଭାଗ ଅର୍ଥାତ୍ କୌଣସି ଭେଦ, କୌଣସି ବିଭାଜନ ମୁଁ ଠାରେ ନାହିଁ । କୌଣସି ଖଣ୍ଡ ମୁଁ ଠାରେ ନାହିଁ । ନା କୌଣସି ପ୍ରବୃତ୍ତି ଅଛି, ନା କୌଣସି ନିବୃତ୍ତି ଅଛି । ନା କାହା ସହିତ ଆନ୍ତିରକତା ଅଛି ନା କାହା ସହିତ ବିଦ୍ୱେଷ ଅଛି । ମୁକ୍ତ ହୋଇଗଲ ସବୁ ଦ୍ୱନ୍ଦର ଜାଲରୁ । ନା ବନ୍ଧନ ଅଛି, ନା ମୁକ୍ତି । ଯେତେବେଳେ ଗୁରୁ ଶିଷ୍ୟ ନାହିଁ, ସେତେବେଳେ କିଏ ମୋ' ପାଇଁ ଉପଦେଶକ ହେବ, କିଏ ବେଦ ଶାସ୍ତ୍ର ହେବ । କେହି ନୁହନ୍ତି ।

ସେହି ଚେହେରାକୁ ଖୋଜ, ଯାହା ତୁମର ଏଇ ଶରୀରର ଜନ୍ମ ପୂର୍ବରୁ ଥିଲା, ଯେଉଁ ଚେହେରା ଦେହର ମୃତ୍ୟୁ ପରେ ରହିଥାଏ । ଜନ୍ମ-ମୃତ୍ୟୁର ମଧ୍ୟବର୍ତ୍ତୀ ଚେହେରା ତ ପିତା-ମାତାଙ୍କ ଠାରୁ ପ୍ରାପ୍ତ ହୋଇଛି । ଏହା ତୁମେ ନୁହଁ କି ଏହା ତୁମର ନୁହେଁ ।

ମୁଁ ଓ ତୁ ଏକ ମୁଦ୍ରାର ଦୁଇଟି ପାର୍ଶ୍ୱ । ତୁ' ପାଇଁ ମୁଁ' ଛିଡ଼ା ହୋଇଛି । ଜ୍ଞାନୀଙ୍କ ପାଇଁ ତୁ' ନଷ୍ଟ ହୋଇଯାଇଥାଏ । ଏବଂ ତୁ' ନଷ୍ଟ ହେଉ ହେଉ ମୁଁ' ଓ ଆମେ ସର୍ବନାମ ବି ନଷ୍ଟ ହୋଇଯାଏ । 'ତୁ' ଚାଲିଗଲା ତ 'ମୁଁ' ବଞ୍ଚିପାରିବ ନାହିଁ । କାହାକୁ କହିବା 'ମୁଁ' ଯେତେବେଳେ କେହି 'ତୁ' ଆଗରେ ହିଁ ନାହିଁ । 'ମୁଁ' ର କୌଣସି ପ୍ରୟୋଜନ ହିଁ ରହିଯାଇନଥାଏ । ମୁଁ' ଓ ତୁ' ଏକାସାଙ୍ଗରେ ବଞ୍ଚିରହିଥାନ୍ତି । ତୁମେ କିପରି କହିବ ମୁଁ ଅଛି, ଯେପର୍ଯ୍ୟନ୍ତ ତୁମ ଆଗରେ ଅନ୍ୟ କେହି ନରହିଥିବେ । ଯେତେବେଳେ ଭକ୍ତ ନଷ୍ଟ ହୋଇଗଲା, ସେତେବେଳେ ଭଗବାନ କାହା ପାଇଁ ବଞ୍ଚିବେ ? ଭଗବାନ ବି ଶୂନ୍ୟ ହୋଇଯାଇଥାନ୍ତି ।

ଯଦି କେହି ଜ୍ଞାନୀ କହୁଥାନ୍ତି – 'ମୁଁ' ତେବେ ବୁଝିଯାଅ ବର୍ତ୍ତମାନ ତାଙ୍କ ଦୃଷ୍ଟିରୁ 'ତୁ' ଯାଇନାହିଁ । 'ତୁ' ର ଛାଇ ହିଁ ହେଉଛି 'ମୁଁ' । ଯଦି କେହି ତୁମର ଦୃଷ୍ଟିରେ 'ତୁ' ନୁହେଁ, ତେବେ 'ମୁଁ' କିପରି ହୋଇପାରିବ ? ମୁଁ ପଛରେ ଆସିଥାଏ, ପ୍ରଥମେ ତୁ ଆସିଥାଏ, ତୁ ଚାଲିଗଲା ପରେ ମୁଁ ଚାଲିଯାଇଥାଏ ।

ଯେଉଁଠି ଏକରୂପର ଜ୍ଞାନ ହୋଇଗଲା ସେଇଠି ଅଶାନ୍ତିର ସ୍ଥାନ ରହେ ନାହିଁ । ଅଶାନ୍ତି ହେଉଛି ଅନେକତାର ଛାୟା ଏବଂ ଯାହାଙ୍କ ପାଇଁ ଜଗତ ଦର୍ପଣ ହୋଇଗଲା, ସବୁ ଦିଗରୁ ତୁମେ

ହିଁ ସେଥିରେ ଝଲସୁଛ, ତୁମରି ବିନା ଅନ୍ୟ କେହି ନାହିଁ, ତେଣୁ ଭୟ କାହାର, ଗ୍ରହଣ-ତ୍ୟାଗ କାହାର ? ଜନ୍ମ ଓ ମୃତ୍ୟୁ ଏବଂ ସୁଖ-ଦୁଃଖ ବି ହେଉଛ ତୁମେ, ତେଣୁ ତୁ ଓ ମୁଁ ବି ଗଲା । ଦୃଶ୍ୟ ଗଲା ତ ଦ୍ରଷ୍ଟା କେଉଁଠି ରହିବ ? ମୁଁ ହେଉଛି ଏୟା, ଏହା ମୁଁ ନୁହେଁ ଏହି ପ୍ରକାରର ବିଭାଗକୁ ଛାଡ଼ିଦିଅ । ସବୁ ଆତ୍ମା ହେଉଛି ମୁଁ, ଯାହା ଦେଖାଯାଉଛି ସେସବୁ ହେଉଛି ମୋର ଛାୟା । ଏହିଭଳି ନିଶ୍ଚୟ କରି ନେଇ କାହା ସହିତ ବାନ୍ଧିହୋଇ ଯାଅନା । ଭଲ-ମନ୍ଦର ନିର୍ଣ୍ଣୟ କର ନାହିଁ । ତୁମେ ବିଭାଗ ତିଆରି କରିବା ଛାଡ଼ିଦିଅ ଏବଂ ତାକୁ ଦେଖିବା ଆରମ୍ଭ କରିଦିଅ, ଯିଏ ସବୁ ଭିତରେ ଅବିଭାଜ୍ୟ ହୋଇ ରହିଛି । ଯିଏ ହେଉଛି ଆତ୍ମା, ସିଏ ହିଁ ତୁମେ, ତୁମେ ସବୁ ରୂପରେ ରହିଛ ।

ଯେତେବେଳେ ପ୍ରାଣକୁ ଭୋକ-ଶୋଷ ଲାଗିଥାଏ ତୁମେ ତାକୁ ଅନୁଭବ କରିଥାଅ, ପୁଣି ଜଳ-ଅନ୍ନ ଦେଇ ତାକୁ ଶାନ୍ତ ହେଉଥିବାର ବି ଦେଖିଥାଅ । ନା ତୁମେ ଭୋକିଲା-ଶୋଷିଲା ହୋଇଥାଅ, ନା ଖାଇ-ପିଇ ଶାନ୍ତ ହୋଇଥାଅ । ପୀଡ଼ା ପ୍ରାଣକୁ ହୋଇଥିଲା ସେତେବେଳେ ତାକୁ ଭୋଜନ, ପାଣି ଦେଇ ଶାନ୍ତ କଲ । ଶରୀରରେ ରୋଗ, ଅଙ୍ଗଗୁଡ଼ିକରେ ରୋଗ ଥିଲା, ତାକୁ ଔଷଧ, ଉପଚାର ଦ୍ୱାରା ଠିକ୍ କଲ । ପ୍ରତ୍ୟେକ କ୍ରିୟାରେ ଏଇ ହୋଶ୍ ରହୁ ଯେ ଏସବୁ ହେଉଛି ଦେହ, ଇନ୍ଦ୍ରିୟ, ପ୍ରାଣ, ମନ ଇତ୍ୟାଦିର ଅବସ୍ଥା, ମୁଁ ତା'ଠାରୁ ଦୂରରେ, ମୁଁ ତା'ଠାରୁ ପୃଥକ୍ । ମୁଁ ହେଉଛି କେବଳ ଜାଣିବାବାଲା, ଦେଖିବା ବାଲା, ସାକ୍ଷୀ-ଆତ୍ମା । **ହୋଶ୍‌କୁ କୌଣସି ଅବସ୍ଥାରେ ହଜିଯିବାକୁ ଦିଅନା । ନିଜକୁ ପ୍ରତ୍ୟେକ କ୍ରିୟାଠାରୁ, ଅବସ୍ଥା ଠାରୁ ଅଲଗା କରି ରଖ ।** ଦେହ ସହିତ କଦାପି ଯୋଡ଼ିହୁଅ ନାହିଁ, ତେଣୁ ଅନ୍ତିମ ଘଟଣା ଯାହା ମୃତ୍ୟୁ ଦ୍ୱାରା ଘଟିବ, ସେ ସମୟରେ ବି ତୁମେ ତା'ଠାରୁ ଦୂରରେ ରହିଥିବ । ଦେଖି ପାରିବ ଯେ ମୃତ୍ୟୁ ଆସୁଛି ଶରୀରକୁ, ମୋତେ ନୁହେଁ । ଦେହ ବସ୍ତ୍ରକୁ ଜୀବ ବଦଳାଇଥାଏ, ମୃତ୍ୟୁ ହୋଇନଥାଏ । ଦେହ ହେଉଛି ଏକ ବସ୍ତ୍ର, ଯାହାକୁ ଜୀବ କର୍ମାନୁସାରେ ଧାରଣ କରିଥାଏ । ଜ୍ଞାନୀଙ୍କ ଦୃଷ୍ଟିରେ ସିଏ ସ୍ୱୟଂ ମରିନଥାଏ, କାରଣ ସିଏ ନିଜ ଦୃଷ୍ଟିରୁ ହେଉଛି ଆତ୍ମା । ଅଜ୍ଞାନୀଙ୍କ ଦୃଷ୍ଟିରେ ଜ୍ଞାନୀ ମରିଥାଏ । କାରଣ ଅଜ୍ଞାନୀ ନିଜ ଦୃଷ୍ଟିରୁ ନିଜକୁ ଓ ଜ୍ଞାନୀଙ୍କୁ ବି ଶରୀର ବୋଲି ମାନିନେଇଥାଏ, ସେଥିପାଇଁ ତାଙ୍କ ଦୃଷ୍ଟିରେ ଉଭୟ ହିଁ ମରିଥାନ୍ତି । ଯିଏ ଅଛି ସିଏ ସର୍ବଦା ରହିବ, ଯେମିତି ଆତ୍ମା । ଯିଏ ନାହିଁ ସିଏ ରହିବ ନାହିଁ, ଯେମିତି ଶରୀର ।

ସାଧକ ତୀର୍ଥଯାତ୍ରା କରିଥାଏ, ପୂଜା-ପାଠ କରିଥାଏ, ବ୍ରତ-ଉପବାସ କରିଥାଏ କେବଳ ଅହଂକାରକୁ ବଢ଼ାଇବା ପାଇଁ । ନଦୀ ସାଗରରେ ମିଶିଗଲେ ତା'ପରେ ଶାନ୍ତ ହୋଇଥାଏ । ତୁମେ ନିଜର ବ୍ୟଷ୍ଟି ଅହଂକାରକୁ ସମଷ୍ଟି ଚୈତନ୍ୟରେ ମିଶାଇଦିଅ, ସେଇ ମୁହୂର୍ତ୍ତରେ ଆନନ୍ଦ ସାଗରରେ ବୁଡ଼ିଯିବ ।

ଯାହା ବି ଭଲ–ମନ୍ଦ କର୍ମ କରୁଛ, ସବୁ ସେଇ ଚୈତନ୍ୟରେ ବୁଡ଼ିଯାଇ ହିଁ କରୁଛ । ସେଇ ଚୈତନ୍ୟ ଅନ୍ତରାତ୍ମାକୁ ସାଙ୍ଗରେ ନେଇ ହିଁ କରୁଛ ।

ପଥର, ମୂର୍ତ୍ତି, ଚିତ୍ର, ଯାହା ହେଉଛି ଚିତ୍ରକାର ବା ମୂର୍ତ୍ତିକାରର ମନର ଖେଳନା, ତା' ଆଗରେ ନଇଁପଡୁଛ କିନ୍ତୁ ପରମାତ୍ମାଙ୍କ ତିଆରି ସୂର୍ଯ୍ୟ, ଚନ୍ଦ୍ର, ବୃକ୍ଷ, ଗଛ, ପୁଷ୍ପ, ଫଳ, ଜଳକୁ ଦେଖି ପାଷାଣ ହୃଦୟଧାରୀ ମନୁଷ୍ୟମାନଙ୍କର ହାତ ଯୋଡ଼ି ହୋଇପାରୁ ନାହିଁ, କି ତାଙ୍କର ବେକ ନଇଁ ପାରୁନାହିଁ ।

ତୁମେ ଯେଉଁଠି ଅଛ, ଯେମିତି ଅଛ, ସତ୍ୟରେ ହିଁ ଛିଡ଼ା ହୋଇଛ । ସତ୍ୟ ହେଉଛି ତୁମର ସ୍ୱଭାବ, ପ୍ରତ୍ୟେକ ଶ୍ୱାସ ପ୍ରଶ୍ୱାସରେ ସିଏ ଯିବାଆସିବା କରିଥାନ୍ତି । ସିଏ ଶ୍ୱାସକୁ ଗ୍ରହଣ କରୁଛନ୍ତି । ପରମାତ୍ମା ତୁମ ଭିତରେ ଅଛନ୍ତି ଏମିତି କୁହ ନାହିଁ । ପରମାତ୍ମାଙ୍କ ଭିତରେ ହିଁ ତୁମେ ଅଛ । ସିଏ ହେଉଛନ୍ତି ତୁମର ଦେହ, ମନ, ପ୍ରାଣ, ରକ୍ତ । ତାକୁ କେବେହେଲେ ହଜେଇ ନାହଁ, କେବଳ ବିସ୍ମରଣ କରିଛ, ତେଣୁ ସ୍ମରଣକୁ ଅଣାଯାଇ ପାରିବ । ସତ୍ୟକୁ ଧରିବାର ନାହିଁ, ଅସତ୍ୟକୁ ଛାଡ଼ିବାର ଅଛି ।

ସତ୍ୟର ଅନ୍ୱେଷଣ କହିବା ଭୁଲ୍ । କିଏ ଖୋଜିବ ସତ୍ୟକୁ ସତ୍ୟର ଅଭାବରେ । ସତ୍ୟ ହେଉଛି ସିଏ । ମିଳିସାରିଛି । ମାର୍ଗରୁ ବାଧାଗୁଡ଼ିକୁ ହଟାଇବାର ଅଛି । ପାଣି ଝରଣା ତଳେ ଲୁଚି ରହିଛି, ଚଟାଣ ଭାଙ୍ଗିବାର ଅଛି, ମାଟି ହଟାଇବାର ଅଛି, ପାଣି ଆଣିବାର ନାହିଁ । ସୂର୍ଯ୍ୟଙ୍କୁ ଆଣିବାର ନାହିଁ, ଡାକିବାର ନାହିଁ, ପ୍ରାର୍ଥନା କରିବାର ନାହିଁ, ଖୋଜିବାର ନାହିଁ । ସୂର୍ଯ୍ୟ ସମ୍ମୁଖରେ ପ୍ରକାଶଯୁକ୍ତ, ସେ ଉପସ୍ଥିତ ଅଛନ୍ତି, କେବଳ ସେଇ ଆଡ଼କୁ ତୁମର ଆଖି କରିବାର ଅଛି, ଅଥବା ମେଘ ହଟିଯିବାର ଅପେକ୍ଷା ରହିଛି । ତାଙ୍କରି ଆଲୋକରେ ହିଁ ତୁମେ ସବୁ କିଛି ଦେଖୁଛ । ଏହିଭଳି ପରମାତ୍ମା ଉପସ୍ଥିତ ଅଛନ୍ତି । କେବଳ ବାହାରୁ ଦୃଷ୍ଟିକୁ ସେଇଆଡ଼କୁ ମୋଡ଼ିଦେବାର ଅଛି, ଯେଉଁଠୁ ସବୁଆଡୁ ସବୁକୁ ଦେଖାଯାଉଛି । ପରମାତ୍ମାଙ୍କୁ ଖୋଜିବାର ନାହିଁ, ସିଏ କେବେହେଲେ ହଜିଯାଇ ନାହାନ୍ତି, ସିଏ ସର୍ବଦା ମିଳିସାରିଛନ୍ତି । ତାଙ୍କୁ ପାଇବା ପାଇଁ ପ୍ରାର୍ଥନା, ଯାଚନା କରିବାର ଆବଶ୍ୟକତା ନାହିଁ, କୌଣସି ଦେଶ ବିଶେଷକୁ ଯାଇ ଖୋଜିବାର ଆବଶ୍ୟକତା ନାହିଁ, ସେ କୌଣସି ସମୟ ବିଶେଷରେ ମିଳିବାକୁ ଥିବା ବସ୍ତୁ ନୁହଁନ୍ତି, ତାଙ୍କର କୌଣସି ବିଶେଷ ରୂପ ନାହିଁ । ପରମାତ୍ମା ଅସାଧାରଣ ବସ୍ତୁ ନୁହଁନ୍ତି । ପରମାତ୍ମାଙ୍କ ଠାରୁ ସାଧାରଣ କୌଣସି ବସ୍ତୁ ପୃଥିବୀ ପୃଷ୍ଠରେ ନାହିଁ । ପରମାତ୍ମାଙ୍କୁ ସାଧାରଣ ରୂପରେ ସ୍ୱୀକାର କରିନେଲେ ତ ସିଏ ବର୍ତ୍ତମାନ ତୁମରି ଶ୍ୱାସରେ ଚଳପ୍ରଚଳ କରୁଛନ୍ତି, ତୁମରି ରକ୍ତରେ ପ୍ରବାହିତ ହେଉଛନ୍ତି ଏବଂ ତୁମ ଭିତରେ ସ୍ପନ୍ଦିତ ହେଉଛନ୍ତି ।

ଯେମିତି ଆଖି ଉପରେ ଚଷମା ଲାଗିଛି କିନ୍ତୁ ଭ୍ରମ ଯୋଗୁ ସେଇ ଚଷମାକୁ ସିଏ ଖୋଜୁଛି, ସେହିପରି ପରମାତ୍ମା ଚୈତନ୍ୟ ଭିତରେ ବିରାଜମାନ ଅଛନ୍ତି ଏବଂ ସେଇ ପରମାତ୍ମାଙ୍କୁ ଚିତ୍ର, ମୂର୍ତ୍ତି, ଧ୍ୟାନ-ସମାଧି ଭିତରେ ଖୋଜା ଯାଉଛି । **''କସ୍ତୁରୀ କୁଣ୍ଡଳ ବସେ, ମୃଗ ଢୂଂଢେ ବନ ମାହି''** । ଯେମିତି କଲମକୁ କାନ ଉପରେ ଖୋଷି ଦେଇ ତୁମେ କଲମ ଖୋଜିବାରେ ଲାଗିଯାଇଛ ।

ଶ୍ୱାସ ଭିତରକୁ ଯିବା ଓ ବାହାରକୁ ଆସିବା ସମୟରେ ଗୋଟିଏ ମୁହୂର୍ତ୍ତ ପାଇଁ ସିଏ ରହି ଦିଗ ବଦଳାଇଥାଏ । ନିଦ ଆସିନାହିଁ । ଜାଗରଣ ଚାଲିଯାଇଛି, ଯେତେବେଳେ ତୁମେ କହିପାରିବ ନାହିଁ ଯେ ଜାଗିଯାଇଛି ବା ଶୋଇପଡ଼ିଛି, ମଝିରେ ଛିଡ଼ା ହୋଇଛ, ଏହାକୁ ସାନ୍ଧ୍ୟକାଳ କୁହାଯାଏ । ଏଇ ସେଇ ମୁହୂର୍ତ୍ତ ହେଉଛି ନିର୍ବିଚାରର, ପରମାତ୍ମାଙ୍କ ସହିତ ସାକ୍ଷାତ୍‌କାରର । ଏଇ ମୁହୂର୍ତ୍ତ ଭିତରେ ବୁଡ଼ିଗଲ ଯଦି ଯାହା ପାଇବା ଯୋଗ୍ୟ ତାହା ପାଇଗଲା ଭଳି, ଯାହା ଜାଣିବା ଯୋଗ୍ୟ ତାହା ଜାଣିଗଲା ଭଳି ହୋଇଯାଏ ।

ତୁମ ପାଖରେ କେଉଁ ପ୍ରକାର ଜ୍ୟୋତି ଅଛି, ଯାହା ଦ୍ୱାରା ତୁମେ ସଂସାରର ବସ୍ତୁଗୁଡ଼ିକୁ, ବ୍ୟକ୍ତିମାନଙ୍କୁ ଦେଖିପାରୁଛ ? ଦିନରେ ସୂର୍ଯ୍ୟ, ରାତିରେ ଚନ୍ଦ୍ରମାକୁ କେଉଁ ଆଲୋକରେ ଦେଖିପାରୁଛ । ନେତ୍ର ଜ୍ୟୋତି ସେଇ ସମୟରେ କାମ କରିଥାଏ । ନେତ୍ର ବନ୍ଦ କରିନେଲା ପରେ କାହା ଦ୍ୱାରା ଭିତରେ ଭିତରେ ଦେଖାଯାଇଥାଏ ? ସିଏ ହେଉଛି ବୁଦ୍ଧି, ସେଇ ବୁଦ୍ଧିକୁ କିଏ ଦେଖିଲା । ତାକୁ ମୁଁ ସ୍ୱୟଂଜ୍ୟୋତି ହିଁ ଦେଖୁଛି । ହେ ପ୍ରଭୋ ! ଆପଣ ବି ହେଉଛନ୍ତି ପରମ ଜ୍ୟୋତି ଏବଂ ମୁଁ ବି ହେଉଛି ସିଏ ।



## ।। ଧ୍ୟାନ କ'ଣ ? ।।

ଧ୍ୟାନ କରାଯାଏ ନାହିଁ, ଧ୍ୟାନ ତ ସ୍ୱତଃ ହୋଇ ଚାଲିଥାଏ । ଯାହା କରାଯାଏ ତାହା ଧ୍ୟାନ ନୁହେଁ । ବାସ୍ତବିକ ଧ୍ୟାନ ତ ହେଉଛି ଏୟା ଯେ ଯାହା ହୋଇଚାଲିଛି, ତୁମେ ସେଇ ଘଟଣାକୁ ଶାନ୍ତ ହୋଇ ଦେଖୁଛ । ତୁମର ସେଇ ଘଟଣା ପ୍ରତି କୌଣସି ଅସ୍ୱୀକାର ଭାବ ନାହିଁ । ଏକାଗ୍ରତା ଧ୍ୟାନ ନୁହେଁ, ଧ୍ୟାନ ହେଉଛି ସର୍ବ ସ୍ୱୀକାର କରିବା ଅବସ୍ଥାର ନାମ । ପକ୍ଷୀ ଗାଇବ, ଶବ୍ଦ କରିବ, ଟି.ଭି, ଟ୍ରାନ୍‌ଜିଷ୍ଟର, ଟେପ୍‌ରେକର୍ଡ଼ ଚାଲିବ, ମେସିନ୍ ଚାଲିବ, ଗ୍ରାଇଣ୍ଡର ଚାଲିବ । ସବୁ ହୋଇ ଚାଲିଥିବ । ତୁମେ ସେଇଠି କେବଳ ଶୂନ୍ୟବତ୍ ବସି ରହିବ । ସବୁ ତୁମକୁ ଦେଖା ଯାଉଥିବ, ଶୁଭୁଥିବ କିନ୍ତୁ ତୁମେ ନିଜର କୌଣସି ନିର୍ଣ୍ଣୟ ନେବନାହିଁ। ଧ୍ୟାନ ଅର୍ଥାତ୍ ତୁମର ଏବଂ ସମସ୍ତ ସମସ୍ୟା, ଘଟଣାଗୁଡ଼ିକ ମଧ୍ୟରେ ସମରସତା ରହିବ । ଯାହା ଅଛି ତାକୁ ସ୍ୱୀକାର କରାହେଉଛି । ଯାହା ହେଉଛି ତାହା ଶୁଭ । କୌଣସି ବିରୋଧ ନାହିଁ । ଏହା ହିଁ ହେଉଛି ଆସ୍ତିକତା, ଏହା ହେଉଛି ଧ୍ୟାନ। ଯେଉଁ ଧ୍ୟାନରେ କୌଣସି ବାଧା ଉପୁଜିବ, ସିଏ ଧ୍ୟାନ ନୁହେଁ, ସିଏ ତ ହେଉଛି ଅହଂକାରର ଖେଳ । କାରଣ ଅହଂକାର ଉପରେ ବାଧା ପଡ଼ିଥାଏ । ତୁମେ ସେଇଠି ଜିଦ୍‌ରେ ବସିଥିଲ ଧ୍ୟାନୀ ହୋଇଯାଇ, କିଛି ତୁମକୁ ସେଇଠି ମିଳିଲା ନାହିଁ, କେବଳ ଲୋକ ଦେଖାଣିଆ ହେଉଥିଲା ଧ୍ୟାନର ଏବଂ କିଛି ବାହାରୁ କଥା ହେଉଥିବାର ଶୁଣାଗଲା, ପିଲା କାନ୍ଦୁଥିବାର, ଚିତ୍କାର କରୁଥିବାର ଶୁଣାଗଲା ଯେ ତୁମେ ବାହାରକୁ ଆସିଗଲ । ଏହା ଧ୍ୟାନ ହେଉନଥିଲା । ଆତ୍ମବୋଧରେ କେହି ଦ୍ୱିତୀୟ ହୋଇ ନଥାନ୍ତି, ସେଥିପାଇଁ ପ୍ରଭାବିତ-ଅପ୍ରଭାବିତ ହେବାର କୌଣସି ଅର୍ଥ ନାହିଁ । ଯାହା ହେଉଛି, ହେଉଛି ।

ଧ୍ୟାନର ଅର୍ଥ ହେଉଛି, ଯାହା ହେବ, ହେବାକୁ ଦେବା । ପିଲା କାନ୍ଦିବ, ତାକୁ କାନ୍ଦିବାକୁ ଦେବା। କୁକୁର ଭୁକିବ, ତାକୁ ଭୁକିବାକୁ ଦେବା । ଆମେ କିଏ ଏଇ ବିରାଟର ପ୍ରବାହରେ ବାଧା ସୃଷ୍ଟି କରିବା ପାଇଁ ଯେ କୁକୁର ନ ଭୁକୁ, ପାଣି ନପଡୁ, କୁଆ କା' କା' ନକରୁ । ଉଡାଜାହାଜ ନ

ଉଡୁ । ମୁଁ କିଏ ବାଧାଦେବା ବାଲା ? ମୁଁ କେବଳ ଦେଖି ଚାଲିଥିବି ଯାହା କିଛି ଘଟଣା ଘଟି ଯାଉଥିବ, ମୋର କୌଣସି ଦାବୀ ନାହିଁ, ତେଣୁ ମୋର କାହା ପ୍ରତି ବିକ୍ଷେପ ହେବ ନାହିଁ ।

ଧ୍ୟାନ ତ ସିଏ, ଯାହା କୋଳାହଳ ଭିତରେ ବି ଖଣ୍ଡିତ ହୁଏନାହିଁ, ଧ୍ୟାନ ତ ସିଏ, ଯିଏ ବିଚ୍ ବଜାରରେ ବି ଅଖଣ୍ଡିତ ରହେ । ତୁମ ଭିତରେ କିଛି ହଲଚଲ ନହେଉ, ତୁମେ ଚୁପ୍‌ଚାପ୍ ସାକ୍ଷୀ ହୋଇ ରହ, ଏହା ହେଉଛି ପ୍ରକୃତ ଧ୍ୟାନ ।

ଧ୍ୟାନ, ସମାଧିରେ ଅଧିକ ବୋଲି କିଛି ନାହିଁ, କେବଳ ଦୃଶ୍ୟ ଠାରୁ ଦୃଷ୍ଟି ଫେରିଆସି ଦ୍ରଷ୍ଟା ଉପରକୁ ଆସିଗଲା ତ ହୋଇଗଲା ଧ୍ୟାନ, ହୋଇଗଲା ସମାଧି ।

ଧ୍ୟାନର ଉଦ୍ଦେଶ୍ୟ ହେଉଛି ବାସ୍, ତୁମେ ଏକଲା ରହିଯାଅ, ସେଇଠି କେହି ବି ନଥାନ୍ତୁ । ଯେତେବେଳେ ତୁ ଗଲୁ, ସେତେବେଳେ ମୁଁ ବି ଗଲି । ତୁ'କୁ ଛାଡ଼ିଦେବା ଅର୍ଥାତ୍ ପରମାତ୍ମାଙ୍କୁ ଛାଡ଼ିବା, ତା'ପରେ ମୁଁ ନିଜକୁ ନିଜେ ଚାଲି ଯାଇଥାଏ ।

ଧ୍ୟାନ ତ ହେଉଛି ଏକ ଅଲଗା ବିନ୍ଦୁ, ତାହା ତ ଜୀବନରେ ସାକ୍ଷୀଭାବକୁ ସ୍ଥାପିତ କରିଦେଲେ ଉପଲବ୍ଧ ହୋଇଥାଏ ।

ଯେପର୍ଯ୍ୟନ୍ତ କିଛି କରିବାକୁ ଅଛି, ସେ'ପର୍ଯ୍ୟନ୍ତ ତା'କୁ ଧ୍ୟାନ କୁହାଯିବ ନାହିଁ । ଦ୍ରଷ୍ଟା ହୋଇଯିବା, ସାକ୍ଷୀ ହୋଇଯିବା ହିଁ ଧ୍ୟାନ, ସାକ୍ଷୀ ହୋଇଯିବା ହିଁ ସମାଧି । ସାକ୍ଷୀର ସାକ୍ଷୀ ନଥାଏ । କର୍ତ୍ତାପଣିଆ ଚାଲିଯିବା ହିଁ ଅହଂକାର ଶୂନ୍ୟ ହେବା ଏବଂ ଏହାକୁ ଧ୍ୟାନ କୁହାଯାଏ ।

ଧ୍ୟାନ କୌଣସି ଏଭଳି କ୍ରିୟା ନୁହେଁ ଯେ ଯାହାକୁ ସକାଳୁ ଉଠି କିଛି ସମୟ ପାଇଁ କରିନେବା । ଧ୍ୟାନ ତ ହେଉଛି ଜୀବନ, ଧ୍ୟାନରେ ହିଁ ପ୍ରତ୍ୟେକ କର୍ମ ହୋଇ ଚାଲିଥାଏ । ଧ୍ୟାନର ଉଦ୍ଦେଶ୍ୟ ହେଉଛି ସାକ୍ଷୀଭାବର ଜାଗରଣ । ଧର୍ମର ସମ୍ବନ୍ଧ ବି ସାକ୍ଷୀଭାବ ସହିତ ରହିଛି । ବାହ୍ୟ ଆଦର୍ଶ ସଂସ୍କୃତିର ନାମ ଧର୍ମ ନୁହେଁ ।

ଧ୍ୟାନ କରିବା, ସମାଧି କରିବା ହିଁ ହେଉଛି ବନ୍ଧନ । ଧ୍ୟାନ ସମାଧି ତ ହେଉଛି ତୁମର ନିତ୍ୟ ସ୍ୱଭାବ । ଯେପର୍ଯ୍ୟନ୍ତ ଧ୍ୟାନ କରିବା କର୍ତ୍ତବ୍ୟ ଭଳି ଲାଗୁଥାଏ, ସେପର୍ଯ୍ୟନ୍ତ ଜାଣିରଖ ଯେ ବର୍ତ୍ତମାନ ତୁମର ସ୍ଥିତି କଞ୍ଚା ଅଛି ।

ଧ୍ୟାନ ତାଙ୍କ ପାଇଁ ଅଛି, ଯାହାଙ୍କୁ ସାକ୍ଷୀଭାବ ବୁଝାପଡ଼ିନାହିଁ । ଧ୍ୟାନ ଦ୍ୱାରା ସାକ୍ଷୀ ଉପରକୁ, କର୍ତ୍ତାଠାରୁ ସାକ୍ଷୀ ଉପରକୁ ଡିଆଁ ତ ମାରିବାକୁ ହେବ । ସାକ୍ଷୀ ହେଉଛି ଅନ୍ତିମ ଲକ୍ଷ୍ୟ । ବିଶ୍ରାମ, ଶାନ୍ତି ସେଇଠି ଅଛି ।

ଧ୍ୟାନର ସୂତ୍ର ହେଉଛି ସମ୍ପୂର୍ଣ୍ଣ ସମୟ ପ୍ରତ୍ୟେକ କ୍ରିୟା ମଝିରେ ଗତି କରିଚାଲିବା ଉଚିତ୍ । ସିଏ ଆମ ଠାରୁ ଖସି ନଯାଉ, ଯେମିତି ଫୁଲମାଳାରେ ଥିବା ସୂତ୍ର ପ୍ରତ୍ୟେକ ପୁଷ୍ପ ଦେଇ ଅନ୍ୟ ପୁଷ୍ପ ଭିତରକୁ ଚାଲିଯାଇଥାଏ । ସୂତ୍ର ହେଉଛି ଅନୁସ୍ୟୂତ, ପୁଷ୍ପ ହେଉଛି ଭିନ୍ନ ଭିନ୍ନ । ସେହିପରି ଦୈନିକ ପ୍ରତ୍ୟେକ ଘଟଣା ଯେମିତି ସ୍ନାନ କରୁଛ ବା ଧ୍ୟାନ କରୁଛ, ଭୋଜନ ତିଆରି କରୁଛ ବା ଭୋଜନ ଗ୍ରହଣ କରୁଛ, ନିଜ ଘରେ ଥାଅ ବା ବଜାରରେ, ଭିଡ଼ରେ ଥାଅ ବା ଏକାନ୍ତରେ, ଭୋଜନ ହେଉ ବା ଶୟନ, ସୁଖ ହେଉ ବା ଦୁଃଖ, ରୋଗୀ ହୁଅ ବା ନିରୋଗୀ, ଧନୀ ହୁଅ ବା ନିର୍ଦ୍ଧନ, ସଫଳ ହୁଅ ବା ବିଫଳ, ସମ୍ମାନିତ ହୁଅ ବା ଅସମ୍ମାନିତ, ପ୍ରେମ ମିଳୁ ବା ଘୃଣା, ଜୀବନ ହେଉ ବା ମୃତ୍ୟୁ ସବୁ ଘଟଣା ମଝିରେ ଧ୍ୟାନ ରହିଥାଉ ଯେ ମୁଁ ଏସବୁ ଦ୍ୱନ୍ଦ୍ୱ ନୁହେଁ । ମୁଁ ହେଉଛି ଏସବୁକୁ ଜାଣିବାବାଲା, ଏମାନଙ୍କ ଠାରୁ ପୃଥକ୍ ଅସଙ୍ଗ, ଦ୍ରଷ୍ଟା, ସାକ୍ଷୀ, ଆତ୍ମା ।

ଧ୍ୟାନ କିଛି କରିବାର ଅବସ୍ଥା ନୁହେଁ ଯଥା– ଧ୍ୟାନ କରିବାକୁ ଅଛି, କରିବାକୁ ଯାଉଛି ବା କରୁଛି । ଯେପର୍ଯ୍ୟନ୍ତ ଧ୍ୟାନ କରିବାର ଅଭ୍ୟାସ ଯାଇନାହିଁ, ସେଯପର୍ଯ୍ୟନ୍ତ ତୁମର ଅବସ୍ଥା ହେଉଛି କଞ୍ଚା, ତୁମେ ସ୍ୱରୂପରେ ଅବସ୍ଥାନ କରିନାହଁ । ଧ୍ୟାନ ଅନ୍ତିମ ଚରଣ ନୁହେଁ । ଯେପର୍ଯ୍ୟନ୍ତ ସାକ୍ଷୀଭାବ ଜାଗ୍ରତ ହୋଇନାହିଁ, ସେପର୍ଯ୍ୟନ୍ତ ଧ୍ୟାନ ଜରୁରୀ । ଧ୍ୟାନ କରୁ–କରୁ ଯେତେବେଳେ ଧୀରେ–ଧୀରେ ମନ ଶାନ୍ତ ହୋଇଯିବ, ସେତେବେଳେ ସାକ୍ଷୀଭାବ ଅର୍ଥାତ୍ ସମାଧି ଉପଲବ୍ଧ ହୋଇଯିବ, ପୁନଶ୍ଚ ଧ୍ୟାନ କରିବାର ଆଉ ଆବଶ୍ୟକତା ରହିବ ନାହିଁ । ଧ୍ୟାନର ପରିଧିରୁ ଡେଇଁ ପଡ଼ିବାକୁ ତ ପଡ଼ିବ । ସାକ୍ଷୀ ହେଉଛି କେନ୍ଦ୍ର । ଧ୍ୟାନ କରିବାକୁ ଅଛି, ଧ୍ୟାନ କରିବି, ଧ୍ୟାନ କରିବା ଦ୍ୱାରା କର୍ତ୍ତାଭାବ ଜୀବିତ ଥାଏ । ତେଣୁ କର୍ତ୍ତାର ଉପରକୁ ଉଠ ଏବଂ ସାକ୍ଷୀ ଭାବରେ ଜାଗ୍ରତ ହୋଇଯାଅ । ଯେତେବେଳେ ଧ୍ୟାନ ଦ୍ୱାରା ଚିତ୍ତ ଶାନ୍ତ ହୋଇଯିବ, ସେତେବେଳେ ସାକ୍ଷୀ ଭାବରେ ପ୍ରବେଶ କରିବା ପଥ ସୁଗମ ହୋଇଯିବ । ଅନ୍ତିମ ଘଟଣା ତ ହେଉଛି ସାକ୍ଷୀର । ଏକାଥରକେ ଅନ୍ତିମ ସୋପାନ ଉପରକୁ ଡିଆଁ ମାରି ପାରିଲ ତ ଶୁଭ, ଅନ୍ୟଥା ଧ୍ୟାନ କରି ଚାଲିବା ଉଚିତ୍ ହେବ ।

ଧ୍ୟାନ କରିବା ସେଇ ସାଧକମାନଙ୍କ ପାଇଁ କର୍ତ୍ତବ୍ୟ ହୋଇଥାଏ, ଯେଉଁମାନଙ୍କୁ ଆତ୍ୟନ୍ତିକ କଥା ଅର୍ଥାତ୍ ସାକ୍ଷୀଭାବ, ଦ୍ରଷ୍ଟାଭାବ ବୁଝିହୋଇ ନଥାଏ । ଯାହାର ବର୍ତ୍ତମାନ ଧ୍ୟାନରେ ବି ମନ ଲାଗୁନାହିଁ, ସିଏ ସାକ୍ଷୀଭାବକୁ କ'ଣ ବୁଝିବ ? ଧ୍ୟାନରେ ମନ ଲାଗୁନଥିବା ଲୋକମାନଙ୍କର ସ୍ୱାଧ୍ୟାୟ କରି ଚାଲିବା ଉଚିତ୍ । ସ୍ୱାଧ୍ୟାୟ ହୋଇଚାଲିଲେ ତା'ପରେ ସିଏ ଧ୍ୟାନ କରିବାରେ ସଫଳ ହୋଇପାରିଥାନ୍ତି । ଏଇ ଧ୍ୟାନର କର୍ତ୍ତାପଣିଆରୁ ବି ତୁମକୁ ସେତେବେଳେ ଡିଆଁ ମାରିବାକୁ ହେବ, ଯେତେବେଳେ ଧ୍ୟାନ ସିଦ୍ଧ ହୋଇଯିବ ଅର୍ଥାତ୍ ଆତ୍ମଭାବ ଜାଗ୍ରତ ହୋଇଯିବ, ସେତେବେଳେ ତାକୁ ଧ୍ୟାନର କର୍ତ୍ତାପଣିଆରୁ ମୁକ୍ତ କରିବା ପାଇଁ କୁହାଯାଇଥାଏ ଯେ ବର୍ତ୍ତମାନ ଧ୍ୟାନକୁ ବି ଛାଡ଼ିଦିଅ, ଏହା

ଠାରୁ ବି ତୁମେ ଦ୍ରଷ୍ଟା, ସାକ୍ଷୀ, ଆତ୍ମା ହେଉଛ ଭିନ୍ନ, ଏଭଳି ନିଶ୍ଚୟ କରିନେବା ହିଁ ଅନ୍ତିମ ଚରଣ । ସେତେବେଳେ ତାଙ୍କୁ କୁହାଯାଇଥାଏ ଯେ ଧ୍ୟାନ, ଧାରଣା, ସମାଧି, କୁଣ୍ଡଳିନୀ ଜାଗ୍ରତ ହେବା ଦ୍ୱାରା କିଛି ହେବନାହିଁ । ବର୍ତ୍ତମାନ କର୍ତ୍ତାଠାରୁ ସାକ୍ଷୀଭାବକୁ ଆସିଯାଅ ।

ଧ୍ୟାନ ତ ହେଉଛି ନକରିବାର ଅବସ୍ଥା । ଧ୍ୟାନ କଲେ କର୍ତ୍ତା ଉପସ୍ଥିତ ରହିଥାଏ । ଏହା ହିଁ ହେଉଛି ବନ୍ଧନର, ପୁନର୍ଜନ୍ମର କାରଣ ।

ଲୋକେ ଧ୍ୟାନକୁ କଠିନ ବୋଲି କହିଥାନ୍ତି । ସେମାନେ ଧ୍ୟାନର ଉଦ୍ଦେଶ୍ୟ ବୁଝିନଥାନ୍ତି । ଧ୍ୟାନର ଅର୍ଥ ହେଉଛି ମନ ନିର୍ବିଷୟ ହୋଇଯିବା । ଯେପର୍ଯ୍ୟନ୍ତ ମନରେ କୌଣସି ପ୍ରକାରର ଅହଂକାର ଉପସ୍ଥିତ ଅଛି, ସେପର୍ଯ୍ୟନ୍ତ ଧ୍ୟାନ ନାହିଁ । ଧ୍ୟାନର ଉଦ୍ଦେଶ୍ୟ ହେଉଛି ସାକ୍ଷୀ, ଅକର୍ତ୍ତା ଭାବରେ ଜୀଇଁବା । ଧ୍ୟାନ ହେଉଛି ଆମର ସ୍ୱରୂପ । ସ୍ୱରୂପ ଠାରୁ ଅଧିକ ସରଳ ସଂସାରରେ କିଛି ନାହିଁ । ସ୍ୱରୂପକୁ ପାଇବା ପାଇଁ ସାଧନ ନୁହେଁ, ବୁଝିବା ଆବଶ୍ୟକ । ହୋଶ୍ ଆବଶ୍ୟକ । ବେହୋଶ୍ ହେବାର ନାମ ଧ୍ୟାନ ନୁହେଁ, ଜଡ଼ତାର ନାମ ଧ୍ୟାନ ନୁହେଁ, କିଛି କଳ୍ପନାରେ ଦେଖିନେବା ଧ୍ୟାନ ନୁହେଁ । **ଏକାଗ୍ରତା ବି ଧ୍ୟାନ ନୁହେଁ ।**

ଯେତେବେଳେ ଧ୍ୟାନ କରିବାର ନିୟମ ତିଆରି କରିଥାଅ, ସେତେବେଳେ ତ ଧୀରେ-ଧୀରେ ତୁମେ ତୁମର ଶରୀର, ପ୍ରାଣ, ଇନ୍ଦ୍ରିୟ ଏବଂ ମନାଦି ଦୃଶ୍ୟ ରୂପରେ ପ୍ରତୀତ ହେବାକୁ ଲାଗିଥାଏ ଏବଂ ତୁମେ ଏସବୁ ଦୃଶ୍ୟଗୁଡ଼ିକର ନିଜକୁ ଦ୍ରଷ୍ଟା ବୋଲି ଜାଣିବାରେ ଲାଗିଯାଇଥାଅ । ଏହିପରି ଧ୍ୟାନ କରୁ କରୁ ଯେତେବେଳେ ଦ୍ରଷ୍ଟାଭାବ ପରିପକ୍ୱ ହୋଇଯାଏ, ସେତେବେଳେ ତୁମେ ଅଜ୍ଞାନ ଅବସ୍ଥାରେ ଯେପରି ନିଜକୁ ଯେଉଁପ୍ରକାରର ବୋଲି ମାନୁଥିଲ, ଜାଣୁଥିଲ, ସେହିପରି ନାମ, ଜାତି, ସମ୍ବନ୍ଧ, ପଦ ଏବଂ ଉପାଧିବାନ ବୋଲି ଜାଣିପାରିବ ନାହିଁ ।

ଧ୍ୟାନ କରୁକରୁ ତୁମର ମନରେ ଦେହ ପ୍ରତି ରହିଥିବା ଅହଂ ଭାବ ଶୂନ୍ୟ ହୋଇଯାଏ । ପୁନଶ୍ଚ ତୁମେ ନିଜକୁ ଅଜ୍ଞାନ ଅବସ୍ଥାରେ ଯେମିତି ମାନିନେଇ ଚାଲିଥିଲ ଯେ ମୁଁ ହେଉଛି ଗୋରା, କଳା, ସ୍ତ୍ରୀ-ପୁରୁଷ, ଯୁବକ, ବୁଢ଼ା, ଜନ୍ମ-ମୃତ୍ୟୁଯୁକ୍ତ, ବର୍ତ୍ତମାନ ଆଉ ସେପରି ଜାଣିପାରିବ ନାହିଁ ।

ଧ୍ୟାନ ହେଉଛି ମନର ମୃତ୍ୟୁ । ସାକ୍ଷୀ ଭାବ ହେଉଛି ମନର ଅମନ ହେବା । **'ବିଚାରେନ ମୋକ୍ଷୋ ଭବତି, ତସ୍ମାଦ୍ ସର୍ବଦା ବିଚାରେନ'** । ଯିଏ ସ୍ୱୟଂରେ ଅବସ୍ଥାନ କଲା, ସିଏ ସୁସ୍ଥ ହେଲା । ନାଟକ ଦେଖି ଚାଲ । କୌଣସି ଅଭିନେତା-ଅଭିନେତ୍ରୀର ଅଭିନୟ ସହିତ ତାଦାତ୍ମ୍ୟ କରନାହିଁ । ମନ ଯୁଆଡ଼େ ଯାଉଛି ଯାଉ, ତୁମେ ତାକୁ ଦେଖିଚାଲ୍ । ତା'ର ସଙ୍ଗ ହୁଅନାହିଁ । ତାକୁ ଅଟକାଅ ନାହିଁ ।

ଲୋକେ ଧ୍ୟାନ, ସମାଧି୍ ଏବଂ କୁଣ୍ଡଳିନୀ ଜାଗ୍ରତ କରିବା ପାଇଁ ସାରା ଜୀବନ ପ୍ରଚେଷ୍ଟା କରି ଚାଲିଥାନ୍ତି କିନ୍ତୁ ହାତରେ କିଛି ଲାଗେ ନାହିଁ । ତୁମେ ନିଜ ଭିତରେ ଜାଗିଯାଅ । ମନ ପ୍ରତି ସଜାଗ ହୋଇଯାଅ । ସବୁ ସ୍ୱତଃ ହୋଇ ଚାଲିବ, ଯାହା ଯାହା ଜରୁରୀ । ସେସବୁ ସମାପ୍ତ ହୋଇ ଚାଲିଯିବ ଯାହା ଜରୁରୀ ନୁହେଁ । ତୁମେ କେବଳ ନିଜ ସାକ୍ଷୀ ଭାବରେ ଜାଗ୍ରତ ରୁହ ।

ମନରେ ମେଡ଼ିଟେସନର ଝାଡୁ ପ୍ରତିଦିନ ଲଗାଉଥାଅ । ପ୍ରତ୍ୟେକ ଶ୍ୱାସରେ ସେଇ ଅନାହତ ନାଦର ସଙ୍ଗୀତକୁ ଶୁଣି ଚାଲିଥାଅ ।

ନିଜର ମନ, ବୁଦ୍ଧିକୁ ଆତ୍ମଭାବରେ, ଦ୍ରଷ୍ଟା, ସାକ୍ଷୀ ଭାବରେ ସମାହିତ କରିବା ହିଁ ହେଉଛି ଧ୍ୟାନ, ସମାଧି୍ ।



## ।। ପରମାତ୍ମା କିପରି ? ।।



ମେ ଈଶ୍ୱରଙ୍କୁ, ପରମାତ୍ମାଙ୍କୁ, ଆତ୍ମାଙ୍କୁ ଦୃଶ୍ୟ ଭଳି କେବେହେଲେ ଭାବନାହିଁ, ଈଶ୍ୱର ଦୃଶ୍ୟ ହୋଇପାରିବେ ନାହିଁ । ସିଏ ସମସ୍ତଙ୍କୁ ଜାଣିବାବାଲା, ତାଙ୍କୁ କେହି ଜାଣିପାରିବ ନାହିଁ । ଯେମିତି ଯେମିତି ତୁମେ ଦ୍ରଷ୍ଟା ହେବାରେ ଲାଗିବ, ତୁମେ ଈଶ୍ୱରଙ୍କ ସମୀପରୁ ସେମିତି ଖସିବାରେ ଲାଗିବ । ଈଶ୍ୱର ହେଉଛନ୍ତି ସମସ୍ତଙ୍କର ଦ୍ରଷ୍ଟା । ତାଙ୍କ ବ୍ୟତୀତ ଏଇଠି ଆଉ କେହି ନାହାନ୍ତି, ଏଭଳି ଯିଏ ନିଶ୍ଚୟ ପୂର୍ବକ ଜାଣିଥାଏ, ସେଇ ପୁରୁଷ ପରମାତ୍ମାଙ୍କୁ ଜାଣିଥାଏ ।

ପରମାତ୍ମାଙ୍କ ପାଇଁ ଶୋଷ ହେବାରୁ ହିଁ ଏହା ପ୍ରମାଣିତ ହୋଇଯାଏ ଯେ ପରମାତ୍ମା କେଉଁଠି ହେଲେ ଅଛନ୍ତି । ଯଦି ପରମାତ୍ମା ନଥାନ୍ତେ ତେବେ ତାଙ୍କ ପାଇଁ ଶୋଷ ହେବା, ତାଙ୍କର ବିରୋଧ କରିବା ବି କାହା ପକ୍ଷରେ ସମ୍ଭବ ହୋଇନଥାନ୍ତା ।

ପ୍ରତ୍ୟେକ ଦୃଶ୍ୟ ଦ୍ରଷ୍ଟାର ଖବର ଦେଉଅଛି । ଆମେ ହେଉଛନ୍ତି ଅନ୍ଧ, ଯିଏ ସୂର୍ଯ୍ୟଙ୍କୁ ଦେଖି ପରମାତ୍ମାଙ୍କ ପ୍ରତି ଆକର୍ଷିତ ହେଉନାହାନ୍ତି । ପୁଷ୍ପର ରଙ୍ଗ, ସୁଗନ୍ଧ ହିଁ ହେଉଛି ପରମାତ୍ମାଙ୍କର ପ୍ରତିମା, ଏହା ପରମାତ୍ମାଙ୍କୁ ମନେପକାଇ ଦେଇଥାଏ, ଯେମିତି ଚିତ୍ର ବ୍ୟକ୍ତିକୁ ମନେ ପକାଇଥାଏ, ପ୍ରକୃତ ରୂପର ପରିଚୟ କରାଇଥାଏ । ସେହିପରି ଏଇ ସମସ୍ତ ଦୃଶ୍ୟ ପ୍ରକୃତି, ଦ୍ରଷ୍ଟା ପରମାତ୍ମାଙ୍କ ସ୍ମରଣ କରାଉଅଛି ।

ପରମାତ୍ମାଙ୍କ ଠାରୁ କେହି ଗୋଟିଏ ମୁହୂର୍ତ୍ତ ପାଇଁ ବି ଭିନ୍ନ ହୋଇପାରିବ ନାହିଁ । ଯେତେବେଳେ ପାପ କଲ, ସେତେବେଳେ ସିଏ କରିଛନ୍ତି । ଯେତେବେଳେ ପୁଣ୍ୟ କଲ, ସେତେବେଳେ ବି ସିଏ କରିଛନ୍ତି । ଯେତେବେଳେ ଚୋରୀ କଲ, ସେତେବେଳେ ବି ସିଏ କଲେ ।

ଯେତେବେଳେ ସାଧୁ ହେଲ ସେତେବେଳେ ବି ସିଏ ଥିଲେ । ଗୋଟିଏ ମୁହୂର୍ତ୍ତ ପାଇଁ ବି ତାଙ୍କ ଠାରୁ ଭିନ୍ନ ହେବାର ଉପାୟ ନାହିଁ । ଏଭଳି କୌଣସି ନିର୍ଣ୍ଣୟ ହିଁ ନାହିଁ, ଯାହା ତାଙ୍କର ହୋଇନଥିବ । ଏଇ ପ୍ରତୀତିର, ଏଇ ଅନୁଭବର ନାମ, ଏଇ ସାକ୍ଷାତ୍‌କାରର ନାମ ହେଉଛି ସମର୍ପଣ । ତୁମେ ମିଛଟାରେ ମଝିରେ ପଡ଼ନାହିଁ । ମଝିକୁ ଆସନାହିଁ । ଯାହା ବି ହୋଇଛି, ଯାହା ବି ହେଉଛି, ଯାହା ବି ହେବ ତାଙ୍କଠୁ ହେଉଛି, ତାଙ୍କରି ଭିତରେ ଅଛି । ଏଇ ବିରାଟ ଚୈତନ୍ୟ ସାଗରର ଆମେ ହେଉଛୁ ଲହରୀ ମାତ୍ର । ଲହରୀ ସାଗର ଠାରୁ ଭିନ୍ନ ହୋଇପାରିବ ନାହିଁ ।

ପରମାତ୍ମା ସ୍ୱଂୟ ନିରାକାର ନ ହୋଇଥିଲେ ନାନା ରୂପରେ ପ୍ରକଟ ହୋଇପାରିନଥାନ୍ତେ । ସିଏ ହେଉଛନ୍ତି ସ୍ୱୟଂ ଏଇ ବିଭିନ୍ନ ଆକୃତିଗୁଡ଼ିକ ଭିତରେ ନିରାକାର । ଏତେଗୁଡ଼ିଏ ଆକାର ଭେଦ ଜଣକର ତ ସେତେବେଳେ ହୋଇପାରିବ, ଯେତେବେଳେ ସିଏ ସ୍ୱୟଂ ନିରାକାର ହୋଇଥିବେ । ବହୁତ ରୂପରେ ପରମାତ୍ମା ପ୍ରକଟ ହେଉଥିଲେ ବି ଅଜ୍ଞାନୀ ଅନ୍ଧ ପଚାରିଥାଏ, ପରମାତ୍ମାଙ୍କୁ ଆମେ କେଉଁଠି ଦେଖିବା ? ସବୁଆଡୁ ସିଏ ହିଁ ତ ସମସ୍ତଙ୍କୁ ଘେରି ରହିଛନ୍ତି, ଯେଉଁଆଡ଼କୁ ଯାଅ ସିଏ ତ ସାମନାରୁ ଆସୁଛନ୍ତି । ଯାହା ସହିତ କଥା ହୁଅ, ତାଙ୍କ ସହିତ କଥା ହୋଇଯାଏ । ଦେଖ ସୂର୍ଯ୍ୟଙ୍କୁ ସେଇଠି ତାଙ୍କର କିରଣ ଏବଂ ତପନ, ଦେଖ ଚନ୍ଦ୍ରମାକୁ ତ ସେଇଠି ତାଙ୍କରି ଶୀତଳତା, ଦେଖ ଅମାବାସ୍ୟାର ରାତିକୁ ତ ସେଇଠି ତାଙ୍କର ଘନ ଅନ୍ଧକାର, ଶୁଣ ପକ୍ଷୀମାନଙ୍କର କାକଳି ତ ତାଙ୍କରି ସଙ୍ଗୀତ, ଦେଖ ଫୁଲମାନଙ୍କୁ ତ ତାଙ୍କରି ସୁଗନ୍ଧ ଓ ତାଙ୍କରି ସୌନ୍ଦର୍ଯ୍ୟ । ଫଳମାନଙ୍କ ଭିତରେ ତାଙ୍କରି ମଧୁରତା, ନିମ୍ବ ଭିତରେ ତାଙ୍କର କଟୁତା, ଅଗ୍ନିରେ ତାଙ୍କରି ଜ୍ୱଳନ୍ତତା, ବରଫରେ ତାଙ୍କରି ଶୀତଳତା, ଏତେଗୁଡ଼ିଏ ରୂପରେ ସିଏ ସର୍ବତ୍ର ପ୍ରକଟ ହେଉଛନ୍ତି, ତଥାପି ସୁଦ୍ଧା ଅନ୍ଧମାନେ ତାଙ୍କୁ ଦେଖି ପାରୁନାହାନ୍ତି ତଥାପି ସୁଦ୍ଧା ହରେଇ ଚାଲିଯାଉଛନ୍ତି ଯେତେବେଳେ କି ସବୁ ସମୟରେ ସିଏ ହିଁ ସମସ୍ତଙ୍କୁ ସ୍ପର୍ଶ କରୁଛନ୍ତି । ଯେମିତି ସମସ୍ତେ ଜାଣିଶୁଣି ଆଖି ବନ୍ଦ କରି ଚାଲୁଛନ୍ତି । ଦୁର୍ଭାଗ୍ୟ ହୋଇଥାନ୍ତା ମନୁଷ୍ୟର, ଯଦି ପରମାତ୍ମାଙ୍କର ଗୋଟିଏ ରୂପ ହୋଇଥାନ୍ତା, ଗୋଟିଏ ଜାଗାରେ ପରାମାତ୍ମା ରହିଥାନ୍ତେ, ତେବେ ଏତେ ବଡ଼ ସଂସାରରେ ମନୁଷ୍ୟ ତାଙ୍କୁ ଖୋଜି ପାରିନଥାନ୍ତା, ଖୋଜୁ ଖୋଜୁ ହିଁ ମନୁଷ୍ୟର ପ୍ରାଣ ବାହାରି ଯାଇଥାନ୍ତା । କୌଣସି ସାଧକ ସେପର୍ଯ୍ୟନ୍ତ ପହଞ୍ଚିପାରିନଥାନ୍ତେ ।

ତୁମେ ପରମାତ୍ମାଙ୍କୁ ଖୋଜୁଛ । ସେଇ ଖୋଜିବା ହେଉଛି ଏମିତି, ଯେମିତି ଜଣେ ଲୋକ ମାନି ନେଇଛି ଯେ ତା'ର ପତ୍ନୀ ବିଧବା ହୋଇଗଲେ ଏବଂ ସେଇ ବ୍ୟକ୍ତି ଜୀବିତ ଅବସ୍ଥାରେ ବସି ନିଜ ପତ୍ନୀର ବିଧବା ହୋଇଥିବାର ଦୁଃଖ ପାଳନ କରୁଛି । ପରମାତ୍ମାଙ୍କୁ ହଜେଇଲ କେତେବେଳେ ? ତୁମେ ଅଛ ତ ପରମାତ୍ମା ଅଛନ୍ତି । ତୁମର ବଞ୍ଚିରହିବା ହିଁ ପରମାତ୍ମାଙ୍କର

ରହିଥିବାର ପ୍ରମାଣ । ଯଦି ସିଏ ନଥାନ୍ତେ, ତେବେ ତୁମେ ଗୋଟିଏ ପାଦ ବି ଚାଲିପାରିନଥାନ୍ତ । ତୁମେ ରହିଥାଉ ଥାଉ ପରମାତ୍ମା ନଥିବେ ଏଇ କଥା ଅସମ୍ଭବ, ଯେମିତି ତୁମେ ଥାଉ ଥାଉ ତୁମର ପତ୍ନୀ କେବେହେଲେ ବିଧବା ହୋଇପାରିବେ ନାହିଁ । ପରମାତ୍ମାଙ୍କୁ ପାଇ ସାରିଛ, କେବଳ ସ୍ମରଣ ରହିନାହିଁ । ତୁମେ ତାଙ୍କ ବିନା ଗୋଟିଏ ମୁହୂର୍ତ୍ତ ବି ରହିପାରିବ ନାହିଁ । ସିଏ ତୁମ ଭିତରେ ଥାଇ ଶ୍ୱାସ ନେଇଥାନ୍ତି । ସିଏ ତୁମ ଭିତରେ ଥାଇ ଉଠୁଛନ୍ତି । ତାଙ୍କୁ ତୁମେ ସଂପୂର୍ଣ୍ଣ ଭାବରେ ନିଜ ଜୀବନରେ ପାଇସାରିଛ, ସିଏ ସମ୍ପୂର୍ଣ୍ଣ ଭାବରେ ତୁମ ଭିତରେ ଏକାକାର ହୋଇସାରିଛନ୍ତି । ସେଥିପାଇଁ ତୁମ ଭିତରେ ହୋଶ୍ ଅଛି । ପରମାତ୍ମା ହେଉଛନ୍ତି ଅଦ୍ୱୟ । ଯେତେବେଳେ ସିଏ ଥାନ୍ତି, ସେତେବେଳେ ମନୁଷ୍ୟ ନଥାଏ । ମନୁଷ୍ୟ ଥାଇ ପରମାତ୍ମାଙ୍କ ସହିତ ମିଳନ ହୁଏ ନାହିଁ । ପରମାତ୍ମାଙ୍କ ସହିତ ମିଶିବା ଅର୍ଥ ହେଉଛି ନିଜର ମହାମୃତ୍ୟୁ ସହିତ ମିଶିବା ।

ପରମାତ୍ମାଙ୍କ ସମ୍ବନ୍ଧରେ ଯାହା ତୁମେ ଜାଣିଛ, ତା'ସହିତ ପରମସତ୍ୟର, ପରମାତ୍ମାଙ୍କର କୌଣସି ସମ୍ବନ୍ଧ ନାହିଁ । ପରମାତ୍ମାଙ୍କ ସମ୍ବନ୍ଧରେ ତୁମର ପ୍ରତ୍ୟେକ ଅନୁଭବକୁ ବେଦ ନେତି-ନେତି କହି ଅସ୍ୱୀକାର କରିଦେଇଥାଏ ଅର୍ଥାତ୍ ଯାହା ତୁମେ ଜାଣିଥାଅ ଯେ ପରମାତ୍ମା ହେଉଛନ୍ତି ଏମିତି କି ଏମିତି, ସେସବୁ ହେଉଛି ତୁମ ମନର କଳ୍ପନା । ଯେପରି ବିରାଟ ଆକାଶକୁ ତୁମେ ଝରକା, ଖିଡ଼ିକି ବା ଦୁଆର ବନ୍ଧର ଚଉକାଠ ଭିତରେ ଦେଖିଦେଲ ତ ଆକାଶ ତୁମକୁ ସେତିକି ଆକାରଯୁକ୍ତ ଦେଖାଯାଇଥାଏ କିନ୍ତୁ ଆକାଶ ସେତିକି ନୁହେଁ । ପରମାତ୍ମା ହେଉଛନ୍ତି ଅଜ୍ଞେୟ, ପରମାତ୍ମା ହେଉଛନ୍ତି ଅପ୍ରମେୟ, ପରମାତ୍ମା ହେଉଛନ୍ତି ଅଗୋଚର । ସତ୍ୟ ସର୍ବଦା ସର୍ବ ସହିତ ଅପରିଚିତ । ଯାହା ସହିତ ତୁମର ପରିଚୟ ହୋଇଯାଇଥାଏ ସିଏ ତ ମରିଗଲା । ଯାହାକୁ ତୁମେ ଜାଣିନେଲ ତା'ର ସୀମା ଆସିଗଲା । ଯାହାର ସୀମା ଉପରେ ତୁମେ ପହଞ୍ଚିଗଲ, ତା'ର ଅନନ୍ତ ସ୍ୱଭାବ ଆଉ ରହିଲା ନାହିଁ । ଅନ୍ତଃ ଥିବା ପଦାର୍ଥ ପରମାତ୍ମା ହୋଇପାରିବ ନାହିଁ । ପରମାତ୍ମାଙ୍କ ପାଇଁ ସବୁ ଜାଣିବା, ସବୁ ଧାରଣା ହେଉଛି ତୁମରି ମନର କଳ୍ପନା ।

ତୁମେ ପରମାତ୍ମାଙ୍କୁ ଖୋଜୁଛ ସେଇ ଖୋଜିବା ହେଉଛି ଏମିତି, ଯେମିତି କୌଣସି ଲୋକ ମାନିନେଲା ଯେ ମୋର ପତ୍ନୀ ବିଧବା ହୋଇଗଲା ଏବଂ ସେଥିପାଇଁ ଲୋକଟି ଦୁଃଖୀ ହୋଇ କାନ୍ଦୁଛି ଏବଂ ଲୋକଟି ସ୍ୱୟଂ ଜୀବିତ ବସିଛି । ପରମାତ୍ମାଙ୍କୁ ବି ଲୋକେ ଖୋଜୁଛନ୍ତି, ପ୍ରାର୍ଥନା କରୁଛନ୍ତି, କାନ୍ଦୁଛନ୍ତି କିନ୍ତୁ ସେଇ ପରମାତ୍ମାଙ୍କୁ ତୁମେ ହରାଇଲ କେତେବେଳେ ? ସେଇ ପରମାତ୍ମା ଏବେ ବି ଅଛନ୍ତି, ତାହାର ପ୍ରତ୍ୟକ୍ଷ ପ୍ରମାଣ ତ ହେଉଛ ତୁମେ ନିଜେ । ଯଦି ସିଏ ନଥାନ୍ତେ ତେବେ ତୁମେ କେବେ ହୋଇପାରିନଥାନ୍ତ । ତୁମରି ହେବା ଭିତରେ ହିଁ ପରମାତ୍ମା ମିଶିଯାଇଛନ୍ତି । ଯେମିତି ବରଫ ଥିବାରୁ ହିଁ ଜଳ ସେଥିରେ ମିଶିରହିଛି । ମିଶ୍ରୀ ଥିବାରୁ ଚିନି ସେଥିରେ ଏକାକାର ହୋଇ

ରହିଛି । ତୁମ ଭିତରେ ଏୟା ଅସମ୍ଭବ ଯେ ପରମାତ୍ମା ନଥିବେ । ତୁମେ ହେଉଛ ତାଙ୍କର ପ୍ରମାଣ, ତୁମେ ହେଉଛ ତାଙ୍କର ହସ୍ତାକ୍ଷର । ତୁମେ ଥାଉ ଥାଉ, ତୁମର ପତ୍ନୀ ବିଧବା ହୋଇପାରିବେ ନାହିଁ । ସେହିପରି ତୁମେ ଥାଉ ଥାଉ ପରମାତ୍ମା କେବେହେଲେ ଦୂର ହୋଇପାରିବେ ନାହିଁ, କି କେବେ ହଜିଯାଇ ପାରିବେ ନାହିଁ । ଗୋଟି ଗୋଟି କରି ସବୁ ପତ୍ରରେ ତାଙ୍କର ସବୁଜିମା ଭରି ହୋଇ ରହିଛି, ଗୋଟି ଗୋଟି କରି ପକ୍ଷୀ ଭିତରେ ତାଙ୍କରି ସ୍ୱର ହିଁ ମୁଖରିତ ହେଉଛି । ଗୋଟି ଗୋଟି କରି ପୁଷ୍ପ ଭିତରେ ତାଙ୍କରି ସୁଗନ୍ଧ ହିଁ ସୁବାସିତ ହେଉଅଛି, ତାଙ୍କରି ସୌନ୍ଦର୍ଯ୍ୟ ଝଲସି ଉଠୁଛି ।

ଟିକିଏ ମାନ୍ୟତାଗୁଡ଼ିକ ଠାରୁ ଆଖିକୁ ଖାଲି କରିଦିଅ, ଚଷମା ହଟାଇଦେଇ ଦେଖିନିଅ । ହିନ୍ଦୁ, ମୁଲସମାନ, ମନ୍ଦିର, ମସଜିଦ୍ ଓ ଗୀତା, କୋରାନ୍‌କୁ ମନରୁ ଟିକିଏ ପଛକୁ ହଟାଇଦେଇ ଦେଖ, ପାଚେରୀ କାନ୍ଥକୁ ହଟାଇଦେଇ ଦେଖ ସେତେବେଳେ ପ୍ରଥମ ଥର ପାଇଁ ତୁମକୁ ସିଏ ସବୁ ଜାଗାରେ ଝାଙ୍କିଲା ଭଳି ଦେଖାଯିବେ । କଣ-କଣରେ, ପ୍ରତି ରୂପରେ ସିଏ ତ ବିରାଜିତ ହୋଇଛନ୍ତି ।

ଭୋଜନ, ପାଣି, ପବନ, ଆଲୋକ ଆମକୁ ପ୍ରତିଦିନ ଶକ୍ତି ଦେଉଛନ୍ତି । ଏହାର ଉପଯୋଗ ଭଲ ଭାବରେ କରିନିଅ, ଅନ୍ୟଥା ଏହି ଶକ୍ତି, ମୁକ୍ତି ପରିବର୍ତ୍ତେ ବନ୍ଧନ ଭିତରେ ନେଇ ଛିଡ଼ା କରାଇଦେବ । ଫୁଲ ହେବାକୁ ନଦେଲା ତ ସେଇ ଶକ୍ତି କଣ୍ଟାରେ ପରିବର୍ତ୍ତିତ ହୋଇଯିବ । ପ୍ରେମରେ ପରିଣତ ନହେଲା ତ ଏଇ ଶକ୍ତି କାମରେ ବଦଳିଯିବ । କରୁଣାରେ ପରିଣତ ନହେଲା ତ ସିଏ କ୍ରୋଧରେ ରୂପାନ୍ତରିତ ହୋଇଯିବ । ଯଦି ପ୍ରାର୍ଥନାରେ ପରିଣତ ନହେଲା ତ ନିନ୍ଦା ହୋଇ ବହିବାରେ ଲାଗିବ । ଏହା ସଂଗୃହିତ ହୋଇ ରହିବ ନାହିଁ । କାଲି ପୁଣି ନୂଆ ଉର୍ଜା ଆସୁଅଛି । ଜାଗା ଖାଲି କରିବାକୁ ପଡ଼ିବ ।

ଯଦି ତୁମେ ପରମାତ୍ମାଙ୍କୁ ଦ୍ୱିତୀୟ ପୁରୁଷଙ୍କ ଭଳି ପାଇ ବି ଗଲ, ତେବେ ଦିନେ ସିଏ ନିଶ୍ଚିତ ଭାବରେ ଚାଲି ବି ଯିବେ । ସବୁ ଦ୍ୱିତୀୟ ଚାଲି ଯାଇଥାନ୍ତି । ଧନ ପାଇଯିବ, ସିଏ ଚାଲିଯିବ । ଯଶ, ପ୍ରତିଷ୍ଠା, ବଳ, ପଦ, ସୌନ୍ଦର୍ଯ୍ୟ, ପତି-ପତ୍ନୀ, ପୁତ୍ର, ମିତ୍ର, ଘର, ମନ୍ଦିର ତିଆରି କରିନେବ, ସିଏ ସବୁ ଚାଲିଯିବ । ଯାହା ପର, ତାହା ତୁମର ସ୍ୱଭାବ ନୁହେଁ । ନିଜକୁ ପାଇଯିବା ହିଁ ହେଉଛି ଜୀବନର ଏକମାତ୍ର ଲକ୍ଷ୍ୟ । କେବଳ ଆପଣାର ହେବା କେବେ ହେଲେ ଚାଲିଯାଏ ନାହିଁ । ପରମାତ୍ମା ହେଉଛନ୍ତି ଆମର ସ୍ୱଭାବ ।

ଈଶ୍ୱର ଯଦି କୌଣସି ବ୍ୟକ୍ତି ବିଶେଷ ହୋଇଥାନ୍ତେ ତ ସେ ବର୍ତ୍ତମାନ ମରିଯାଇ ସାରିଥାନ୍ତେ । ବ୍ୟକ୍ତି ତ ନିଶ୍ଚୟ ମରିବ । ସେ ଥକି ଯାଇଥାନ୍ତେ, ଏଇ ଭିକାରୀ ଦୁନିଆଁକୁ ଦେଇ

ଦେଇ, ବିବ୍ରତ ହୋଇ ପଡ଼ିଥାନ୍ତେ । ଟିକିଏ ଭାବି ଦେଖିଲ ଅଖଣ୍ଡ ନାମ–ଯଜ୍ଞ ଦିନ ରାତି ସବୁଆଡ଼େ ଚାଲିଛି, ନିରନ୍ତର ଜପ, ପ୍ରାର୍ଥନା ହୋଇ ଚାଲିଛି ତାଙ୍କର ଟିକିଏ ହେଲେ ସମୟ ନାହିଁ ନିଜର ବିଶ୍ରାମ ପାଇଁ । ଲୋକ ଦୁଇ ଦୁଇଟି ଦୋକାନ ଚଳାଇଲେ ବିବ୍ରତ ହୋଇପଡୁଛି, ପୁନଶ୍ଚ ଯାହାଙ୍କୁ ସାରା ଦୁନିଆଁ ଚଳାଇବାକୁ ପଡୁଛି ତାଙ୍କର ଅବସ୍ଥା କ'ଣ ହୋଇଥାନ୍ତା । ନ୍ୟାୟାଧୀଶ ବି ୬୦ ବର୍ଷରେ ଅବସର ପ୍ରାପ୍ତ ହୋଇଯାଉଛନ୍ତି । ଈଶ୍ୱରଙ୍କୁ ତ ଏମିତି ବି ଅବସର ମିଳିପାରୁ ନାହିଁ । ସିଏ ପାଗଳ ହୋଇସାରିଥାନ୍ତେ ବର୍ତ୍ତମାନ କିନ୍ତୁ ସିଏ କୌଣସି ଶରୀର ଧାରୀ ବ୍ୟକ୍ତି ନୁହଁନ୍ତି ।

ପରମାତ୍ମାଙ୍କୁ ପାଇବାରେ ମନୁଷ୍ୟ ହୋଇ ରହିବା, ନିଜର ହେବା ହିଁ ବାଧା ହୋଇଯାଇଥାଏ । କେହି ମନୁଷ୍ୟ ରହିଥାଇ ପରମାତ୍ମାଙ୍କୁ ପାଇ ପାରିବ ନାହିଁ । ଯିଏ ଜଳ ବିନ୍ଦୁ ହୋଇ ରହିବ ସିଏ ସାଗରକୁ ପାଇ ପାରିବ ନାହିଁ । ଯେତେବେଳେ ଆମେ ନଷ୍ଟ ହୋଇଯାନ୍ତି, ସେତେବେଳେ ପରମାତ୍ମା ପ୍ରକଟ ହୋଇଥାନ୍ତି । ଯିଏ ଏହାକୁ ଜାଣିଲେ, ସିଏ ଏୟା ଜାଣିଲେ ଯେ **''ଜବ ମୈଁ ଥା ତବ ହରି ନହାଁ, ଅବ ହରି ହୈ ତୋ ମୈଁ ନାହିଁ ।'' ପ୍ରେମଗଲି ଅତି ସାଙ୍କରୀ, ତା ମେଁ ଦୋ ନ ସମାହି ।''**



# ।। ପରମାତ୍ମା ସ୍ୱଭାବ ।।

ପରମାତ୍ମା ହେଉଛନ୍ତି ଆମର ସ୍ୱଭାବ । ତାଙ୍କୁ ପାଇବା ପାଇଁ କେଉଁଠିକି ଯାତ୍ରା କରିବାକୁ ପଡ଼ିବ ନାହିଁ । ପରମାତ୍ମା ହେଉଛନ୍ତି ସହଜ, ସ୍ୱୟଂ ନିଜେ । ତେଣୁ କିଏ କାହାକୁ ଖୋଜିବାକୁ କେଉଁଠିକି ଯିବ ? ସହଜର ଅର୍ଥ ହେଉଛି ଆମର ନିଜ ସ୍ୱଭାବ ଅଗ୍ନିର ଉଷ୍ଣତା ଭଳି ଅଭିନ୍ନ । ସହଜର ଉଦ୍ଦେଶ୍ୟ ହେଉଛି ଖୁବ୍ କମ୍ କଷ୍ଟରେ ମିଳିଗଲା ଭଳି – ଏମିତି ବି ବୁଝି ନିଅ ନାହିଁ । ସହଜର ଉଦ୍ଦେଶ୍ୟ ତୁମେ ନିଜକୁ ବୋଲି ଜାଣିନିଅ । ନିଜ ବ୍ୟତୀତ ବିଶ୍ୱରେ କିଛି ସହଜ ନାହିଁ । ସଂସାରରେ ସବୁକିଛି ହେଉଛି ସାଧନ ସାଧ୍ୟ ଏବଂ କଠିନ । ସହଜର ଉଦ୍ଦେଶ୍ୟ ହେଉଛି ନା ଦୂରରୁ ହୋଇଥାଏ, ନା ଭିନ୍ନ ଦ୍ୱାରା ହୋଇଥାଏ । ସହଜ ଅର୍ଥାତ୍ ସ୍ୱୟଂ ।

ପରମାତ୍ମାଙ୍କୁ ପାଇବା ପାଇଁ ବାହାରୁ ନିଜ ଉପରକୁ ଆସିବାକୁ ହେବ । ଯାତ୍ରା ଦୂରବର୍ତ୍ତୀ ସ୍ଥାନ, ବ୍ୟକ୍ତି ପାଇଁ ହୋଇଥାଏ । ପରମାତ୍ମା ସବୁ ଜୀବମାନଙ୍କ ହୃଦୟରେ ବିରାଜିତ । ଯେମିତି ଯାତ୍ରା କରି ସାରି ଯେତେବେଳେ ଘରକୁ ଫେରିଲେ ସେତେବେଳେ ସବୁ ବାହନ, ବହିବାର ସବୁ ସାଧନ ଚାଲିଯାଏ, ସେହିପରି ଆତ୍ମଭାବ ଯେତେବେଳେ ଜାଗ୍ରତ ହୋଇଯାଏ, ସେତେବେଳେ ସବୁ ପ୍ରକାରର ସାଧନ, ପୂଜା, ପାଠ, ମନ୍ତ୍ର, ମାଳା, ଧ୍ୟାନ, ସମାଧି, ଯୋଗ, ଯଜ୍ଞାଦି ଚାଲିଯାଇଥାଏ । କୁଆଡ଼େ ଯିବାର ନାହିଁ । ପରମାତ୍ମା ଏଇଠି ଏବେ ଅଛନ୍ତି ଏବଂ ସିଏ ହିଁ ହେଉଛ ତୁମେ । କାରଣ ଅଖଣ୍ଡ ହୋଇଥିବାରୁ ସିଏ ସବୁ ଦେଶ, କାଳ ଏବଂ ବସ୍ତୁ ରୂପରେ ଅଛନ୍ତି ।

ପରମାତ୍ମା ଓ ତୁମ ଭିତରେ କୌଣସି ପ୍ରକାରର ପ୍ରତିବନ୍ଧକ ନାହିଁ । କୌଣସି ମନ୍ତ୍ର, ମାଳା, ପୂଜା, ଆରତୀ, ହୋମ, ଯଜ୍ଞ, ଧ୍ୟାନ, ସମାଧି, ବ୍ରତ, ଉପବାସ, ତପ, ତୀର୍ଥର ଆବଶ୍ୟକତା ନାହିଁ ।

ପରମାତ୍ମାଙ୍କୁ ପାଇବା ପାଇଁ ବୁଦ୍ଧି ଆବଶ୍ୟକ । ପାଇବାର ଅର୍ଥ ହେଉଛି ପ୍ରାପ୍ତ ପରମାତ୍ମାଙ୍କ ଅନୁଭବ ଜଗାଇବା ପାଇଁ ବୁଦ୍ଧିର, ବିଚାରର ଆବଶ୍ୟକତା ଅଛି । ପରମାତ୍ମା ଦୂରରେ ଥାନ୍ତେ ଯଦି ତେବେ ଯାତ୍ରା କଲେ ସେ ମିଳିଯାଇଥାନ୍ତେ । ସ୍ୱୟଂ ନିଜେ ତ ପରମାତ୍ମା, ତେଣୁ ଯାତ୍ରା କରିବ କିପରି, କିପରି ଡାକି ପାରିବ ? ଧ୍ୟାନ କାହାର କରିବ । ତୁମେ ନିଜର ଅହଂକାରକୁ ହଜାଇଦେଲେ ପରମାତ୍ମା ମିଳିସାରିଥିବାର ପାଇବ । ଅହଂକାର ହିଁ ହେଉଛି ପରମାତ୍ମାଙ୍କ ହେବାରେ ପ୍ରତିବନ୍ଧକ ।

ସତ୍ୟ ଭିତରେ ବିଦ୍ୟମାନ ଅଛି, ତାକୁ ବାହାରୁ ମୋଡ଼ିଆଣ ନାହିଁ, ଭିତର ଆଡ଼କୁ ଜାଗିଯାଇ ଜାଣିନିଅ । ତାକୁ ପଦାର୍ଥ ଭଳି ବାହାରେ ଖୋଜନାହିଁ । ପରମାତ୍ମାଙ୍କୁ ଖୋଜି ଦେଲେ ମିଳିଯାଉଥାନ୍ତେ ଯଦି ତେବେ ଜାଣିବ ଯେ ତାହା ପରମାତ୍ମାଙ୍କର ବାସ୍ତବ ସ୍ୱରୂପ ନୁହେଁ । ପରମାତ୍ମା ତ ତୁମରି ମନ, ବୁଦ୍ଧି, ଆଖି, କାନର ପଛପଟେ ଛିଡ଼ା ହୋଇ ସବୁ ଦେଖୁଛନ୍ତି, ସବୁ ଶୁଣୁଛନ୍ତି ।

ସମ୍ପତ୍ତି, ଖଜଣା ତୁମରି ଭିତରେ ଅଛି ଏବଂ ତୁମେ ତାକୁ ବାହାରେ ଖୋଜୁଛ, ସେଥିପାଇଁ ଦୁଃଖ ଭୋଗ କରୁଛ । ଯାହାକୁ କେବେହେଲେ କେହି ହଜାଇ ନାହିଁ, ତାକୁ ତୁମେ ବାହାରେ କିପରି ଖୋଜିପାରିବ ? **"କସ୍ତୁରୀ କୁଣ୍ଡଳ ବସେ, ମୃଗ ଢୁଂଢେ ବନମାହୀ,** ସାଧନ କରିବା ଦ୍ୱାରା ଯାହା ମିଳିବ, ତାହା ହିଁ ଅନିତ୍ୟ ସଂସାର ହେବ । କିଛି ନକରି ବି ଯିଏ ପ୍ରଥମରୁ ଅଛନ୍ତି, ସିଏ ହେଉଛନ୍ତି ନିତ୍ୟ ପରମାତ୍ମା, ସିଏ ହିଁ ତୁମେ ।

ବିଶିଷ୍ଟ ହେବାର ଚେଷ୍ଟା ହିଁ ହେଉଛି ଅହଂକାରର ଭୋଜନ । ସାଧାରଣ ହେବା ହିଁ ଅହଂକାରର ମୃତ୍ୟୁ । ବିଶିଷ୍ଟ ହେବା ପାଇଁ ଚେଷ୍ଟା କରନାହିଁ । ଅସାଧାରଣ ହେବା ହିଁ ସ୍ୱରୂପ ଠାରୁ ବିଚ୍ୟୁତ ହେବା । ପରମାତ୍ମା ବିଶିଷ୍ଟ ନୁହଁନ୍ତି । ପଣ୍ଡିତ, ଜ୍ଞାନୀ, ମହାତ୍ମା, ତ୍ୟାଗୀ କେବେ ହେଲେ ହୁଅନାହିଁ । କର୍ତ୍ତା ହୁଅ ନାହିଁ, ସାକ୍ଷୀ ରୁହ । ବିଶିଷ୍ଟ ହେବା ପାଇଁ ଚେଷ୍ଟା ହିଁ ହେଉଛି ବନ୍ଧନ । ତୁମେ ପରମାତ୍ମାଙ୍କ ଠାରୁ କେବେ ହେଲେ ପୃଥକ ହୋଇ ନାହିଁ । ବିନା ସାଧନରେ ସିଏ ମିଳିପାରନ୍ତି ନୁହେଁ ମିଳି ସାରିଛନ୍ତି । ସମସ୍ତ ମାନ୍ୟତା, ଅହଂକାରର କବର ବନାଇ ତାହାର ସାକ୍ଷୀ ରୁହ । ମୋର ତ୍ୟାଗ ଯେମିତି କାହାର ସେମିତି ନାହିଁ, ମୋର ଜ୍ଞାନ ଯେମିତି କାହାର ସେମିତି ନାହିଁ, ମୋ' ଭଳି କେହି ମହାତ୍ମା ନାହାନ୍ତି, ମୁଁ ହେଉଛି ସର୍ବତ୍ୟାଗୀ, ମୁଁ ନିଜର ଭୋଜନ ନିଜେ ତିଆରି କରି ଖାଏ, ମୁଁ ଉଚ୍ଚ ବର୍ଣ୍ଣର ବ୍ରାହ୍ମଣ – ଏହିଭଳି କୌଣସି ପ୍ରକାରର ଅହଂକାର କେବେହେଲେ ରଖନାହିଁ ।

ଭାବ, କିଏ ତୁମର ଏଇ ଶରୀର ରୂପକ ମାଟିର ଦୀପରେ ଜ୍ୟୋତି ପ୍ରକଟ କରାଉଛନ୍ତି ? ଏହା ହେଉଛି ତୁମରି ଚେତନା, ତୁମର ହୋଶ୍, ଏଇ ପରମାତ୍ମାଙ୍କର କିରଣ ହିଁ ତ ତୁମରି ଭିତରେ

ଅଛି, ସେଥିପାଇଁ ତ ତୁମର ଏଇ ଶବ ଶରୀର କ୍ରିୟାଶୀଳ ହେଉଅଛି ଏବଂ ତୁମେ ପଚାରୁଛ ପରମାତ୍ମା କେଉଁଠି ମିଳିବେ ? ମାତ୍ର ଏତିକି ଉତ୍ତର ଦେଲ, ସେଇ ପରମାତ୍ମା କେଉଁଠି ନାହାନ୍ତି, ସିଏ କ'ଣ ନୁହଁନ୍ତି, କେତେବେଳେ ନାହାନ୍ତି ? ଆଖି ଉପରେ ପର୍ଦ୍ଦା ପଡ଼ିଗଲେ ପଲକରେ ବିରାଟ ସୂର୍ଯ୍ୟ ଲୁଚିଯାଇଥାନ୍ତି । ଆଖିରେ କୌଣସି ପର୍ବତ ପକେଇବାକୁ ପଡ଼େନାହିଁ, ଛୋଟିଆ ବାଲି କଣାଟିଏ ଆଖି ଭିତରେ ପଡ଼ିଗଲା ତ ସିଏ ସୂର୍ଯ୍ୟଙ୍କୁ ଲୁଚାଇ ଦେଇଥାଏ । ସେହିପରି ଦେହଭାବ ଯୋଗୁଁ ହିଁ ବିରାଟ, ଅଖଣ୍ଡ ପରମାତ୍ମା ହୋଇଥିଲେ ବି ଜଣାପଡ଼ନ୍ତି ନାହିଁ ।

ପରମାତ୍ମା ଥିବାର ଏହା ହିଁ ହେଉଛି ପ୍ରତ୍ୟକ୍ଷ ପ୍ରମାଣ ଯେ ତୁମେ ଅଛ । ତୁମ ଭିତରେ ଯଦି ସିଏ ନଥାନ୍ତେ ତେବେ ତୁମେ ନଥାନ୍ତ । ତୁମେ ରହିପାରିନଥାନ୍ତ । ସିଏ ନଥାନ୍ତେ ଯଦି ତେବେ ଏତେ ପୂତିଗନ୍ଧମୟ ଶରୀର ଭିତରେ ବସି, କିଏ ଭୋଜନରୁ ରସ, ରକ୍ତ, ମାଂସରେ ତିଆରି ଶରୀରକୁ ପୁଷ୍ଟ ରଖିଥାନ୍ତା ? ତୁମ ଶରୀରର ଦୁର୍ଗନ୍ଧ ମୁହଁରୁ, ଝାଳରୁ, ମଳରୁ ବାହାରୁଥିବାରୁ ତୁମକୁ ଯେତେବେଳେ ପସନ୍ଦ ଲାଗେ ନାହିଁ, ସେତେବେଳେ ନିରନ୍ତର ଭିତରେ ବସି ସିଏ ତ ସବୁ କିଛି କରୁଛନ୍ତି । ନହେଲେ ତୁମେ ଜୀବିତ ରହି ପାରିନଥାନ୍ତ ।

ପରମାତ୍ମା ପ୍ରତ୍ୟେକ ମୁହୂର୍ତ୍ତରେ ତୁମ ସହିତ ଅଛନ୍ତି । ପ୍ରତିଟି ଶ୍ୱାସରେ ସିଏ ପ୍ରବାହିତ ହେଉଛନ୍ତି । ଜୀବନ ଅଛି, ତାହା ତ ହେଉଛି ପରମାତ୍ମା ଥିବାର ପ୍ରତ୍ୟକ୍ଷ ପ୍ରମାଣ । ଶ୍ୱାସ ଚାଲୁଛି, ତେଣୁ ପରମାତ୍ମାଙ୍କ କୃପା ବର୍ଷା ତୁମ ଉପରେ ହୋଇଚାଲିଛି । ପରମାତ୍ମା ତୁମ ଠାରୁ ଅଲଗା ହୋଇ ପାରିବେ ନାହିଁ । ତୁମେ ତାଙ୍କୁ ଦେଖ ବା ନଦେଖ, ଚାହଁ ବା ନ ଚାହଁ, ମାନ ବା ନମାନ, ଶ୍ରଦ୍ଧା କର ବା ନକର, ବିଶ୍ୱାସ କର ବା ନକର କିନ୍ତୁ ସିଏ ନିରନ୍ତର, ନିରପେକ୍ଷ ସତ୍ୟ ତୁମରି ସ୍ୱରୂପ ଭିତରେ ବିଦ୍ୟମାନ ରହିଥାନ୍ତି । ଯିଏ ତୁମଠାରୁ ଦୂର ହୋଇଯିବ, ଦୂରରେ ରହିବ ସିଏ ବ୍ୟକ୍ତି ହେବ, ସିଏ ପରମାତ୍ମା ହେବ ନାହିଁ । ଏବଂ ତୁମେ ତାକୁ ଖୋଜିବା ପାଇଁ ତୀର୍ଥ, ମନ୍ଦିର, ମସଜିଦ୍, କାବା ଚାଲିଯାଇଥାଅ । **''କସ୍ତୁରୀ କୁଣ୍ଡଲ ବସେ, ମୃଗ ଢୁଂଢେ ବନ ମାହୀ''** ଏହି ଭଳି ଅଜ୍ଞାନତା ମନୁଷ୍ୟ ଭିତରେ ଚାଲି ଆସୁଛି ବାପା, ଗୋସେଇଁ ବାପାଙ୍କ ଅମଳରୁ । ବଲବରୁ ଆଲୋକ ଆସୁଛି ଏହା ହିଁ ତ ହେଉଛି ବିଜୁଳୀ ଶକ୍ତି ଥିବାର ପ୍ରମାଣ । ସେହିପରି ଶରୀର ଭିତରେ ଚେତନତା ଅଛି ତେଣୁ ଏହାହିଁ ହେଉଛି ପରମାତ୍ମାଙ୍କ ଥିବାର ପ୍ରମାଣ ।

ସକ୍ରେଟିଶ୍, ମନସୁର, ଯୀଶୁ, ଶଙ୍କରାଚାର୍ଯ୍ୟ, ଦୟାନନ୍ଦ, କବୀର, ରଇଦାସ, ରଜ୍ଜବ ଇତ୍ୟାଦି ହସି-ହସି ସମାଜରୁ ନିଜର ନିନ୍ଦା, ଅପମାନ ଏବଂ ହତ୍ୟାକୁ ସ୍ୱୀକାର କରିନେଇ ସତ୍ୟ, ଧର୍ମର ପ୍ରଚାର କରି ଚାଲିଥିଲେ ।

ଉପନିଷଦର ଋଷି କହନ୍ତି, ଯିଏ ଦେହ ଭିତରେ ଜାଣିବାବାଲାକୁ ଜାଣିନେଲା, ସିଏ ସବୁ ଜାଣିନେଲା, ସିଏ ହିଁ ବ୍ରହ୍ମ । ସେଇ ଜଣେ ହିଁ ସମସ୍ତଙ୍କ ଭିତରେ ବସି ଜାଣିଥାନ୍ତି, ତାଙ୍କ ବ୍ୟତୀତ ଅନ୍ୟ କେହି ଦେଖିବାବାଲା ଦ୍ରଷ୍ଟା ଏବଂ ଜାଣିବାବାଲା ଜ୍ଞାତା ନାହାନ୍ତି । ତେଣୁ ପରମାତ୍ମାଙ୍କୁ ଦୃଶ୍ୟ ଭଳି ଭାବିବା, ଦେଖିବା ଓ ଜାଣିବା ବନ୍ଦ କରି ଦିଅ । ପରମାତ୍ମାଙ୍କୁ ଏବେ ଦ୍ରଷ୍ଟା ଭଳି ଦେଖିବା ଆରମ୍ଭ କରିଦିଅ । ତୁମର ଦେହ ହେଉଛି ମନ୍ଦିର । ପରମାତ୍ମା ତୁମ ଦେହ ଭିତରେ ଦ୍ରଷ୍ଟା, ସାକ୍ଷୀ, ଚେତନ ରୂପରେ ବିଦ୍ୟମାନ ଅଛନ୍ତି । ଖୋଜିବାର ଦିଗ ବଦଳାଇବାକୁ ହେବ । ଦୃଶ୍ୟ ଅଛି ବାହାରେ ଏବଂ ଦ୍ରଷ୍ଟା ଅଛନ୍ତି ଭିତରେ । ଦୃଶ୍ୟ ହେଉଛି ପର ଏବଂ ଦ୍ରଷ୍ଟା, ପରମାତ୍ମା, ଆତ୍ମା, ଚୈତନ୍ୟ ହେଉଛନ୍ତି ସ୍ୱ । ଦୃଶ୍ୟକୁ ଦେଖିବାର ଅଛି ତ ଆଖି ଖୋଲିବାକୁ ହେବ । ଦ୍ରଷ୍ଟାକୁ ଦେଖିବାର ଅଛି, ଜାଣିବାର ଅଛି ତ ଆଖି ବନ୍ଦ କରିବାକୁ ହେବ ।

ଯିଏ କେବଳ ଦୃଶ୍ୟ ଭିତରେ ହିଁ ମାତି ରହିଥାଏ, ସିଏ କେବେହେଲେ ଆତ୍ମାକୁ ଅର୍ଥାତ୍ ନିଜକୁ ଜାଣିପାରିବ ନାହିଁ । ଯିଏ ତୁମରି ଭିତରେ ଲୁଚି ବସିଛନ୍ତି, ସିଏ ହେଉଛନ୍ତି ପରମ ପଦ, ତାଙ୍କୁ ଯଦି ତୁମେ ନପାଇଲ, ନ ଜାଣିଲ ତେବେ ତୁମେ ଭିକାରୀ ହୋଇ ରହିଲ ଓ ମରିଗଲ ।

ଯେତେବେଳେ ପରମାତ୍ମାଙ୍କ ସହିତ ଏକତ୍ୱର ବୋଧ ହୋଇଗଲା, ତା'ପରେ ପୁଣି ମୋକ୍ଷ ପାଇବା କ'ଣ ? ମୋକ୍ଷ ତ ହେଉଛି ଆମର ସହଜସିଦ୍ଧ ସ୍ୱଭାବ । ପୁଣି ବନ୍ଧନ କ'ଣ ?

ଭଗବାନ କୌଣସି ବସ୍ତୁ ନୁହନ୍ତି ଯେ ତୁମକୁ କେହି କୌଣସି ଆଙ୍ଗୁଳିର ଈଶାରା ଦେଇ ଦେଖାଇପାରିବ, ବତାଇ ପାରିବ । ଭଗବାନ ହେଉଛନ୍ତି ତୁମରି ଭିତରେ ଲୁଚି ରହିଥିବା ଚେତନା । ସେଇ ଯିଏ ତୁମରି ଭିତରୁ ମୋତେ ବୁଝୁଛନ୍ତି, ତୁମରି ଭିତରୁ ଥାଇ ଯିଏ ମୋତେ ଦେଖୁଛନ୍ତି, ତାକୁ ହିଁ ଚିହ୍ନି ପକାଅ ଏବଂ ଭଗବାନଙ୍କ ସହିତ ପରିଚୟ ହୋଇଯିବ । ନିଜର ଚୈତନ୍ୟକୁ ଜାଣିନେବା ହିଁ ପରମାତ୍ମାଙ୍କୁ ପ୍ରାପ୍ତ କରିନେବା । ବାହାରେ ଖୋଜୁଥାଅ ଯଦି ତେବେ ତାଙ୍କୁ କେବେହେଲେ ଖୋଜି ପାଇବନି । ଖୋଜୁଥାଅ ତାଙ୍କୁ ମନ୍ଦିର-ମସଜିଦ୍‌ରେ, କାବା-କୈଳାସରେ ଜୀବନସାରା, ତୁମେ ଖୋଜି ପାଇବନି । ତୁମେ ଖୋଜିବାର ଭୁଲ୍ ରାସ୍ତାକୁ ଆପଣେଇ ନେଇଛ । ସେଇଠି ପରମାତ୍ମା ନାହାନ୍ତି । ପରମାତ୍ମାଙ୍କୁ ବାହାରେ ଖୋଜିବାର ଚେଷ୍ଟା କରିବା ହିଁ ମୂର୍ଖତାପୂର୍ଣ୍ଣ ।

ପରମାତ୍ମା ତୁମ ଭିତରେ ଅଛନ୍ତି ସେଥିପାଇଁ ତ ତୁମେ ଜାଣୁଛ, ଦେଖୁଛ, ଶୁଣୁଛ, ଚାଲୁଛ । ସିଏ ତୁମ ଭିତରେ ଅଛନ୍ତି ବୋଲି ତୁମେ ଅଛ ଏବଂ ତୁମେ ପୁଣି ପଚାରୁଛ ସିଏ କେଉଁଠି ମିଳିବେ ? ପରମାତ୍ମା ତ ଅଛନ୍ତି, ସିଏ ତ ଖୋଜିବା ବାଲା ସାଙ୍ଗରେ ରହିଛନ୍ତି । ହଁ, ବର୍ତ୍ତମାନ ତୁମେ ଯାହା

ପଛରେ ଧାଉଁଛ ସିଏ ପରମାତ୍ମା ନୁହଁନ୍ତି, ସିଏ ତ ହେଉଛି ମୂର୍ତ୍ତିକାର, ଚିତ୍ରକାରଙ୍କ ମନର ଧାରଣା, ମନର କଳ୍ପନା । କେହି ମନ୍ଦିର, କେହି ଅମରନାଥ, କେହି ମାନସରୋବର-କୈଳାସ, କେହି କାବା, କେହି ଗିରନାର, କେହି ଗୋବର୍ଦ୍ଧନ, କେହି ଶଙ୍କରଙ୍କ ପଛରେ, କେହି ବିଷ୍ଣୁଙ୍କ ପଛରେ, କେହି ରାମଙ୍କ ପଛରେ ଦଉଡୁଛି, କେହି ମସଜିଦ୍, କେହି ମନ୍ଦିର ଆଡ଼କୁ ଦୌଡୁଛି । ନିଜ ଭିତରକୁ ଚାଲ ସେଇଠି ସେ ମିଳିବେ । ତୁମେ ଲକ୍ଷେ ଥର କାଶୀ କି ବୃନ୍ଦାବନ ଚାଲିଯାଅ, ଯିଏ ସେଇଠି ବର୍ଷ ବର୍ଷ ଧରି ରହିଛନ୍ତି ତାଙ୍କୁ ଯେତେବେଳେ ମିଳିଲା ନାହିଁ, ସେତେବେଳେ ତୁମକୁ କିପରି ମିଳିବ ? ପଣ୍ଡିତେ ତୁମକୁ ବାହାରର ତୀର୍ଥ, ମନ୍ଦିର ଆଡ଼କୁ ଠେଲି ଦେଇଛନ୍ତି । କିନ୍ତୁ ସଦ୍‌ଗୁରୁ ସିଏ, ଯିଏ ତୁମ ଭିତରକୁ ଯିବାର ମାର୍ଗ ବତାଇଦେବେ ।

ଜୀବନ ହେଉଛି ପରମାତ୍ମାଙ୍କର ଖୋଲା ପୁସ୍ତକଟିଏ, ଯାହା ପରମାତ୍ମାଙ୍କ ହାତରେ ଲେଖା ହୋଇ ଆଗରେ ପଡ଼ିଛି । ଗୋଲାପ ଫୁଟିଛି, ସେଥିରେ ତୁମକୁ ପରମାତ୍ମା ଦେଖାଯାଉନାହାନ୍ତି । ତୁମେ ମୃତ ପୁସ୍ତକ ଗୁଡ଼ିକ ଭିତରେ କ'ଣ ଖୋଜିଚାଲିଛ ? ସିଏ ତ ହେଉଛି ଶବ୍ଦଜାଲ, ଏକ ଜଙ୍ଗଲ, ସେଥିରେ ପଶିଯିବ ତ ବାଟବଣା ହୋଇଯିବ । ଅନ୍ଧମାନଙ୍କୁ ହାତୀ ଆଗରେ ଛିଡ଼ା କରାଇଦିଅ, ତଥାପି ସୁଦ୍ଧା ସେମାନେ ସ୍ପର୍ଶ କରୁଥିଲେ ବି ବୋଧ କରିପାରିବେ ନାହିଁ । ପାଞ୍ଚଜଣ ଅନ୍ଧ ହାତୀ ଦର୍ଶନ ଭଳି ଅନୁଭବରେ ଅଟଳ ।

ନିଜକୁ ଜାଣିନେବା ଓ ପରମାତ୍ମାଙ୍କୁ ଜାଣିନେବା ଦୁଇଟି କଥା ନୁହେଁ । ସ୍ୱୟଂକୁ ଜାଣିନେଲ ଅର୍ଥ ପରମାତ୍ମାଙ୍କୁ ଜାଣିଲ, ପରମାତ୍ମାଙ୍କୁ ଜାଣିନେଲ ଅର୍ଥ ନିଜକୁ ଜାଣିଲ । ଛୋଟ ଗଛକୁ ଜାଣିଲ ତ ବଗିଚାକୁ ଜାଣିଲ, ବଗିଚାକୁ ଜାଣିଲ ତ ଛୋଟ ଗଛକୁ ଜାଣିଲ । ଏମିତି ହୁଅନ୍ତା ଯଦି ଭଲ ହୁଅନ୍ତା, ଏମିତି ନ ହୁଅନ୍ତା ତ ଭଲ ହୁଅନ୍ତା, ଯେପର୍ଯ୍ୟନ୍ତ ଏଭଳି ଭାବ ରହିଛି, ସେପର୍ଯ୍ୟନ୍ତ ମନ ତିଷ୍ଠି ରହିଛି । ସେପର୍ଯ୍ୟନ୍ତ ସଂସାର ଜାରି ରହିଛି ।

ଶୋଇ ଶୋଇ ଦେଖୁଥିବ ଯଦି ସଂସାର ଦେଖାଯିବ । ଜାଗ୍ରତ ହୋଇ ଦେଖିବ ଯଦି ପରମାତ୍ମାଙ୍କ ବ୍ୟତୀତ ଆଉ କିଛି ହେଲେ ନାହିଁ ।

ତୁମେ ଚାଲିଲ ତ ବାଟବଣା ହେବ, ମୃଗ ଯଦି କସ୍ତୁରୀକୁ ଖୋଜିବାକୁ ବାହାରିଗଲା ତ ସିଏ ବାଟବଣା ହେବ । ପରମାତ୍ମା ପାଇଁ ତୁମେ ଚାଲ ନାହିଁ, ଛିଡ଼ା ହୁଅ । ପହଞ୍ଚିବାର ଅଛି ତ ସେଇଠି ଅଟକିଯାଅ, ଯେଉଁଠି ଛିଡ଼ା ହୋଇଛ, ସେଇଠି ମୂର୍ତ୍ତିମନ୍ତ ହୋଇଯାଅ । ପରମାତ୍ମା ଗନ୍ତବ୍ୟ ନୁହଁନ୍ତି । ସେଇଠି ତୁମେ ପ୍ରଥମରୁ ହିଁ ଛିଡ଼ା ହୋଇଛ, କେହି ଗତି କରି ଯାଇ ସେଇଠି ପହଞ୍ଚି ପାରିବ ନାହିଁ । ଗତି ସଂସାର ପାଇଁ ଅଛି, କୃତ୍ୟ ସଂସାର ପାଇଁ ଅଛି । ଖୋଜିକରି, ସାଧନ କରି

ସତ୍ୟକୁ କେହି ଆଜିପର୍ଯ୍ୟନ୍ତ ପାଇ ନାହାଁନ୍ତି, କାରଣ ସତ୍ୟ ହେଉଛ ତୁମେ, ସିଏ ତୁମଠାରୁ ଦୂର ନୁହେଁ ବା ଭିନ୍ନ ନୁହେଁ । ସତ୍ୟ ହେଉଛି ତୁମର ନିଜ ଅସ୍ତିତ୍ୱ । ସତ୍ୟ ହେଉଛି ତୁମ ସତ୍ତାର ନାମ ।

କେହି କେବେହେଲେ ଅଜ୍ଞାନୀ ହୋଇନାହିଁ, ଅଜ୍ଞାନୀ ହେବାର କୌଣସି ଉପାୟ ନାହିଁ, ଅଜ୍ଞାନୀ ବୋଲି ତୁମେ ନିଜକୁ ମାନିନେଇଛ, ଅଜ୍ଞାନ ତୁମର ସ୍ୱଭାବ ନୁହେଁ । ତୁମେ ଅଜ୍ଞାନୀ ନୁହଁ । ତୁମେ ତ ଅଜ୍ଞାନକୁ ଜାଣିଲାବାଲା ଦ୍ରଷ୍ଟା । ଜ୍ଞାନୀ ହେବା ପାଇଁ ବି ଚେଷ୍ଟା କରିବାର ଆବଶ୍ୟକତା ନାହିଁ । କେବଳ ଏଇ ସତ୍ୟ କୁ ଜାଣିବାକୁ ହେବ ଯେ ଜ୍ଞାନ ହେଉଛି ତୁମର ସ୍ୱଭାବ । ଚୈତନ୍ୟ ହେଉଛି ତୁମର ସ୍ୱଭାବ । ତୁମ ଭିତରେ ଜ୍ଞାନର ଜ୍ୟୋତି ପ୍ରଜ୍ୱଳିତ ହେଉଅଛି । ପାଞ୍ଚ ଜ୍ଞାନେନ୍ଦ୍ରିୟ ଦ୍ୱାରା ସିଏ ବାହାରର ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ରୂପରେ ପ୍ରକଟ ହେଉଛି । ତୁମେ ଚାହୁଁଛ ତ ବର୍ତ୍ତମାନ ଏଇ ଭ୍ରମରୁ ତୁମେ ମୁକ୍ତ ହୋଇପାରିବ ? ତୁମେ ନିଜକୁ ଜ୍ଞାନସ୍ୱରୂପ ବୋଲି ସ୍ୱୀକାର ନକର, ତୁମ ଇଚ୍ଛା ।

ପରମାତ୍ମା ହେଉଛ ତୁମେ, ତୁମ ଭିତରେ ସିଏ ଅଛନ୍ତି । ମନ୍ଦିର, ମସଜିଦ୍‌ରେ କାହିଁକି ଖୋଜିବାକୁ ଯାଉଛ, କାହିଁକି ଅଯଥାରେ ସମୟ ନଷ୍ଟ କରୁଛ ? ସବୁ ଜାଗାକୁ ଯାଇ, ଖୋଜିକରି, ନିରାଶ ହୋଇ ତୁମେ ଦେଖି ସାରିଛ । କେତେ ଲୋକ ଲୋକାନ୍ତରରେ ତୁମେ ବାଟବଣା ହୋଇଛ । ଏବେ ଗୋଟିଏ କାମ କର, ନିଜ ଭିତରେ ଖୋଜି ନିଅ । ଯିଏ ଭିତରେ ଖୋଜିଛି, ସିଏ କେବେହେଲେ ଖାଲି ହାତରେ ଫେରି ଆସିନାହିଁ ଏବଂ ଯିଏ ବାହାରେ ଖୋଜିଛି, ସିଏ କେବେହେଲେ ଭରା ହାତରେ ଫେରିଆସିନାହିଁ । କେବଳ ପରମାତ୍ମାଙ୍କ ବିସ୍ମୃତି ହୋଇଯାଇଛି, ସ୍ମୃତି ହେବାର ଅଛି । ତୁମେ ତ ତାଙ୍କୁ କେବେହେଲେ ହଜାଇ ନାହଁ ।

**ଜିନ ଖୋଜା ତିନି ପାଇୟା, ଗହରେ ପାନୀ ପୈଠ ।**
**ମୈଁ ବୋରୀ ଡୁବନ ଡରୀ, ରହି କିନାରେ ବୈଠ ।।**

ତୁମେ ହିଁ ହେଉଛ ଭଗବାନ, ତୁମେ ହିଁ ଭକ୍ତ, ତୁମେ ହିଁ ପୂଜା ଏବଂ ତୁମେ ହେଉଛ ପୂଜାରୀ ଏବଂ ତୁମେ ହେଉଛ ପୂଜ୍ୟ ଏବଂ ଯେପର୍ଯ୍ୟନ୍ତ ଏହା ତୁମର ସ୍ମରଣରେ ନ ଆସିଛି, ସେ ପର୍ଯ୍ୟନ୍ତ ତୁମେ ବାହାରେ ଖୋଜି ଖୋଜି ବାଟବଣା ହୋଇ ମରି ଚାଲିଥିବ । ଯେପରି ମୃଗର ନାଭିରେ କସ୍ତୁରୀ ଅଛି କିନ୍ତୁ ସିଏ ବାହାରେ ଖୋଜୁଛି, ସେହିପରି ପରମାତ୍ମା ହେଉଛ ତୁମେ କିନ୍ତୁ ଅଜ୍ଞାନତା ଯୋଗୁ ତୁମେ ବାହାରେ ଖୋଜି ଖୋଜି ବାଟବଣା ହୋଇ ମରି ଚାଲିଥିବ । ଚିନ୍ମୟ ମନ୍ଦିର ଏବଂ ଦେବତା ହେଉଛ ତୁମେ ନିଜେ । ଭୁଲ୍‌ରେ ତୁମେ ମୃଣ୍ମୟ ମନ୍ଦିର ଏବଂ ଦେବ ପ୍ରତିମା ଭିତରେ ଖୋଜି ଚାଲିଥିଲ । ମନୁଷ୍ୟ ତିଆରି ମନ୍ଦିର, ମୂର୍ତ୍ତିଗୁଡ଼ିକ ଭିତରେ ପରମାତ୍ମାଙ୍କୁ ଡାକୁଥିଲ ଏବଂ

ଯାହାକୁ ତୁମେ ଖୋଜୁଥିଲ ସିଏ ତୁମରି ଭିତରେ ସର୍ବଦା ଉପସ୍ଥିତ ଥଲେ । ସିଏ ହେଉଛ ତୁମେ । ଆଉ ମୂର୍ତ୍ତି ତିଆରି କରିବାର ଆବଶ୍ୟକତା ନାହିଁ ।

ପ୍ରତ୍ୟେକ ବ୍ୟକ୍ତି ନିଜ ଇଷ୍ଟଙ୍କୁ, ଭଗବାନଙ୍କୁ ବଡ଼, ବିରାଟ, ବିଶାଳ ବୋଲି ମାନିଥାଏ, କିନ୍ତୁ ମନ୍ଦିର, ମସ୍‌ଜିଦ୍, ଚର୍ଚ୍ଚ, ଗୁରୁଦ୍ୱାରରେ ସେ ତାଙ୍କୁ ସୀମିତ କରି ରଖିଦେଇଛି । ଭଗବାନଙ୍କ ଅର୍ଥ ହେଉଛି ଯେ ମହାନ୍, ସବୁଠାରୁ ବଡ଼, ଅସୀମ । ତୁମର ବୁଦ୍ଧି ଯେପର୍ଯ୍ୟନ୍ତ ସୀମିତ ରହିଥିବ, ସେପର୍ଯ୍ୟନ୍ତ ତୁମର ଭଗବାନ ବି ସେଇ ସୀମା ଭିତରେ ବନ୍ଧା ହୋଇ ରହିଥିବେ । ପୁଣି ତୁମେ ମନ୍ଦିର, ମସ୍‌ଜିଦ୍ ଭାଙ୍ଗିଦେବ । ଜଣେ ଅନ୍ୟକୁ ଜଳାଇଦେବ, ମୁଣ୍ଡ ଫଟାଇଦେବ, ଖଣ୍ଡା, ଛୁରୀ ଚଳାଇଦେବ । ତେଣୁ ନିଜର ଜ୍ଞାନକୁ ମହାନ ବନାଅ ।

ପରମାତ୍ମା ହଜାର ହଜାର ଢଙ୍ଗରେ, ରୂପରେ ତୁମ ସମ୍ମୁଖକୁ ଆସୁଛନ୍ତି କିନ୍ତୁ ତୁମେ ନିଜକୁ ବୁଝାଇ ନେଇଥାଅ ଯେ – ଭିକାରୀ ହୋଇଥିବ, କୁକୁର ହୋଇଥିବ, ଗାଈ ହୋଇଥିବ, ବାଟଚଲା ଲୋକ ହୋଇଥିବ, ତା'ର ପଦଧ୍ୱନି ହୋଇଥିବ । ଅନେକ ପ୍ରକାର ରୂପରେ ସେ ତୁମ ସମୀପ ହୋଇଥାନ୍ତି କିନ୍ତୁ ତୁମେ ତାକୁ ଦଲକାଏ ପବନ ଆସିଲା ଭଳି ମାନିନେଇଥାଅ । ତୁମର ହୃଦୟର ସ୍ପନ୍ଦନ ଠାରୁ ବି ଅଧିକ ନିକଟବର୍ତ୍ତୀ ହେଉଛି ତାଙ୍କର ପଦଧ୍ୱନି । ସତ୍ୟ ହେଉଛି ତୁମର ନିଜ ଠାରୁ ବି ଅଧିକ ନିକଟତର । କାରଣ ସତ୍ୟ ହେଉଛି ତୁମର ସ୍ୱଭାବ କିନ୍ତୁ ତୁମେ ନିଜ ମନର କୋଳାହଳ ଭିତରେ, ଅସ୍ତବ୍ୟସ୍ତତା ଭିତରେ ଏତେ ବୁଡ଼ି ରହୁଛ ଯେ, ଯିଏ ନିକଟତମ, ସମୀପତମ ସିଏ ବି ଶୁଣାଯାଉନାହିଁ ।

ତୁମେ ଯାହାଙ୍କୁ ଖୋଜୁଛ, ସିଏ ଦୂରରେ ନାହାନ୍ତି, ସିଏ ତୁମରି ଭିତରେ ଅଛନ୍ତି । ତୁମେ ଯାହା ପାଇଁ ଦାବୀ କରୁଛ, ତାହା ମାଗିଲେ ବାହାରେ ମିଳିବ ନାହିଁ, ସିଏ ମିଳି ସାରିଛି, ସିଏ ହେଉଛ ତୁମେ । ବୁଡ଼ିଯାଅ ଧ୍ୟାନ ଭିତରେ । ତାହା ହେଉଛି ତୁମର ସ୍ୱଭାବ ।

ଯେଉଁ ଦିନ ତୁମେ ସ୍ୱୟଂକୁ ଚିହ୍ନିପାରିଲ ଯେ ମୁଁ ଶରୀର ନୁହେଁ, ମୁଁ ହେଉଛି ଆତ୍ମା, ସେଇଦିନ ତୁମେ ସବୁକୁ ବୁଝିଗଲ, କାରଣ ଯାହା ହେଉଛି ତୁମର ସ୍ୱଭାବ, ଯାହା ହେଉଛି ତୁମର ସ୍ୱରୂପ, ତାହା ହିଁ ହେଉଛି ପଶୁ, ପକ୍ଷୀ, ମନୁଷ୍ୟ ମାତ୍ରକେ ସମସ୍ତଙ୍କର ସ୍ୱଭାବ । ଉପରର ନାମ, ରୂପରେ ଭେଦ ରହିଛି । ଆକୃତିର ଭେଦ ଅଛି ମାତ୍ର ସମସ୍ତ ଆକୃତି ଭିତରେ ଯାହାଙ୍କର ଆବାସ ଅଛି, ଯିଏ ଆବାସ କରିଛନ୍ତି, ତାଙ୍କର କୌଣସି ପ୍ରକାର ଭେଦ ନାହିଁ । ତୁମେ ଯାହା ଚାହୁଁଛ ସେୟା ସମସ୍ତେ ଚାହୁଁଛନ୍ତି । ସମସ୍ତେ ସୁଖ ଚାହାନ୍ତି, ସମସ୍ତେ ଦୁଃଖରୁ ମୁକୁଳିବାକୁ ଚାହାଁନ୍ତି, ଏଇଠି ନିଜର–ପର ଭେଦଭାବ ସ୍ୱଭାବରେ ନାହିଁ । ରାମ, କୃଷ୍ଣ, ମହାବୀର, ଯୀଶୁ, ମହମ୍ମଦଙ୍କ ଭିତରେ ଯିଏ

ଅଛି, ସିଏ କୁକୁରମାନଙ୍କ ଭିତରେ ବି ଅଛି, ସେହି ସତ୍ୟ ସବୁ ଭିତରେ ଅଛି । ଯଦି ପ୍ରଭେଦ ଦେଖାଯାଉଛି ତେବେ ନାମ-ରୂପର ଅଥବା ତୁମରି ବୁଝିବାରେ କିଛି ଦୁର୍ବଳତା ଥିବା ଯୋଗୁ ଦେଖାଯାଉଛି । ପୀଡ଼ାକୁ, ମୃତ୍ୟୁକୁ, ଦଣ୍ଡକୁ ସମସ୍ତେ ଭୟ କରିଥାନ୍ତି । ତେଣୁ ନିଜ ଭଳି ସମସ୍ତଙ୍କୁ ଜାଣି ନା କାହାକୁ ମାରିଦିଅ, ନା ମାରିବାକୁ ପ୍ରେରଣା ଦିଅ, ନା ମାରିବାରେ ସହାୟତା କର, ଦୂରକୁ ଚାଲିଯାଅ ।

ସତ୍ୟ ହେଉଛି ତୁମର ସ୍ୱଭାବ, ତୁମେ ତା'ଠାରୁ ଦୂରକୁ ଯାଇପାରିବ ନାହିଁ । ତୁମେ ତାକୁ ଛାଡ଼ି ପାରିବ ନାହିଁ, କାରଣ ସିଏ ତୁମ ଠାରୁ ପୃଥକ୍ ନୁହେଁ । ଯେଉଁଆଡ଼କୁ ତୁମେ ଯିବ ସତ୍ୟ ତୁମ ଠାରୁ ପୃଥକ ହେବ ନାହିଁ । ସତ୍ୟ ତୁମ ସହିତ ଥିବ । ତତ୍ତ୍ୱମସି ''ସିଏ ହିଁ ତୁମେ'' ।



# ।। ମନର ସେପାରିରେ ।।

ମନର ଚଞ୍ଚଳତା ପାଇଁ ଏକମାତ୍ର କାରଣ ହେଉଛି ଯେ ତା'ର ବସିବା ପାଇଁ ସ୍ଥାୟୀ ଜାଗା ଆବଶ୍ୟକ, ଯେଉଁଠୁ ଉଠି ତାକୁ ଆଉ କେଉଁଠିକି ଯେମିତି ଯିବାକୁ ପଡ଼ିବ ନାହିଁ । ଆମେ ମନକୁ ସ୍ଥିର ହୋଇ ବସିବା ପାଇଁ ଆଜି ପର୍ଯ୍ୟନ୍ତ ସ୍ଥାନ ଦେଇପାରିଲେ ନାହିଁ । ଏହାହିଁ ହେଉଛି ମନର ଚଞ୍ଚଳ ହେବାର କାରଣ । ଯଦି ମନକୁ ଆମେ ଏହିଭଳି ସ୍ଥାୟୀ ସ୍ଥାନ ବତାଇ ଦେଇ ପାରନ୍ତେ, ତେବେ ମନ ତତ୍‌କ୍ଷଣାତ୍ ଶାନ୍ତ ହୋଇ ବସିଯାନ୍ତା ।

ପରମାତ୍ମାଙ୍କ ବ୍ୟତୀତ ମନ କେଉଁଠି ହେଲେ ବି ଅଟକି ରହିପାରିବ ନାହିଁ । ସିଏ ହିଁ ହେଉଛନ୍ତି ତା' ପାଇଁ ବସିବାର ସ୍ଥାନ । ସେଥିପାଇଁ ମନର ଆମ ପ୍ରତି କୃପା ରହିଛି ଯେ ସିଏ ସର୍ବଦା ଚଞ୍ଚଳ ରହି ଉଚିତ୍ ସ୍ଥାନର ଅନ୍ୱେଷଣରେ ଚାଲିଛି । ଯେ କୌଣସି ଜାଗାରେ ସେ ରହିବାବାଲା ନୁହେଁ । ଯେପର୍ଯ୍ୟନ୍ତ ପରମ ବିଶ୍ରାମର ମୁହୂର୍ତ୍ତ ଆସିନଯାଇଛି, ଯଦି ତା' ଭିତରେ ମନ କେଉଁଠି ଅଟକି ଯାଇଥାନ୍ତା, ତେବେ ଆମେ ଆଜି ପରମାତ୍ମାଙ୍କ ନିକଟବର୍ତ୍ତୀ ହୋଇ ପାରିନଥାନ୍ତେ । ଆମେ ମନକୁ ଜଡ଼ କରିବାକୁ ଚାହିଁଥାନ୍ତି । କିନ୍ତୁ ମନକୁ ଜଡ଼ କରିଦେଲେ ତ ସଂସାର ବି ମିଳିନଥାଏ, ତେଣୁ ପରମାତ୍ମା କିପରି ମିଳିବେ ? ମନର ଜଡ଼ତା ଯୋଗୁ ଅବଶ୍ୟ ନିଦ୍ରା ହୋଇପାରିବ ।

ସଂସାରର ପ୍ରତ୍ୟେକ ସାଧନା ମନ ଦ୍ୱାରା ହୋଇଥାଏ । ଧ୍ୟାନ କର ବା ଗାନ କର, ନୃତ୍ୟ କର ବା ଜପ କର, ପୂଜା କର ବା ପାଠ କର, ଭୋଜନ କର ବା ଭଜନ କର, ପୁସ୍ତକ ପଢ଼ ବା ପତ୍ର ପଢ଼, ଲୁଗା ସିଲାଇ କର ବା ଜୋତା ସିଲାଇ କର ସବୁ କ୍ରିୟା, ସବୁ ସାଧନା ଆମର ମନ ଦ୍ୱାରା ହିଁ ହୋଇଥାଏ । ବିନା ମନରେ ଗୋଟିଏ ହେଲେ କ୍ରିୟା ହୋଇନଥାଏ । ସାକ୍ଷୀର ବୋଧ ମନ୍ ଦ୍ୱାରା

ହୋଇପାରିବ ନାହିଁ । ମନ ଦ୍ୱାରା ନିର୍ମିତ ସାଧନା ମନ ସେପାରିକୁ ନେଇଯାଇ ପାରିବ ନାହିଁ । ସାକ୍ଷୀ ତ ହେଉଛି ସେଇ କେନ୍ଦ୍ର, ଯେଉଁଠୁ ସମସ୍ତ କ୍ରିୟାଗୁଡ଼ିକୁ ଦେଖାଯାଇଥାଏ । ଆତ୍ମାକୁ ଜାଣିବାର ଅଛି ତ ମନର ଉପରକୁ ଯିବାକୁ ହେବ । ମନର କ୍ରିୟା ଦ୍ୱାରା ଯିଏ ମନର ପଛରେ, ମନର ଦ୍ରଷ୍ଟା, ମନର ସାକ୍ଷୀ ଅଛନ୍ତି, ତାଙ୍କ ସହିତ କେବେହେଲେ ପରିଚୟ ହୋଇପାରିବ ନାହିଁ ।

ସାକ୍ଷୀ ଭାବ ହେଉଛି ଏଭଳି ଏକ ସାଧନା, ଯାହା ମନର ସାଧନା ନୁହେଁ । କୌଣସି କ୍ରିୟା ଦ୍ୱାରା, କୌଣସି ସାଧନା ଦ୍ୱାରା ଆମେ ମନର ସେପାରିକୁ ଯାଇ ପାରିବା ନାହିଁ । ପରମାତ୍ମାଙ୍କ ଠାରେ ପ୍ରତିଷ୍ଠିତ ହୋଇପାରିବା ନାହିଁ । ସାକ୍ଷୀଭାବ ହେଉଛି ପରମାତ୍ମାଙ୍କ ସହିତ ଏକତ୍ୱତାର ବୋଧ କରାଇବା ପାଇଁ ସରଳ, ସିଧା ସଳଖ ସାଧନା ।

ଆମେ ପ୍ରତିଦିନ ଏୟା ଦେଖୁଥାନ୍ତି ଯେ ରାତିରେ ସ୍ୱପ୍ନ ହେଲା, ସକାଳେ ତା'ର ସ୍ମରଣ ରହିଯାଉଛି ଏବଂ ସେଇ ସ୍ୱପ୍ନ ପୁଣି ମିଛ ହୋଇଯାଉଛି କିନ୍ତୁ ତା'ର ସ୍ମରଣକର୍ତ୍ତା ତ ସତ୍ୟ । ସ୍ୱପ୍ନ ବି ଚାଲିଯାଉଛି, ସୁଷୁପ୍ତି ଆସିଯାଉଛି । ସୁଷୁପ୍ତି ବି ଜାଗ୍ରତ ହେଲା ପରେ ଚାଲିଯାଇଥାଏ । ମୂର୍ଚ୍ଛା ହେଉଛି ତାହା ବି ଭାଙ୍ଗିଯାଉଛି, ଧ୍ୟାନ ବି ହେଉଛି ସିଏ ବି ଚାଲିଯାଉଛି, ସମାଧି ହେଉଛି ସିଏ ବି ପୁଣି ଚାଲିଯାଉଛି କିନ୍ତୁ ସବୁ ପରିବର୍ତ୍ତନକୁ ଦେଖିବାବାଲା 'ଦର୍ଶନ' ସବୁ ସମୟରେ ତିଷ୍ଠି ରହୁଛି । ଜାଣିବା, ଦେଖିବାବାଲା ଦର୍ଶନ ହେଉଛି ନିତ୍ୟ । ବାଲ୍ୟକାଳ ଆସିଲା – ଗଲା, କିଶୋରାବସ୍ଥା ଆସିଲା–ଗଲା, ଯୌବନ ଆସିଲା–ଗଲା, ପ୍ରୌଢ଼ାବସ୍ଥା ଆସିଲା–ଗଲା, ବୃଦ୍ଧାବସ୍ଥା ଆସିଲା–ଗଲା, ରୋଗ ଆସିଲା–ଗଲା, ଗରୀବ ଅବସ୍ଥା ଆସିଲା–ଗଲା, ମନେରହିଲା–ଭୁଲିହୋଇଗଲା, ଶୀତ ଆସିଲା–ଗଲା, ଗ୍ରୀଷ୍ମ ଆସିଲା–ଗଲା, ବର୍ଷା ଆସିଲା–ଗଲା, କିନ୍ତୁ ଦର୍ଶନର କ୍ଷମତା, ଦେଖିବା ଜାଣିବାର କ୍ଷମତା ଆମର ସବୁ ପରିସ୍ଥିତିରେ, ଅବସ୍ଥାରେ, କାଳରେ, କ୍ରିୟା ସହିତ ଲାଗି ରହିଥାଏ । ସାକ୍ଷୀ ଭାବ ବା ଦର୍ଶନ ସ୍ୱଭାବ ଆମର ସର୍ବଦା ସେଇମିତି ରହିଥାଏ । ଇନ୍ଦ୍ରିୟଗୁଡ଼ିକ ନିଜ ନିଜର ବିଷୟ ଗ୍ରହଣ କରିବାରେ ଥକି ଯାଆନ୍ତି । ଶୁଣିବା, ଛୁଇଁବା, ଦେଖିବା, ଚାଖିବା, ଶୁଂଘିବା, ଭଳି କ୍ରିୟାଗୁଡ଼ିକ ସର୍ବଦା ହୋଇପାରିବ ନାହିଁ କିନ୍ତୁ ତୁମର ଦର୍ଶନ, ଜ୍ଞାନ, ଚେତନାର, ଯାହା ମନର ସେପାରିରେ ସର୍ବଦା ବିଦ୍ୟମାନ ରହିଥାଏ, ତାହାର କେବେହେଲେ ଅଭାବ ବା ସେଥିରେ ଥକିଯିବା ସମ୍ଭବ ହୋଇ ନଥାଏ । ଦେଖିବା, ଜାଣିବାର କ୍ଷମତା ଆମ ଭିତରେ ଅବିଚ୍ଛିନ୍ନ ଭାବରେ ସର୍ବଦା ରହିଥାଏ ।

ରାତିରେ ଶୋଇସାରି ଯେତେବେଳେ ତୁମେ ଉଠ ସେତେବେଳେ ସେଇଠି ଜୀବକୁ ଏକ ନିର୍ବିଷୟ ସୁଖର, ଅଜ୍ଞାନତାର ଯେଉଁ ଅନୁଭବ ହେଉଥିଲା, ତାକୁ ବି କେହି ଜଣେ ପଛରୁ ଅବଶ୍ୟ

ଦେଖୁଥିବ । ସେଥିପାଇଁ ତ ସକାଳୁ ଉଠି ସେଇ ଜୀବ ଦ୍ୱାରା ବାଣୀ ମାଧ୍ୟମରେ, ମନ ମାଧ୍ୟମରେ ଏୟା କୁହାଯାଇଥାଏ ଯେ ମୁଁ ରାତିରେ ଗଭୀର ନିଦ୍ରାର ଅନୁଭବ କଲି, ରାତିରେ ମୋତେ ଏକ ଭଲ ମିଠା ସୁଖ ଭଳି ନିଦ ଆସିଲା ଓ ମୋତେ କିଛି ଜଣାପଡ଼ିଲା ନାହିଁ । ଏଇ ସୁଷୁପ୍ତିର ବି ପ୍ରକାଶକ ଜାଣିବାବାଲା, ଦେଖିବାବାଲା କେହି ସାକ୍ଷୀ, ଦ୍ରଷ୍ଟା ଆତ୍ମା ରହିଛି ଏବଂ ସିଏ ହେଉଛି ମୁଁ, ଯିଏ ସମସ୍ତ ପରିବର୍ତ୍ତନ ଗୁଡ଼ିକ ଭିତରେ ଅପରିବର୍ତ୍ତନୀୟ ହୋଇ ରହିଥାଏ ।

ଆମେ ଆମର ମନକୁ ଦେଖିବା ଯେ ସିଏ କ'ଣ ଦେଖୁଛି, କ'ଣ ଭାବୁଛି, ଚଞ୍ଚଳ ଅଛି ନା ଶାନ୍ତ, କାମୀ ଅଛି ନା କ୍ରୋଧୀ, ଲୋଭୀ ଅଛି ନା ମୋହୀ, ପ୍ରେମୀ ଅଛି ନା ଈର୍ଷାଳୁ, ଦୟାବାନ ଅଛି ନା କଠୋର, ଶ୍ରଦ୍ଧା କରୁଛି ନା ଅଶ୍ରଦ୍ଧା । ତୁମେ ତାକୁ ସେମିତି ଦେଖି ଚାଲ ଯେମିତି ସଡ଼କ ଉପରେ ଯିବା ଆସିବା କରୁଥିବା ଲୋକମାନଙ୍କୁ ତୁମେ ଦେଖୁଥାଅ । ଲୋକମାନଙ୍କର ଯିବା-ଆସିବା ବନ୍ଦ ହୋଇଯାଇଛି ତ ସେଇ ଖାଲି ପଣିଆକୁ, ଶୂନ୍‌ଶାନ ପଣିଆକୁ ବି ଦେଖୁଥାଅ । ଏହିପରି ଭାବରେ ମନର ତରଙ୍ଗିତ ହେବାକୁ ଏବଂ ଶାନ୍ତ ହେବାକୁ, ଶ୍ୱାସକୁ ଭିତର-ବାହାର ଚାଲିବାର ଅବସ୍ଥାକୁ କେହି ଜଣେ ଦେଖିବାବାଲା ତତ୍ତ୍ୱ ଅଛି, ତାକୁ ଦର୍ଶନ, ସାକ୍ଷୀ, ଦ୍ରଷ୍ଟା, ସ୍ମରଣ, ଧ୍ୟାନ, ଏୱାରନେସ୍, କନସିୟସନେସ୍, ଆଲର୍ଟ, ସାବଧାନତା, ଧ୍ୟାନାଦି ନାମ ମାଧ୍ୟମରେ କୁହାଯାଇଥାଏ ।

ଏହି ଯେଉଁ ସାକ୍ଷୀ ଅଛି, ଏଇ ଯେଉଁ ଉଇଟନେସ୍ ଅଛି, ଏଇ ଯେଉଁ ଦ୍ରଷ୍ଟା ଅଛି, ଏଇ ଯେଉଁ ବୋଧର ବିନ୍ଦୁ ଅଛି, ଏହା ମନର ବାହାରେ ଅଛି । ଏହା ମନର କ୍ରିୟାଗୁଡ଼ିକର ଅଂଶ ବିଶେଷ ନୁହେଁ, ଇଏ ତ ହେଉଛି ସେଇ ବିନ୍ଦୁ, ଯିଏ ଆମର ମନର ଅବସ୍ଥାଗୁଡ଼ିକୁ ଦେଖିବାବାଲା ଏବଂ ସିଏ ହିଁ ହେଉଛୁ ଆମେ । ଆମେ ଯାହାକୁ ବି ଜାଣିଥାଉ ତାହା ଦେହ ହେଉ ବା ଦେହର କ୍ରିୟା ହେଉ, ମନ ହେଉ ବା ମନର ବିଚାର ହେଉ, ଆମେ ତାକୁ ଜାଣିବାବାଲା ତା'ଠାରୁ ସର୍ବଦା ପୃଥକ୍ ହୋଇ ରହିଥାଉ ।

ସାକ୍ଷୀକୁ ତୁମେ କେବେ ବି ଦେଖିପାରିବ ନାହିଁ । ଯିଏ ଦେଖିବ, ସିଏ ତ ତୁମେ ହିଁ ହେବ ଏବଂ ଯାହା ଦେଖାଯିବ, ତାହା ତୁମଠାରୁ ଭିନ୍ନ ଜଡ଼, ବିକାରୀ, ପରିଚ୍ଛିନ୍ନ ଅନାତ୍ମା ପଦାର୍ଥ ହିଁ ହେବ । ଦେଖିବାବାଲାକୁ ହିଁ ଚୈତନ୍ୟ ଦ୍ରଷ୍ଟା କୁହାଯାଏ । ସାକ୍ଷୀ ଭାବ ହେଉଛି ଆତ୍ମାରେ ପ୍ରବେଶ କରିବାର ଦ୍ୱାର । ପୂର୍ଣ୍ଣ ସାକ୍ଷୀ ଭାବର ସ୍ଥିତି ହେଉଛି ଆତ୍ମ ଉପଲବ୍ଧି । ଯିଏ ଦୃଶ୍ୟ ହୋଇଯିବ, ସିଏ ପୁଣି ଅନାତ୍ମା ହେବ, ଦ୍ରଷ୍ଟା ହିଁ ଆତ୍ମା ହୋଇ ରହିବ । ସାକ୍ଷୀ ହେଉଛି ତୁମର ସ୍ୱରୂପ ଯାହାକୁ ବି ତୁମେ ଦେଖି ପାର, ଜାଣିପାର, ଅନୁଭବ କରିନେଇଥାଅ, ତା'ଠାରୁ ତୁମେ ଅଲଗା ହୋଇଯାଇ ଥାଅ,

ତୁମେ ହେଉଛ ତାକୁ ଜାଣିବା, ଦେଖିବା, ଅନୁଭବ କରିବା ବାଲା । କାହିଁକି ନା ତୁମେ ତା'ଠାରୁ ଅଲଗା, ସେଥିପାଇଁ ତୁମେ ତାକୁ ଦେଖିପାରୁଛ, ଜାଣିପାରୁଛ, ଅନୁଭବ କରିପାରୁଛ ।

ସାକ୍ଷୀର ମୂର୍ଚ୍ଛିତ ହେବାକୁ ହିଁ ମନ କୁହାଯାଇଥାଏ ବା ଚିତ୍ତ କୁହାଯାଇଥାଏ । ଯଦି ସାକ୍ଷୀ ସମ୍ପୂର୍ଣ୍ଣ ଭାବରେ ଜାଗିଯାଏ ତେବେ ମନ ବା ଚିତ୍ତ ନାମକ କୌଣସି ବସ୍ତୁ ହିଁ ନାହିଁ । ଯେତିକି ମାତ୍ରାରେ ତୁମ ଭିତରେ ସାକ୍ଷୀ ଭାବ ଜାଗ୍ରତ ହୋଇଯିବ, ତୁମେ ସେତିକି ହିଁ ନିଜକୁ ମନ ଠାରୁ ବାହାରେ ବୋଲି ଅନୁଭବ କରିବ । ସାକ୍ଷୀ ଜାଗ୍ରତ ହୋଇଯିବାର ନାମ ହେଉଛି ଅ-ମନ ହେବା ।

ଯିଏ ବିନା ଇନ୍ଦ୍ରିୟ, ବିନା ମନରେ ସିଧା ଜାଣିଥାଏ, ତାକୁ ସାକ୍ଷୀ କୁହାଯାଏ । ଯିଏ ସାକ୍ଷାତ୍ (ସ୍ୱୟଂ) ଜାଣୁଥାଏ, ତାକୁ ସାକ୍ଷୀ କୁହାଯାଏ ।

ମନ ଯେପର୍ଯ୍ୟନ୍ତ ଅଛି, ସେପର୍ଯ୍ୟନ୍ତ ଦ୍ୱନ୍ଦ୍ୱ ବି ରହିବ । ବିନା ଦ୍ୱନ୍ଦ୍ୱରେ ମନ ମୁହୂର୍ତ୍ତକ ପାଇଁ ବି ଅଟକି ରହିପାରିବ ନାହିଁ । କୋଟିଏ ଚେଷ୍ଟା କଲେ ବି ଅଟକି ପାରିବ ନାହିଁ । ମନର ଉଦ୍ଦେଶ୍ୟ ହେଉଛି ଦ୍ୱନ୍ଦ୍ୱ । ଚଞ୍ଚଳ ହେବା ହିଁ ତା'ର ଅନିବାର୍ଯ୍ୟ ସର୍ତ୍ତ, ତା'ର ସହଜ ସ୍ୱଭାବ ।

ମହାମନ୍ତ୍ର ହେଉଛି ଏୟା, ବେଦର ସାରାଂଶ ହେଉଛି ଏୟା ଯେ ମନର ସେପାରିରେ, ମନ ପଛରେ ଦ୍ରଷ୍ଟା, ସାକ୍ଷୀ ହୋଇଯାଅ । ମନ ହରେରାମ ଜପୁଥାଉ ବା ସିନେମା ଗୀତ ଗାଉଥାଉ ଦୁହେଁ ହେଉଛନ୍ତି ଅଧର୍ମ । ମନରୁ ଯାହା ବାହାରିବ ସେସବୁ ହେଉଛି ଅଧର୍ମ । ତୁମେ ଶୁଣୁଛ ତ ତୁମେ ହେଉଛ କାନର ଦ୍ରଷ୍ଟା, ଦେଖୁଛ ତ ଆଖିର ଦ୍ରଷ୍ଟା । ତୁମେ କୌଣସି ଇନ୍ଦ୍ରିୟ ସହିତ ତାଦାତ୍ମ୍ୟ କରନାହିଁ । ଦୃଶ୍ୟ ଠାରୁ ତୁମର ଦୂରତା ଅସଂଗତା ତିଆରି କରିଥାଏ । ତୁମେ ମନକୁ ଏଭଳି ଦେଖିଚାଲ, ଯେମିତି ରାସ୍ତା ଉପରେ ଛିଡ଼ା ହୋଇଥିବା କୌଣସି ଲୋକ ଟ୍ରକ, ବସ୍ ବା ସ୍କୁଟରକୁ ଦେଖୁଥାଅ, କାରଣ ତୁମେ ହେଉଛ ଦ୍ରଷ୍ଟା ।

ସାଇକେଲ୍‌କୁ ପେଡ଼େଲ ମାରୁଥିଲେ ତ ସେ ଚାଲୁଥିବ, ପେଡ଼େଲ ନମାରିଲେ ଅଟକି ଯିବ ୧୦-୨୦ ଗଜ ପରେ । ମନକୁ ଧ୍ୟାନ ସମାଧି ଇତ୍ୟାଦି କାମ ଦେଇ ଊର୍ଜା ଦେଉଛ ତ ସିଏ ଚଞ୍ଚଳ ହେବ ହିଁ ହେବ । ଯଦି ତାକୁ କାମ ନଦେବ, ମନ ମରିଯିବ, ଅମନ ହୋଇଯିବ । ଚଞ୍ଚଳ ହେବା ହିଁ ମନ ଏବଂ ଶାନ୍ତ ହେବାହିଁ ଅମନ, ଅର୍ଥାତ୍ ଆତ୍ମା ।

ମନ ସର୍ବଦା ତୁମ ଉପରେ ତା'ର ରଙ୍ଗ ବୋଳି ଦେଇଥାଏ ଏବଂ ମନର ତରଙ୍ଗଗୁଡ଼ିକୁ ନିଜ ଜୀବନ ସହିତ ତୁମେ ଯୋଡ଼ିଦେଇ ନିଜକୁ କାମୁକ, କ୍ରୋଧୀ ବୋଲି ମାନି ନେଇଥାଅ, ଏଇ ଅନୁଭବ ସଚ୍ଚା ନୁହେଁ । ଏହା ହେଉଛି ତୁମ ମନର ସ୍ୱଭାବ । ମନ ତୁମର ବହୁତ ନିକଟରେ ଅଛି । ମନର ସେଇ ତରଙ୍ଗଗୁଡ଼ିକର ପ୍ରତିବିମ୍ବ ତୁମ ଉପରେ, ଚୈତନ୍ୟ ଉପରେ ପଡ଼ିଥାଏ, ମନ ହଟି

ଯାଉ ଯାଉ ସୁଷୁପ୍ତିରେ ସବୁ ଛାୟା ନଷ୍ଟ ହୋଇଯାଇଥାଏ । ଯେମିତି ନିର୍ମଳ ସ୍ଫଟିକ ମଣି ଉପରେ ରଙ୍ଗୀନ ଆଲୋକ ପଡ଼ିଗଲେ ରଙ୍ଗହୀନ ମଣି ରଙ୍ଗ ଥିଲାଭଳି ଦେଖାଯାଇଥାଏ । ରଙ୍ଗୀନ ଆଲୋକର ସମ୍ବନ୍ଧ ହଟି ଯାଉ ଯାଉ ମଣି ଯେମିତି କି ସେମିତି ନିର୍ମଳ ଭଳି ପ୍ରତୀୟମାନ ହେବାରେ ଲାଗିଥାଏ ଅଥବା ଦର୍ପଣ ଆଗରେ ଯେଉଁ ଜିନିଷ, ଯେଉଁ ଦୃଶ୍ୟ ରହିଥାଏ ତା'ର ପ୍ରତିବିମ୍ବ, ଦର୍ପଣ ଉପରେ ଉକୁଟି ଉଠିଥାଏ, ସେହିପରି ଶୁଦ୍ଧ ଚେତନା ନିକଟରେ ମନଥିଲେ ମନର ଛାୟା ତିଆରି ହୋଇଯାଏ । ଯେପର୍ଯ୍ୟନ୍ତ ତୁମେ ମନକୁ ଦୃଶ୍ୟ ରୂପରେ ଏବଂ ନିଜକୁ ତାହାର ଦ୍ରଷ୍ଟା ସାକ୍ଷୀ ଭାବରେ ନଜାଣିବ, ସେପର୍ଯ୍ୟନ୍ତ ମନର ଧର୍ମକୁ ନିଜର ମାନିନେବାର ଭ୍ରମ ଦୂର ହୋଇପାରିବ ନାହିଁ । ଦୁଃଖର ଏକମାତ୍ର ଅର୍ଥ ହେଉଛି ଆତ୍ମାର ମନ ସହିତ ତାଦାତ୍ମ୍ୟ ହେବା ।

ମନ ଶୋଇଗଲେ ଶୁଦ୍ଧ ଚେତନା ଜାଗ୍ରତ ହୋଇଯାଏ । ମନ ଜାଗିଗଲେ ଅଶୁଦ୍ଧ ଚେତନା ଉଠି ପଡ଼ିଥାଏ, ସେତେବେଳେ ଶୁଦ୍ଧ ଚେତନା ଶୋଇଯାଇଥାଏ । ମନର ଜାଗରଣକୁ ନିଜର ଜାଗରଣ ବୋଲି କେବେହେଲେ ମାନିନିଅନାହିଁ, ମନର ଜାଗରଣ ହିଁ ତୁମର ନିଦ । ମନ ଅଛି ତ ସଂସାର ଅଛି, ମନ ନାହିଁ ତ ମୋକ୍ଷ ଅଛି । ତୁମେ ନିଜକୁ ଗୁରୁ କୃପାରୁ ପ୍ରାପ୍ତ ଯୁକ୍ତିଗୁଡ଼ିକ ଦ୍ୱାରା ମନ ଠାରୁ ମୁକ୍ତ ବୋଲି ଜାଣିନିଅ । ଯେତେବେଳ ଯାଏ ମନ ଅଛି ସେତେବେଳେ ଅନେକ ଅଛି, ଯେତେବେଳେ ସାକ୍ଷୀ ଜାଗିଗଲା, ସେତେବେଳେ ସବୁ ହେଉଛି ଏକ । ପରିଧି ଉପରେ ଆମେ ସବୁ ଫୁଲ ଭଳି ଭିନ୍ନ ଭିନ୍ନ, ଭିତରେ ଆମେ ଗୋଟିଏ ସୂତା ଭଳି । ଯେତେବେଳେ ଗୋଟିଏ ପିଲା ଅଛି, ସେଇଠି ମମତା ବି କ'ଣ ଏବଂ ଅହଂକାର ବି କ'ଣ ?

ସମୁଦ୍ରରେ ତରଙ୍ଗ ଭଳି ମନ ଅର୍ଥାତ୍ ସଂସାର ଯେଉଁଥିରେ ସ୍ଫୁରିତ ହୋଇଥାଏ, ସିଏ ହେଉଛି ତୁମର ପ୍ରକୃତ ସ୍ୱରୂପ । ମନରୂପୀ ତରଙ୍ଗ ପଛରେ ଯେଉଁ ଅଚଳ ଲୁଚି ବସିଛି, ସିଏ ହେଉଛି ସାଗର, ସିଏ ହେଉଛ ତୁମେ । ଏଇ ସଂସାରର ତରଙ୍ଗଗୁଡ଼ିକ ହେଉଛି ବ୍ରହ୍ମଙ୍କର ତରଙ୍ଗ, ତୁମରି ତରଙ୍ଗ ।

ଯେଉଁଠି ମୋର ପଣିଆ ନଷ୍ଟ ହୋଇଗଲା, ସେଇଠି ମନ ନାହିଁ । ମୋର-ପଣିଆ ହେଉଛି ମୂଳ । ଯାହା ସହିତ ଯୋଡ଼ ସେଇଠି ମନ ଅଛି । ସେଇଠି ସଂସାର ଅଛି । ମନ କୌଣସି ବସ୍ତୁ ନୁହେଁ । 'ମୋର'ର ପରିଗ୍ରହ ହେଉଛି ମନ । 'ମୋର'କୁ ତ୍ୟାଗ କରିଦେଲେ ମନ ଗଲା । ମନ ତ ଶରୀର ଓ ଆତ୍ମାର ତାଦାତ୍ମ୍ୟ ଭ୍ରମରୁ ଜନ୍ମ ନେଇଥାଏ । ଯିଏ ଏମିତି ଜାଣିନେଲା ଯେ ସବୁକିଛି ହେଉଛି ପରମାତ୍ମାଙ୍କର, ଏଇଠି ମୋର ବୋଲି କିଛି ନାହିଁ, ସେଇଠି ମନ ଗଲା, ମନ ମରିଗଲା । ମନର ଜୀବନ ତ ମୋର ମାନିନେବାରେ ହିଁ ରହିଥାଏ ।

ଜ୍ଞାନୀ ପୁରୁଷମାନଙ୍କ ପାଖରେ 'ମୋର' କହିବାକୁ କିଛି ନାହିଁ, ସେଥିପାଇଁ ମନ ନଥାଏ । ଯେତେବେଳେ ମନ ନାହିଁ, ମୋର ନାହିଁ, ସେତେବେଳେ ଦୁଃଖ ଆସିବ କେଉଁଠୁ ?

ଯାହାଙ୍କର କୌଣସି ପ୍ରକାରର ଆକାଂକ୍ଷା ନରହିଲା, ବାସନା ନରହିଲା , କାମନା ନରହିଲା, ଯିଏ କିଛି ବି ଚାହାଁନ୍ତି ନାହିଁ, ଯାହା ଅଛି ସେଥିରେ ସମ୍ପୂର୍ଣ୍ଣ ତୃପ୍ତ, ଏଭଳି ବ୍ୟକ୍ତିର ମନ ନଷ୍ଟ ହୋଇଗଲା । ତାଙ୍କ ମନ, ଅ-ମନର ଅବସ୍ଥାକୁ ଉପଲବ୍ଧ ହୋଇଗଲା ।

ତୁମେ ଦ୍ରଷ୍ଟା, ସାକ୍ଷୀ ଆତ୍ମା ରୂପରେ ରୁହ । ମନ ସହିତ କେବେ ମିଶ ନାହିଁ । ମନକୁ ଅଟକାଅ ନାହିଁ, ତାକୁ ମୋଡ଼ାମୋଡ଼ି କରନାହିଁ, କି କେଉଁଠି ଯୋଡ଼ ନାହିଁ । ମନର ସ୍ୱତନ୍ତ୍ରତାରେ ବାଧା ସୃଷ୍ଟି କରନାହିଁ । ତୁମେ କେବଳ ତାକୁ ଦେଖିଚାଲ । ଦେଖିବା ହିଁ ତୁମର ସ୍ୱଭାବ । ମନ ତୁମର ସତ୍ତା ଦ୍ୱାରା ହିଁ ନାଚୁଅଛି । ତୁମେ କେବଳ ତାକୁ ଦେଖୁଥାଅ । ମନର ରାଗ, ଦ୍ୱେଷ, କାମ, କ୍ରୋଧାଦି କୌଣସି ବୃତ୍ତି ତୁମର ବିକାର ନୁହେଁ । ମନ ହେଉଛି ବିକାରଗୁଡ଼ିକର ଭଣ୍ଡାର । ମନର ଖେଳ ଉପରେ ମୋହିତ ହୁଅନାହିଁ କି କ୍ରୋଧିତ ହୁଅନାହିଁ । ତାହାର ସ୍ୱଭାବ ହେଉଛି ଏମିତି । ତୁମେ ତା' ଉପରେ କୌଣସି ଅଙ୍କୁଶ ଲଗାଅ ନାହିଁ । ତା'ର ସ୍ୱତନ୍ତ୍ରତା ଉପରେ ବାଧା ପହୁଞ୍ଚାଅ ନାହିଁ । ତୁମେ ଜାଗ୍ରତ ହୋଇ ଦେଖିଚାଲ । ମନର ଚିନ୍ତା, ବ୍ୟଥା ତୁମର ନୁହେଁ । ତୁମେ ହେଉଛ ମନର ମାୟାକୁ ଦେଖୁଥିବା ଦ୍ରଷ୍ଟା ମାତ୍ର । ସିଏ ଯେଉଁଆଡ଼େ ଯାଉଛି, ଯିବାକୁ ଦିଅ । ତୁମେ କେବଳ ଦେଖିଚାଲ । ମନର ଖେଳରେ, ଲୀଳା ଭିତରେ ହଜିଯାଅ ନାହିଁ କେବଳ ଦେଖିଚାଲ । ଦେଖିବା ହିଁ ଜାଗ୍ରତ ହେବା । ଜାଗ୍ରତ ହେବା ହିଁ ଦେଖିବା ।

ଯିଏ ମନର ସେପାରିକୁ ଚାଲିଗଲା, ମନର ଦ୍ରଷ୍ଟା ହୋଇଗଲା, ବର୍ତ୍ତମାନ, ତା' ପାଇଁ ସୁଖ ଆସୁ ବା ଦୁଃଖ ଆସୁ, କେହି ବି ତାକୁ ହର୍ଷମୁଖର ଏବଂ ଶୋକାକୁଳ କରିପାରିବେ ନାହିଁ ।



## ॥ ଦ୍ରଷ୍ଟା ରୁହ ॥

ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ଧ୍ୟାନ, ସମାଧି ଅବସ୍ଥାଗୁଡ଼ିକ ଦୃଶ୍ୟ ହୋଇଥିବାରୁ ସେ ସବୁ ହେଉଛି ମିଥ୍ୟା । କିନ୍ତୁ ସେଗୁଡ଼ିକୁ ଦେଖିବାବାଲା ଦ୍ରଷ୍ଟା ହିଁ ହେଉଛନ୍ତି ଏକ ଏବଂ ସତ୍ୟ । ସେଇ ଯେଉଁ ଦେଖିବାବାଲା ଭିତରେ ଅଛନ୍ତି ତାଙ୍କୁ ଜାଣିନେବା ହିଁ ବୁଦ୍ଧତ୍ୱ, ସ୍ୱୟଂକୁ ଜାଣିନେବା ହିଁ ବୁଦ୍ଧତ୍ୱ । ବାକୀ ସବୁ ହେଉଛି ପର । ଶରୀରର ରଙ୍ଗ କଳା ହେଉ ବା ଗୋରା, ସୁନ୍ଦର ହେଉ ବା ଅସୁନ୍ଦର ସେଇ ଭିତରେ ଯେଉଁ ଦ୍ରଷ୍ଟା ଅଛନ୍ତି, ସିଏ ସମସ୍ତଙ୍କ ଭିତରେ ଏକ । ଯିଏ ତାଙ୍କୁ ଖୋଜିବା ଆରମ୍ଭ କରିଦେଲା, ସିଏ ସତ୍ୟ ଆଡ଼କୁ ପାଦ ବଢ଼ାଇବା ଆରମ୍ଭ କରିଦେଲା । ଯଦି ତୁମକୁ ଭିତରର ଦ୍ରଷ୍ଟା ଅମରାତ୍ମାଙ୍କ ବୋଧ ଜାଗ୍ରତ ନହେଉଛି ତେବେ ତୁମେ ନିଜକୁ ଦେହ ରୂପୀ କାରାଗାରରେ ବନ୍ଦୀ ତଥା ମୃତ ବୋଲି ଜାଣ ।

ଅବଲୋକନର ଅର୍ଥ ହେଉଛି ବିନା କିଛି ନିର୍ଣ୍ଣୟରେ ତଟସ୍ଥ ହୋଇ ଦର୍ଶନ କରିବା । ନା ଏହା କୁହ ଯେ ଠିକ୍ ଅଛି, ନା ଏୟା କୁହ ଯେ ଭୁଲ୍ ଅଛି । ନା ଏହା ଖରାପ, ନା ଭଲ, ନା ପାପ, ନା ପୁଣ୍ୟ । ତୁମେ କୌଣସି ନିର୍ଣ୍ଣୟ ନିଅନାହିଁ । ତୁମେ କେବଳ ଦେଖୁଥାଅ । ଯେମିତି ତୁମେ ରାସ୍ତା କରରେ ଛିଡ଼ାହୋଇ ଆଗରେ ଥିବା ଭିଡ଼କୁ ଯା'ଆସ କରୁଥିବାର ଦେଖୁଛ । କେହି ଚୋର, କେହି ସାଧୁ, କେହି ପଶୁ, କେହି ପକ୍ଷୀ – କାହା ସହିତ କିଛି ପ୍ରୟୋଜନ ରହିନଥାଏ, କେବଳ ଦେଖି ଚାଲିଥାଅ । ଆକାଶରେ ବାଦଲକୁ, ତା'ର ରଙ୍ଗକୁ ଦେଖି ନେଇଥାଅ କିନ୍ତୁ କୌଣସି ନିର୍ଣ୍ଣୟ କରିନଥାଅ । ମାତ୍ର ଦେଖିବା ଉପରେ ଧ୍ୟାନ ରଖ । ତୁମେ ଭଲ-ମନ୍ଦ, ପୁଣ୍ୟ-ପାପ, ଠିକ୍-ଭୁଲ୍‌ର ନ୍ୟାୟାଧୀଶ ହୋଇଯାଅ ନାହିଁ । ତୁମେ ତରାଜୁ ନେଇ ତଉଲିବାରେ ଲାଗିଯାଅ ନାହିଁ । ତୁମେ କେବଳ ଦ୍ରଷ୍ଟା ହୋଇ ରୁହ । ଯାହାଙ୍କୁ ଉପନିଷଦ ସାକ୍ଷୀ କହିଥାଏ । ବାସ୍ ଦେଖ । ଯେମିତି ଦୁଇଜଣ ମଦ୍ୟପଙ୍କୁ ଦୂରରୁ ଲଢୁଥିବାର ଦେଖିନେଇଥାଅ, ସେହିପରି ଦେହର କ୍ରିୟାଗୁଡ଼ିକ ସହିତ ଆପଣାର କିଛି ଦେବା-ନେବାର ସମ୍ବନ୍ଧ ନଥାଏ । ଏକ ଦୂରତା ସୃଷ୍ଟି କରି ଚୁପ୍‌ଚାପ ତଟସ୍ଥ ଭାବରେ ଦେଖ । ତୁମକୁ ବୋଧ ହେବ ଯେ ମୁଁ ହେଉଛି କୃତ୍ୟଗୁଡ଼ିକ ଠାରୁ ଅଲଗା, ପାପ-ପୁଣ୍ୟ,

କର୍ତ୍ତା-ଭୋକ୍ତା ଠାରୁ ପୃଥକ୍ । ଏଇ ନିଜ କୃତ୍ୟଗୁଡ଼ିକ ପ୍ରତି ଅଲଗାପଣିଆର ନାମ ହେଉଛି ମୁକ୍ତି । ଯିଏ ପାପ ଅଥବା ପୁଣ୍ୟ ସହିତ ନିଜକୁ ଏକ ବୋଲି ଭାବିନିଏ ତାହା ହିଁ ହେଉଛି ଭ୍ରାନ୍ତି । ନା ତୁମେ ନା କର୍ତ୍ତା ନା ଭୋକ୍ତା । ସଦାବେଳେ ଜାଣ ଯେ ମୁଁ ହେଉଛି କେବଳ ଦ୍ରଷ୍ଟା, କର୍ତ୍ତା ନୁହେଁ । ତା'ପରେ ପାପ-ପୁଣ୍ୟ ଉଭୟ ନଷ୍ଟ ହୋଇଯାନ୍ତି । ଯେମିତି ସ୍ୱପ୍ନରେ ଦେଖିଥିବା, କରିଥିବା, ଭୋଗ କରିଥିବା ବିଷୟ ସହିତ ଜାଗ୍ରତ ହେଲାପରେ କୌଣସି ସମ୍ବନ୍ଧ ରହିନଥାଏ, ସେହିପରି ତୁମେ ନିଜକୁ ଜାଗ୍ରତ ଅବସ୍ଥାରେ ସବୁ କର୍ମ ଓ ଭୋଗ ଗୁଡ଼ିକ ଠାରୁ ଅସଙ୍ଗ ବୋଲି ଜାଣ ।

ପରମାତ୍ମାଙ୍କୁ ଭୁଲିଗଲ ତ ସେଥିରେ କୌଣସି ହାନି ନାହିଁ କିନ୍ତୁ ନିଜକୁ କେବେହେଲେ ଭୁଲିଯାଅନା । **'ୟାଦ ହୈ ଆବାଦ ହୈ, ଭୂଲଗୟା ବର୍ବାଦ ହୈ'** । ନିଜକୁ ଭୁଲିଗଲ ତ ସବୁଗଲା, ନିଜର ସ୍ମରଣ ରଖିଲ ଏବଂ ସେଇ ସ୍ମୃତିକୁ ପ୍ରତିଦିନ ସମ୍ଭାଳି ଚାଲିଲ ତ ଦିନେ ସହଜ ସମାଧି ସିଦ୍ଧ ହୋଇଯିବ । ଯେମିତି ପାହାଡ଼ରୁ ପାଣି ଝରି ଚାଲିଥାଏ, ମଜବୁତ୍ ଚଟାଣକୁ ବି ସେ ଦିନେ ଭାଙ୍ଗିଦେଇ ବାଲି କଣିକାରେ ପରିଣତ କରି ଦେଇଥାଏ ।

ଚେଇଁଥିବା-ଶୋଇଥିବା ବେଳେ, ଉଠିବା-ବସିବା, ଖାଇବା-ପିଇବା, ଆସିବା-ଯିବା ବେଳେ ଏଇ ସ୍ମରଣ ରହୁ ଯେ ମୁଁ ସର୍ବଦା ପରମାତ୍ମାଙ୍କ ଦ୍ୱାରା ଘେରି ହୋଇଛି ବା ମୋର ଦେହରେ ପରମାତ୍ମା ଘେରି ହୋଇଛନ୍ତି । ସବୁ ରୂପ ହେଉଛି ତାଙ୍କର, ସବୁ ଶବ୍ଦ ହେଉଛି ତାଙ୍କର । ତା'ଠାରୁ ମୁଁ ଭିନ୍ନ ନୁହେଁ ।

ଲୋକେ ପଚାରିଥାନ୍ତି ପରମାତ୍ମା କେଉଁଠି ଅଛନ୍ତି । ପଚାରିବା ଉଚିତ୍ ଯେ ଏଇ ପଚାରିବା ବାଲା କିଏ ? ଏଇ ଖୋଜିବା ବାଲା କିଏ ? କିଏ ଖୋଜୁଛି ପରମାତ୍ମାଙ୍କୁ ? ପରମାତ୍ମା ଚତୁର୍ଦ୍ଦିଗରୁ ଘେରି ହୋଇ ଛିଡ଼ା ହୋଇଛନ୍ତି । ତୁମେ ପରମାତ୍ମାଙ୍କ ସମ୍ମୁଖରେ ଛିଡ଼ା ହୋଇଛ ଏବଂ ପଚାରୁଛ ଯେ ପରମାତ୍ମାଙ୍କୁ କେଉଁଠି ଖୋଜିବା ? ଏଇ ପଚାରିବା ହେଉଛି ଏମିତି ଏକ ପାଗଳପଣିଆ, ଯେମିତି କେହି ଜଣେ ସୂର୍ଯ୍ୟଙ୍କ ଆଲୋକରେ ଛିଡ଼ା ହୋଇ ପଚାରୁଛି ଯେ ଆମେ ସୂର୍ଯ୍ୟଙ୍କ ଆଲୋକକୁ କେଉଁଠି ଖୋଜିବା ? ଏଇଠି ଯିଏ ବି ଅଛି, ଯେଉଁଠି ବି ଅଛି, ଏକମାତ୍ର ସିଏ ହିଁ ଅଛନ୍ତି । ଆମର ଆଖି ବନ୍ଦ ଅଛି, ତାକୁ ଖୋଲିବା ହିଁ ହେଉଛି କେବଳ ସାଧନ । ପରମାତ୍ମା ଗୋଟିଏ ମୁହୂର୍ତ୍ତ ପାଇଁ ବି ତୁମ ଠାରୁ ଦୂର ହୋଇନାହାଁନ୍ତି । ଖୋଜିବା ବାଲା ସାଙ୍ଗରେ ହିଁ ପରମାତ୍ମା ଚାଲୁଛନ୍ତି ।

ଯେଉଁ କସ୍ତୁରୀକୁ ମୃଗ ସାରା ଜୀବନ ନିଜ ଠାରୁ ବାହାରେ ଖୋଜି ବୁଲୁଥାଏ, ସେଇ କସ୍ତୁରୀ ସେଇ ଖୋଜିବାବାଲା ମୃଗ ଭିତରେ ହିଁ ଲୁଚି ରହିଥାଏ, ସେହିପରି ଯାହାକୁ ଅଜ୍ଞାନୀ ଜୀବ ସମଗ୍ର ଜୀବନ ବାହାରେ ତୀର୍ଥ, ମନ୍ଦିର, ଚିତ୍ର, ମୂର୍ତ୍ତି, ଧ୍ୟାନ, ସମାଧି ଭିତରେ ଖୋଜିବୁଲୁଛି, ତାହା

ସେଇ ଖୋଜିବାବାଲା ଭିତରେ ଅର୍ଥାତ୍ ତୁମ ଭିତରେ ଲୁଚି ରହିଛି । ସିଏ ହିଁ ହେଉଛ ତୁମେ । ଯିଏ ପରମାତ୍ମାଙ୍କୁ ନିଜ ଠାରୁ ବାହାରେ ଖୋଜିବା ପାଇଁ ବାହାରି ପଡ଼ିଛି, ସିଏ ପରମାତ୍ମାଙ୍କୁ ଖୋଜି ପାଇପାରିବ ନାହିଁ, କାରଣ ପରମାତ୍ମା ଖୋଜିବାବାଲା ଭିତରେ ହିଁ ରହିଛନ୍ତି ।

ବହୁତ ହେଇଗଲା, ବର୍ତ୍ତମାନ ଜାଗିଯାଅ । ଜାଗିବା ପାଇଁ ଗୋଟିଏ ଉପାୟ ହେଉଛି ଯେ ତୁମେ କିଛି ସମୟ ପାଇଁ ଚୁପ୍‌ଚାପ୍ ହୋଇ ଖାଲି ବସିଯାଅ । କିଛି କର ନାହିଁ, କିଛି ଭାବ ନାହିଁ, କିଛି ନିର୍ଣ୍ଣୟ ନିଅ ନାହିଁ । କିଛି ଭଲ-ମନ୍ଦ ବୋଲି କୁହ ନାହିଁ । କରିବା ହିଁ ହେଉଛି ସଂସାର । କିଛି ନକରିବା ହିଁ ହେଉଛି ମୁକ୍ତି, ନିର୍ବାଣ । ଘଡ଼ିଏ ଦିଘଡ଼ି ଏଭଳି ହୋଇଯାଅ, ଯେମିତି ତୁମେ ମରିସାରିଛ, ତୁମେ ହିଁ ନାହଁ । ଶ୍ୱାସ ଚାଲିଥାଉ, ତୁମେ କେବଳ ଦେଖିଚାଲିଥାଅ । କରି-କରି ଆଜି ପର୍ଯ୍ୟନ୍ତ ତୁମକୁ କ'ଣ ମିଳିଲା, ପଚାଶ ଷାଠିଏ ସାଲ ବୟସ ତ ହୋଇଗଲା ଏବଂ ଆଉ କୋଡ଼ିଏ ବର୍ଷ ଏଇ ରାସ୍ତାରେ ଚାଲିଲେ ବି କ'ଣ ମିଳିବ ?

ଧ୍ୟାନ ରଖ ! ଯେଉଁ ବସ୍ତୁକୁ ଆମେ ଦେଖିନିଅନ୍ତି, ସିଏ ଦୃଶ୍ୟ ହୋଇଯାଏ ଏବଂ ଆମେ ତା'ର ଦ୍ରଷ୍ଟା ହୋଇଯାଆନ୍ତି, ତା'ଠାରୁ ଆମେ ହେଉଛୁ ଅଲଗା । ଯାହାର ଆମେ ଦ୍ରଷ୍ଟା ହୋଇପାରିଲେ ନାହିଁ, ଯାହାକୁ ଆମେ ଦୃଶ୍ୟ ବନାଇ ପାରିଲେ ନାହିଁ, ସିଏ ହେଉଛି ମୁଁ, ସିଏ ହେଉଛନ୍ତି ପରମାତ୍ମା । ଶରୀରର ପ୍ରତ୍ୟେକ ଅଙ୍ଗ ଭାଙ୍ଗିରୁଜି ଯାଏ, ଅଲଗା-ଅଲଗା ହୋଇଯାଏ କିନ୍ତୁ ଆମେ କହିଥାଉ ବାଳ ପ୍ରମାଣେ ବଞ୍ଚିଗଲି । ତୁମେ କେବେ ହେଲେ ଭାଙ୍ଗିଯାଅ ନାହିଁ । ହାତ ଭାଙ୍ଗିଗଲା, ଗୋଡ଼ ଭାଙ୍ଗିଗଲା, ମୁଣ୍ଡ ଫାଟିଗଲା, ଆଖି ଫୁଟିଗଲା କିନ୍ତୁ ତୁମ ଭିତରେ, ଦ୍ରଷ୍ଟା ଭିତରେ କୌଣସି ପ୍ରକାରର କିଛି ବି ବିକାର ଆସିପାରେ ନାହିଁ । ସବୁ ତୃପ୍ତି, ଅତୃପ୍ତି ଶରୀର, ମନ, ଇନ୍ଦ୍ରିୟରେ ଥାଏ । ଯିବା-ଆସିବା, ତିଆରି ହେବା-ଭାଙ୍ଗିବା, କମ୍-ଅଧିକ ହେବା ଏହା ଶରୀରର ହୁଏ । ତୁମେ ହେଉଛ ଅଚଳ, ଯେମିତି କି ସେମିତି, ତୁମେ ଆସନାହିଁ କି ଯାଅନାହିଁ, ଗଢ଼ିହୁଅ ନାହଁ କି ଭାଙ୍ଗିଯାଅ ନାହିଁ । ତୁମର ସ୍ଥିତି ଅଛୁଆଁ ହୋଇ ରହିଥାଏ । ଆକାଶରେ ବିଜୁଳି, ମେଘ, ସୂର୍ଯ୍ୟ, ଚନ୍ଦ୍ର, ବର୍ଷା, ଝଡ଼, ତୋଫାନ ହେଲାପରେ ବି ଆକାଶରେ କୌଣସି ଖଣ୍ଡ, କୌଣସି ରେଖା, କୌଣସି ଦାଗ, ଚିହ୍ନ ପଡ଼ିନଥାଏ । ସେହିପରି ତୁମର ଚିଦାକାଶ ଅଛି, ଯେଉଁଥିରେ ମନର ଭଲ-ଖରାପ କର୍ମଗୁଡ଼ିକ ଯୋଗୁ ବି କୌଣସି ବିକାର ଆସେନାହିଁ । ଦ୍ରଷ୍ଟା ସର୍ବଦା ସବୁ ପ୍ରକାରର ଦୃଶ୍ୟଠାରୁ ଅସଙ୍ଗ ଏବଂ ଦୂରରେ ହିଁ ରହିଥାଏ । ଏଇ ତୁମ ଦେହ ଭିତରର ଚିଦାକାଶ କେବେହେଲେ ମଇଳା ହୋଇନଥାଏ ।

ଯିଏ ଜାଣିନେଲା ଯେ ସୁଖ ମୋ ଭିତରେ ଅଛି, ସେତେବେଳେ ଅନ୍ୟ ପ୍ରତି ତା'ର ଆଉ ଅଭିଯୋଗ ରହିବ ନାହିଁ ଯେ ସିଏ ମୋତେ ଦୁଃଖ ଦେଉଛି । ସିଏ ମୋତେ ଭଲ ପାଉନି ।

ତୁମେ ଯାହା, ତାହା ହେଲେ ଯାଇ ତୁମେ ମାଲିକ ହୋଇପାରିବ । ମାଗିବା ଛାଡ଼ି ଦେଉ ଦେଉ ହିଁ ବ୍ୟକ୍ତି ମାଲିକ ହୋଇଯାଏ । ମାଗିବା ଆରମ୍ଭ କରୁ କରୁ ସେହି ବ୍ୟକ୍ତି ମାଲିକ ନରହି ଭିକାରୀ ହୋଇଯାଇଥାଏ । ଆଜି, ବର୍ତ୍ତମାନ, ଏଇ ମୁହୂର୍ତ୍ତରେ ତୁମେ ମାଲିକ ହୋଇପାରିବ, ଯଦି ତୁମ ତରଫରୁ ସବୁ ପ୍ରକାରର ମାଗିବା ଛାଡ଼ି ଦେଉଥାଅ ତେବେ । ମାଲିକ ହେବା ପାଇଁ ଅନ୍ୟ କୌଣସି ଉପାୟ ନାହିଁ । ତୁମେ ବାହାର ବସ୍ତୁର ମାଲିକ ହେବାର କେତେ ମିଥ୍ୟା ଅହଂକାର କରୁଥାଅ ପଛେ, ମୃତ୍ୟୁ ସବୁ କିଛି ଛଡ଼େଇ ନେବ । ତୁମେ ଯାହା, ତାହା ହିଁ ରହିବ । ଏଣେ-ତେଣେ ହଟିଯିବା ପାଇଁ ଟିକିଏ ହେଲେ ବି ଚେଷ୍ଟା କରନାହିଁ । ଏମିତି ସେମିତି ହୋଇଯିବା ପାଇଁ ଚେଷ୍ଟା କରନାହିଁ । ଯାହା ତୁମେ, ସେୟା ହୋଇ ରୁହ, ତା'ଠାରୁ ଭିନ୍ନ ବାଟରେ ଯିବା ପାଇଁ ଚେଷ୍ଟା କଲେ ତ ତୁମେ ଅନନ୍ତ ଦୂରତା ସୃଷ୍ଟି କରିଦେଲ ନିଜର ଲକ୍ଷ୍ୟସ୍ଥଳ ଠାରୁ ।

ଦେହର ବାହାରେ ଏବଂ ଭିତରେ ମନ, ବୁଦ୍ଧି, କାମ, କ୍ରୋଧ ଇତ୍ୟାଦିର ତୁମେ ଆତ୍ମା ତ ହେଉଛ ଦ୍ରଷ୍ଟା । ଦେଖୁ ଦେଖୁ ଯେତେ ବେଳେ ଆଉ କିଛି ବଞ୍ଚିରହେ ନାହିଁ, ସେତେବେଳେ ଯେଉଁ ଦେଖିବାବାଲା ରହିଯାଏ, ଯାହାକୁ ଦେଖିବାର କୌଣସି ଉପାୟ ନଥାଏ, ସିଏ ହେଉଛି ଆତ୍ମା, ସିଏ ହିଁ ତୁମେ । ତୁମେ କେବେହେଲେ ବି ଦୃଶ୍ୟ ହୋଇପାରିବ ନାହିଁ । ଯଦି ଆତ୍ମା ଦୃଶ୍ୟ ହୋଇଯାଏ ତେବେ କାହା ପାଇଁ, ପୁଣି ତାକୁ କିଏ ଦେଖିବ ? ସିଏ ତ ହେଉଛନ୍ତି ସମସ୍ତଙ୍କର ଏକମାତ୍ର ଦ୍ରଷ୍ଟା । ତାଙ୍କୁ ଯିଏ ଦେଖିବ ସିଏ ହେଉଛି ଆତ୍ମା ଏବଂ ଯାହା ଦେଖା ପଡ଼ିଯିବ ସିଏ ଅନାତ୍ମା ହିଁ ହେବ ।

ଆତ୍ମାର ହେବା ହିଁ ଶୁଦ୍ଧ-ବୁଦ୍ଧତା । ଶରୀର, ପ୍ରାଣ, ଇନ୍ଦ୍ରିୟ, ମନ, ବୁଦ୍ଧିର ଧର୍ମ ଆତ୍ମାକୁ ସ୍ପର୍ଶ କରିପାରିବ ନାହିଁ । ଆତ୍ମା ଏମାନଙ୍କ ଦ୍ୱାରା କେବେହେଲେ କଳୁଷିତ ହୋଇନଥାଏ । ଯେମିତି ଦର୍ପଣ ଆଗରେ କେହି ଚୋରୀ କରୁ, ହତ୍ୟାକରୁ, ମୈଥୁନ କରୁ, କ୍ରୋଧ କରୁ କିନ୍ତୁ ଦର୍ପଣରେ କିଛି ହେଲେ ବି ପ୍ରତିକ୍ରିୟା ହୋଇନଥାଏ, ଦର୍ପଣ ଅଛୁଆଁ ହୋଇ ରହିଥାଏ । ଅଥବା ସୂର୍ଯ୍ୟଙ୍କ ଆଲୋକରେ କେହି ଶୁଭାଶୁଭ କର୍ମ କରୁ, କିନ୍ତୁ ସୂର୍ଯ୍ୟ ସେଇ କର୍ମଗୁଡ଼ିକ ଠାରୁ ସର୍ବଦା ଅସଙ୍ଗ ହିଁ ରହିଥାନ୍ତି । ସେହିପରି ଆତ୍ମା ସମ୍ମୁଖରେ ମନ, ପ୍ରାଣ, ଇନ୍ଦ୍ରିୟ, ଶରୀର ସଂଘାତ କିଛି ବି ଶୁଭାଶୁଭ କର୍ମ କରୁଥାନ୍ତୁ କିନ୍ତୁ ଆତ୍ମା କର୍ମଗୁଡ଼ିକର ପ୍ରକାଶକ ହୋଇ ବି, ସେମାନଙ୍କର ଶୁଭାଶୁଭ କର୍ମଗୁଡ଼ିକର ଫଳ ସହିତ ଟିକିଏ ହେଲେ ବି ସମ୍ବନ୍ଧ ରଖିନଥାଏ । ଯେତିକି ଯେତିକି ତୁମେ ଦୃଶ୍ୟକୁ ଦେଖି ଦେଖି ଚାଲିଥାଅ, ସେତିକି ସେତିକି ଆତ୍ମା ପଛକୁ-ପଛକୁ ହଟି ଚାଲିଥାଏ । ଆତ୍ମା ପଛରେ କେହି ଅନ୍ତିମ ଦ୍ରଷ୍ଟା ନାହାନ୍ତି । ଆତ୍ମା ହେଉଛି ସମସ୍ତଙ୍କର ଅନ୍ତିମ ଦ୍ରଷ୍ଟା । ସିଏ ହେଉଛ ତୁମେ ।

ମହାତ୍ମା ହେବାପାଇଁ ଡେରି ଅଛି, ସାଧନ ଅଛି କିନ୍ତୁ ତୁମେ ବର୍ତ୍ତମାନ ହେଉଛ ପରମାତ୍ମା, ଯେମିତି କି ସେମିତି ରହିଛ । ପରମାତ୍ମା ହେବା ପାଇଁ କୌଣସି ଅଭ୍ୟାସର ଆବଶ୍ୟକତା ନାହିଁ । ଦେହ, ପ୍ରାଣ, ଇନ୍ଦ୍ରିୟ, ମନ, ବିଚାର, ଭାବ ତୁମେ ନୁହଁ, ଯଦି ଏଇ କଥା ତୁମ ବୁଦ୍ଧିରେ ଆସିଯାଏ ତେବେ ତୁମେ ବର୍ତ୍ତମାନ **'ଅହଂ ବ୍ରହ୍ମାସ୍ମି'** ର ଘୋଷଣା କରପାରିବ ।

ଯାହା କରି ଚାଲିଥିଲ କାଲି ପର୍ଯ୍ୟନ୍ତ, ତାହା ଆଜି ବି କର, ଆସନ୍ତା କାଲି ବି କରିବ । ବାସ୍ ! ସବୁ କରିବା ଭିତରେ, **'ମୁଁ ହିଁ କର୍ତ୍ତା'** ଏଇ ମିଥ୍ୟା ଅହଂକୁ ହଟାଇନିଅ । କର୍ତ୍ତାଭାବ ହଟାଇନିଅ । ଦୋକାନ, ଅଫିସ ଯାଅ, ବର୍ତ୍ତମାନ ମାଲିକ ହୋଇ ନୁହେଁ, ବାବୁ ହୋଇ ନୁହେଁ, ଦ୍ରଷ୍ଟା ହୋଇ, ସାକ୍ଷୀ ହୋଇ ଯାଅ । ଦେଖିଚାଲ ଗ୍ରାହକ ଆସୁଛନ୍ତି, ଖରିଦ କରୁଛନ୍ତି ଏବଂ ଗ୍ରାହକ ଆସୁନାହାନ୍ତି ତଥାପି ସୁଦ୍ଧା ଦେଖି ଚାଲିଥାଅ ।

ଦୃଶ୍ୟ ପଛରେ ଯିଏ ଧାଇଁ ଚାଲିଥିବ ତାକୁ ଦୃଶ୍ୟ ମିଳିବ ନାହିଁ, କାରଣ ତାହା ହେଉଛି ଛାୟା କେବଳ, ପୋଖରୀରେ ଚନ୍ଦ୍ରର ପ୍ରତିବିମ୍ବ ପରି । ଛୁଇଁବାକୁ ଯିବ, ଧରିବାକୁ ଯିବ ତ ଚନ୍ଦ୍ରମା ଭାଙ୍ଗିଯିବ । ସେହିପରି ଦୃଶ୍ୟକୁ ସତ୍ୟ ବୋଲି ମାନିନେଇ, ତାକୁ ପ୍ରାପ୍ତ କରିବା ପାଇଁ ଲାଗିଯିବ ଯଦି ଦ୍ରଷ୍ଟା ବି ନଷ୍ଟ ହୋଇଯିବ । କାରଣ ଦ୍ରଷ୍ଟାକୁ ପାଇବାର ହୋଶ୍ ହିଁ ରହିବ ନାହିଁ, ସମୟ ହିଁ ମିଳିବନାହିଁ ଦୃଶ୍ୟ ଭିତରେ ବୁଡ଼ି ରହିଥିଲେ ।

ତୁମ ଭିତରେ ଅମୃତର ଭଣ୍ଡାର ଲୁଚି ରହିଛି, ତୁମେ ତାହାର ମାଲିକ ହୋଇ ବି ଭିକାରୀ ଭଳି ହୋଇ ଭିକ ମାଗୁଅଛ । ଯାହା ପାଇଁ ତୁମେ ବ୍ୟସ୍ତ ହେଉଛ, ସେହି ଆନନ୍ଦ, ସେଇ ରସ, ସେଇ ସୁଖ ତୁମ ଭିତରେ ଲୁଚି ରହିଛି । ଯେଉଁ ଧନକୁ ତୁମେ ଖୋଜିବାକୁ ବାହାରିଛ, ସେଇ ଧନର ଅମ୍ବାର ତୁମରି ଭିତରେ ଲାଗିରହିଛି । ସମ୍ପତ୍ତି ଭିତରେ ଅଛି, ବିପତ୍ତି ବାହାରେ ଅଛି । ଯାହାଙ୍କ ପାଖରେ ବାହାରେ ବହୁତ କିଛି ଅଛି ସିଏ ଛଟପଟ ହେଉଥିବାର, କାନ୍ଦୁଥିବାର ଦେଖାଯାଇଥାଏ, ତାଙ୍କୁ ଦେଖିଲେ ବି ତୁମର ଆଖି ଖୋଲୁ ନାହିଁ, ତଥାପି ସୁଦ୍ଧା ପ୍ରାପ୍ତରେ ସନ୍ତୁଷ୍ଟ ହେଉନାହଁ ।

ଅଜ୍ଞାନୀ ସବୁ ଦେଖିଥାଏ କିନ୍ତୁ ସେଇ ଏକ'ଙ୍କୁ ଦେଖିପାରେ ନାହିଁ, ଯିଏ ହେଉଛନ୍ତି ସବୁର ଦ୍ରଷ୍ଟା । ଅଜ୍ଞାନୀ ଭଳି ଜ୍ଞାନୀ ସବୁକୁ ତ ଦେଖୁଥାଏ କିନ୍ତୁ ତାକୁ ବି ଦେଖି ନେଇଥାଏ, ଯିଏ ସବୁକୁ ଦେଖୁଥାନ୍ତି, ଯିଏ ହେଉଛନ୍ତି ସବୁର ଦ୍ରଷ୍ଟା । ଜ୍ଞାନୀ ସେଇ ଦ୍ରଷ୍ଟା ଭିତରେ ଜୀଇଁଥାଏ, ତାକୁ ନିଜର ସ୍ୱରୂପ ବୋଲି ଜାଣିଥାଏ ।

ଯାହା ତୁମର ଅନୁଭବରେ ଆସିଯାଇଛି, ସିଏ ଦୃଶ୍ୟ ହୋଇଗଲା । ଯିଏ ଦୃଶ୍ୟ ବନିଗଲା, ସିଏ ଦ୍ରଷ୍ଟା ହୋଇ ରହିଲା ନାହିଁ । ତୁମେ ହେଉଛ ସମସ୍ତ କ୍ରିୟା, ଭୋଗ, ବୃତ୍ତି ଗୁଡ଼ିକର ଦେଖିବାବାଲା । ତୁମେ ଯାହା ବି ଭିତରେ ଦେଖିଲ ଯେ ଅମୃତ ରସ ଝରୁଛି, ଦିବ୍ୟ ପ୍ରକାଶ ଜ୍ୟୋତି ଦେଖାଯାଉଛି, ସଙ୍ଗୀତ ଧ୍ୱନି ଶୁଣାଯାଉଛି, ଅନାହତ ନାଦ ଶୁଣା ଯାଉଛି ତେବେ ତୁମେ ହେଉଛ ସେସବୁର ଦେଖିବାବାଲା । ଯେତେବେଳେ ତୁମେ ଦେଖିଲ ଭିତରେ ନା କିଛି ବିଚାର, ନା କିଛି ତରଙ୍ଗ, ନା କିଛି ଭାବ ଅଛି କେବଳ ଆନନ୍ଦ ଶାନ୍ତି ରହିଛି ଏବଂ ତୁମେ ସେଇ ଶାନ୍ତି ଠାରୁ ବି ଅଲଗା, ତୁମେ ସେଇ ଶାନ୍ତିକୁ ବି ଜାଣିବାବାଲା । ନା ମୁଁ ମନ, ନା ମୁଁ ଶୂନ୍ୟ । ସବୁ ଚିଜ, ଯାହା ଜଣା ଯାଇଥାଏ, ତା'ଠାରୁ ମୁଁ ଅଲଗା ହୋଇଗଲି ।

ଆତ୍ମାକୁ ଜହର ଛୁଇଁ ନଥାଏ । ଶରୀରରେ ହିଁ ଜହର ବ୍ୟାପୀ ଯାଇଥାଏ । ଘାଆ, କ୍ୟାନସର୍, ଟ୍ୟୁମର, ଜ୍ୱଳନ, ପଚିଯିବା, ପୀଡ଼ା ଏସବୁ ଦେହରେ ଅଛି । ଯିଏ ଜାଣିଗଲା ଯେ ମୁଁ ହେଉଛି ଆତ୍ମା, ସିଏ ସବୁ ପାପଗୁଡ଼ିକ ମଝିରେ ଛିଡ଼ାହୋଉଥାଉ ତଥାପି ସୁଦ୍ଧା ପଦ୍ମପତ୍ର ଭଳି ପାପ ତାଙ୍କୁ ଛୁଇଁବ ନାହିଁ ।

ଅଧିକାଂଶ ସ୍ତ୍ରୀଲୋକ ଦୃଶ୍ୟ ହୋଇଯିବାରେ ରୁଚି ରଖିଥାନ୍ତି । ପୁରୁଷ ଦର୍ଶକ ହେବାରେ ରୁଚି ରଖିଥାଏ । କେହି ବିରଳ ଲୋକ ହିଁ ଦ୍ରଷ୍ଟା ହେବା ପାଇଁ ରୁଚି ରଖିଥାନ୍ତି, ଯିଏ ଦୃଶ୍ୟକୁ ଦେଖିଥାନ୍ତି ଏବଂ ସିଏ ନିଜକୁ ତାହାର ଦ୍ରଷ୍ଟା ବୋଲି ବି ମାନିଥାନ୍ତି ।

ସ୍ଫଟିକ ମଣି ଭଳି ମୋର ନିର୍ମଳ ଅଦ୍ୱୟ ଆତ୍ମାର ପ୍ରମାତା କେଉଁଠି ଅଛି ନା ପ୍ରମାଣ କେଉଁଠି ଅଛି ? କେଉଁଠି ପ୍ରମେୟ ଏବଂ କେଉଁଠି ପ୍ରମା ? ପ୍ରମାତା ଅର୍ଥାତ୍ ଜ୍ଞାତା, ପ୍ରମାଣର ଅର୍ଥ ଜ୍ଞାନପ୍ରାପ୍ତ କରିବାର ସାଧନ ଇନ୍ଦ୍ରିୟଗୁଡ଼ିକ, ପ୍ରମେୟର ଅର୍ଥ ଯାହା ଜଣାଯାଏ (ଜ୍ଞେୟ), ପ୍ରମାର ଅର୍ଥ ହେଉଛି ଜ୍ଞାନ । ସାକ୍ଷୀ ଭାବରେ ସ୍ଥିର ହୋଇଗଲା ପରେ ଏସବୁ କିଛି ବଞ୍ଚିରହିଲା ନାହିଁ । ଦୁଇ ଗଲା ତ ବର୍ତ୍ତମାନ ସବ୍‌ଜେକ୍ଟ କ'ଣ, ଅବଜେକ୍ଟ କ'ଣ ? ବର୍ତ୍ତମାନ ଜ୍ଞାତା କ'ଣ ଓ ଜ୍ଞେୟ କ'ଣ ? ବର୍ତ୍ତମାନ କିଏ ଦ୍ରଷ୍ଟା ଏବଂ କିଏ ଦର୍ଶନ ? ଦୁଇ ତ ରହିଲା ନାହିଁ । ଏଇ ଦ୍ରଷ୍ଟା-ଦର୍ଶନ ଦୁଇ ହେଲେ ଯାଇ ତ ଘଟିବ । ଯେତେବେଳେ ଏକ ହିଁ ବଞ୍ଚିରହିଲା, ସେତେବେଳେ କିଏ ଜାଣିବ, କାହାକୁ ଜାଣିବ, କେମିତି ଜାଣିବ ଏବଂ କ'ଣ ଜାଣିବ ? ଜ୍ଞାନର ଅନ୍ତିମ ଘଡ଼ିରେ ବୃତ୍ତି ଜ୍ଞାନ ବି ସମାପ୍ତ ହୋଇ ଯାଇଥାଏ । ଜୀବ ବ୍ରହ୍ମର ଭେଦ ବି ସମାପ୍ତ ହୋଇଯାଇଥାଏ, ନା ଜୀବ ବଞ୍ଚିଲା ବା ବ୍ରହ୍ମ ବଞ୍ଚିଲା । ନା କେହି ଜୀବ ଅଛି ନା କେହି ବ୍ରହ୍ମ ଅଛି । ଯେପର୍ଯ୍ୟନ୍ତ ଦୁଇ ଅଛି, ସେପର୍ଯ୍ୟନ୍ତ ଅଜ୍ଞାନ ଅଛି ।

ସ୍ୱଭାବ ପାଇଁ ସାଧନା କରିବାକୁ ପଡ଼େନାହିଁ । ଆତ୍ମା, ମୁକ୍ତି ହେଉଛି ଆମର ସ୍ୱଭାବ । ତାକୁ ପାଇବାର କୌଣସି ମାର୍ଗ ହିଁ ନାହିଁ, କାରଣ ତୁମେ ସର୍ବଦା ଲକ୍ଷ୍ୟ ଉପରେ ହିଁ ଅଛ **'ନାନ୍ୟଃ ପନ୍ଥା'** ।

ପାଇବା ପାଇଁ ତ ସେତେବେଳେ ସାଧନ ଗୁଡ଼ିକର ଆବଶ୍ୟକତା ପଡ଼ିଥାଏ, ଯେତେବେଳେ ବସ୍ତୁ ଦୂରରେ ଥାଏ ଏବଂ ଅପ୍ରାପ୍ତ ହୋଇଥାଏ । ପରମାତ୍ମା ମିଳିସାରିଛନ୍ତି । ବରଂ ସ୍ୱୟଂ ହିଁ ହେଉଛ ପରମାତ୍ମା, ତାଙ୍କୁ କେବଳ ସମ୍ୟକ ଭାବରେ ଜାଣିନିଅ ।

ଜୀବନର ସାକ୍ଷୀ ରୁହ । ଆଦର୍ଶ ତୁମକୁ କର୍ତ୍ତା ବନାଇଥାଏ । ଆଦର୍ଶ ଚାଲିଗଲା ତ କର୍ତ୍ତାପଣିଆ ଚାଲିଯିବ । **'ତସ୍ୟ କାର୍ଯ୍ୟ ନ ବିଦ୍ୟତେ'** (ଗୀତା ୩/୧୭)

ଆଦର୍ଶ ତିଆରି କରିବାର ଭାବ ଏହା ହେଉଛି ରୁଗ୍ଣ ଚିତ୍ତର ପରିଚୟ । ବ୍ରହ୍ମଚର୍ଯ୍ୟର ଆଦର୍ଶ ହେଉଛି ଏକ କାମୀ ଚିତ୍ତର ପ୍ରମାଣ ଏବଂ ସେହିପରି ସ୍ୱାସ୍ଥ୍ୟ ହେଉଛି ରୋଗୀର, ଅଚୌର୍ଯ୍ୟ ଚୋରର, ଦାନ ଲୋଭୀର ପ୍ରମାଣ । ଆଦର୍ଶକୁ ଆଣିଲେ ଆସେନାହିଁ, ଅହଂକାର ଚାଲିଗଲେ ଆଦର୍ଶ ଆସିବ ।

ଯେମିତି ଅଛି, ସେମିତି ଜାଣିବାର ଅଛି, ସେହିପରି ନିଶ୍ଚୟ କରିବାର ଅଛି । କିଛି କରିବାର ନାହିଁ । ସତ୍ୟ ହେଉଛି ତୁମର ଜନ୍ମସିଦ୍ଧ ଅଧିକାର । ତୁମେ ହିଁ ସିଏ । ତାଙ୍କ ଠାରୁ ତୁମର ଗୋଟିଏ କେଶ ଭଳି ବି ଦୂରତା ନାହିଁ । ସିଏ ସାଙ୍ଗରେ ଅଛନ୍ତି, ଏହା ବି ନୁହେଁ ବରଂ ତୁମେ ହିଁ ଅଛ । ନିଜ ଭିତରେ ହିଁ ନେଇ ଚାଲିଛ ସେଇ ଲକ୍ଷ୍ୟସ୍ଥଳ ପରମଧାମକୁ, ଯେଉଁଠି ତୁମେ ପ୍ରଥମରୁ ହିଁ ରହିଆସିଛ, ଯାହା ଠାରୁ ତୁମେ ଦୂରକୁ ଯାଇ ହିଁ ନାହଁ । ସେଇ ପରମଧାମ ହେଉଛ ତୁମେ ।

ପରମାତ୍ମାଙ୍କୁ ଦୃଶ୍ୟ ଭଳି ଦେଖିବାର ଭ୍ରାନ୍ତିରେ ପଡ଼ିଯାଅ ନାହିଁ । ସିଏ ତ ସବୁକୁ ଦେଖିବା ବାଲା, ଜାଣିବାବାଲା । ତାଙ୍କୁ କିପରି ଦେଖି ପାରିବ ? ସବୁ ଖୋଜିବାବାଲାଙ୍କର ଦେଖିବାରେ ଆଗ୍ରହ ଥାଏ । ଯେତେବେଳେ କି ସିଏ ହେଉଛନ୍ତି କେବଳ ଦେଖିବାବାଲା, ସିଏ ଦୃଶ୍ୟ ହୋଇପାରିବେ ନାହିଁ । ଏଠାରେ ନିଶ୍ଚିତ ଭାବରେ ଦ୍ୱିତୀୟ ବୋଲି କେହି ନାହିଁ । କେବଳ ତୁମେ ଦ୍ରଷ୍ଟା ହୋଇଯାଅ । ଏହା ବ୍ୟତୀତ ଆଉ କିଛି ମାର୍ଗ ନାହିଁ ।

କର୍ତ୍ତା ହୋଇଗଲେ ହିଁ ସବୁ ଦ୍ୱନ୍ଦ ହୁଏ । କର୍ତ୍ତା ବନିଯାଅ ନାହିଁ । ସାକ୍ଷୀ ରୁହ । ଯିଏ ସାକ୍ଷୀ ହୋଇ ରହେ, ସିଏ ସର୍ବଦା ତୃପ୍ତ । ଆକାଂକ୍ଷା ଦ୍ୱାରା ଅତୃପ୍ତି ହୋଇଥାଏ । ସୁସ୍ଥ ରୁହ । ସ୍ୱ' ରେ ଅବସ୍ଥାନ କରିବା ବ୍ୟକ୍ତି ସର୍ବଦା ତୃପ୍ତ ରହିଥାଏ ।

ଜୀବନର ଜନ୍ମ-ମୃତ୍ୟୁ ଉପରେ ତୁମର କୌଣସି ଅଧିକାର ନାହିଁ । ଯେତେବେଳେ ଘଟଣା ଘଟିବାର ଥାଏ ଘଟିଯାଏ, ଆମକୁ ଉଭୟ ଅବସ୍ଥା ପାଇଁ କେହି ପଚାରନ୍ତି ନାହିଁ । ପୁଣି ଜୀବନର ମଝିରେ ଯାହା ବି ଘଟଣା ଘଟିଥାଏ ତାକୁ ବି ସ୍ୱୀକାର କରି ଚାଲ, ସାକ୍ଷୀ ରୁହ, ସେଥିରେ ନିଜର କୌଣସି ଆକାଂକ୍ଷା ରଖ ନାହିଁ । ଜୀବନ ହେଉଛି ଏକ ନାଟକ, ଏହାକୁ ଗମ୍ଭୀରତାର ସହ ନିଅ ନାହିଁ । ତାକୁ ରାମଲୀଳା ଭଳି ଦେଖିନିଅ । ଚିନ୍ତାଯୋଗୁ, ଅହଂକାର ଯୋଗୁ ଦୁଃଖ ହୋଇଥାଏ । ଯାହା ହେଉଛି ତାକୁ ସ୍ୱୀକାର କରିନିଅ । କର୍ତ୍ତା ଭାବ ଯୋଗୁଁ ଚିନ୍ତା ହୋଇଥାଏ । ସାକ୍ଷୀର ଭାବ ରହିଛି ତ ଚିନ୍ତା ରହିନାହିଁ ।

ଯିଏ ଏୟା ଜାଣିଗଲା ଯେ ମୁଁ ଦେହ ନୁହେଁ, ଦେହ ମୋର ନୁହଁ, ସିଏ ସାକ୍ଷୀଭାବ ଉପରକୁ ଚାଲିଗଲା, ସିଏ ସାକ୍ଷୀ ହୋଇଗଲା । ମୁଁ ହେଉଛି କେବଳ ଦ୍ରଷ୍ଟା । ମୁଁ ମନ ନୁହେଁ, ମନ ମୋର ନୁହେଁ ଏହା ହେଉଛି ଦୃଶ୍ୟ, ଏଭଳି ବୋଧ ହୋଇଯାଇଥିବା ବ୍ୟକ୍ତି ସାକ୍ଷୀ ଉପରକୁ ଚାଲିଗଲା । ସିଏ ବ୍ରହ୍ମ ଠାରୁ ଦୂରରେ ନାହିଁ । ଏହିଭଳି ଜ୍ଞାନୀ ହେଲା-ନହେଲା ବିଷୟ ପାଇଁ ଚିନ୍ତା ରଖିନଥାନ୍ତି । ବ୍ରହ୍ମଠାରୁ ଆରମ୍ଭ କରି ତୃଣ ପର୍ଯ୍ୟନ୍ତ ଏକମାତ୍ର ବ୍ରହ୍ମଙ୍କ ଲୀଳା ଚାଲିଛି ବୋଲି ଯେ ଜାଣେ, ସିଏ ନିର୍ଭୟ, ନିର୍ବିକଳ୍ପ, ପ୍ରଶାନ୍ତ ହୋଇଯାଇଥାଏ ।

ଲୋକେ ଗୁରୁମନ୍ତ୍ର ପଚାରନ୍ତି । ସଦ୍‌ଗୁରୁ ମନ୍ତ୍ର ଦିଅନ୍ତି ନାହିଁ, ସିଏ ତ ମନକୁ ବି ଛଡ଼େଇ ନେଇଥାନ୍ତି, ତେଣୁ ମନ୍ତ୍ରକୁ ଦୋହରାଇବ କିଏ ? ଗୁରୁ ତ ସାକ୍ଷୀଭାବକୁ ଜଗାଇଥାନ୍ତି । ମନର ଦ୍ରଷ୍ଟା ହୁଅ, ତୁମେ କିଛି ବି ଚୟନ କରନାହିଁ, ତୁମେ କେବଳ ସାକ୍ଷୀ ରୁହ । ମନ ଚାହିଁଲେ ରାମ-ରାମ ଦୋହରାଉ ବା ସିନେମା ଗୀତ ଗାଉ, ତୁମେ କେବଳ ତା'ପ୍ରତି ଉଦାସୀନ ହୋଇ ଦ୍ରଷ୍ଟା ରୁହ, ସାକ୍ଷୀ ରୁହ । ମନ୍ତ୍ର ପଢ଼ିବ, ପ୍ରାର୍ଥନା, ପୂଜା କରିବ ତ କର୍ତ୍ତା ହୋଇଯିବ । କେବଳ ଦେଖିବାବାଲା ହୋଇ ରୁହ । ଯେମିତି ସଡ଼କ କରରେ ଲୋକମାନଙ୍କର ଗମନାଗମନକୁ ଦେଖିଚାଲିଥାଅ, ସେହିପରି ସମସ୍ତ ଦୃଶ୍ୟଗୁଡ଼ିକ ଠାରୁ ଦୂରତା ରଖ । ଦୃଶ୍ୟ ସହିତ ମିଶିଯାଅ ନାହିଁ । ଏହାହିଁ ହେଉଛି ମହାମନ୍ତ୍ର ଯେ ମୁଁ ହେଉଛି ସାକ୍ଷୀ, ମୁଁ ହେଉଛି ଆତ୍ମା ।

ଶରୀର ନିଜକୁ ନିଜେ ଚାଲିଛି । ଶ୍ୱାସ ଆପେ ଆପେ ଚାଲିଛି । ରକ୍ତ ନିଜେ ନିଜେ ତିଆରି ହେଉଛି, ମନ ନିଜକୁ ନିଜେ ଚାଲୁଛି । ସ୍ୱପ୍ନ ନିଜ ଦ୍ୱାରା ଚାଲୁଛି । ଯଦି ଏୟା ଖିଆଲରେ ଆସିଯାଏ ତେବେ ଶରୀରର କ୍ରିୟା, ପ୍ରାଣର କ୍ରିୟା ଓ ମନର ବିଚାର ତୁମ ଦ୍ୱାରା ଚାଲୁନାହିଁ । ଚଲାଇବାର ବିଚାର ହିଁ ହେଉଛି ଭ୍ରାନ୍ତି । ତୁମେ ଚଲାଉନାହିଁ କି ତୁମେ ଏହାର କ୍ରିୟାଗୁଡ଼ିକୁ ଅଟକାଇ ପାରିବ ନାହିଁ ? ଯିଏ ଏହାକୁ ଦୃଶ୍ୟ ବୋଲି ଜାଣିନେଲା, ସିଏ ସାକ୍ଷୀକୁ, ଦ୍ରଷ୍ଟାକୁ ଉପଲବ୍ଧ ହୋଇଯିବ ।

ଶରୀର, ପ୍ରାଣ, ମନ କାହାକୁ ମୋର ସହଯୋଗ କରିବାର ଆବଶ୍ୟକତା ନାହିଁ, ମୁଁ ତ ହେଉଛି ସାକ୍ଷୀ । ଚିନ୍ତନ, ମନନ ଠାରୁ ବି ମୁଁ ଊର୍ଦ୍ଧ୍ୱରେ । ଏଇ ଚିନ୍ତନ, ମନନ ବି ନିଜ ଦ୍ୱାରା ହେଉଛି । ମୁଁ ହେଉଛି କେବଳ ଏହାର ଦ୍ରଷ୍ଟା ମାତ୍ର ।

ଆତ୍ମା କେବେହେଲେ ଦୃଶ୍ୟ ହୋଇପାରିବ ନାହିଁ । ଆତ୍ମା ଯଦି ଦୃଶ୍ୟ ହୋଇଯିବ, ତେବେ ତାକୁ କିଏ ଦେଖିବ ? ଦୁଇଟି ଆତ୍ମା ନାହିଁ ଯେ ଜଣେ ଅନ୍ୟକୁ ଦେଖିନେବ ?

ଦୃଶ୍ୟକୁ ଦେଖୁ-ଦେଖୁ ଯେତେବେଳେ କିଛି ବି ଦେଖିବାକୁ ବାକୀ ନ ରହେ, ସେତେବେଳେ ଯିଏ ରହିଯାଇଥାଏ, ସବୁକୁ ଅନୁଭବ କରିବା ବାଲା, ସିଏ ହେଉଛି ଆତ୍ମା ।

ତୁମେ ହେଉଛ ସାକ୍ଷୀ । ଯାହା ହେଉଛି ତାହା ଶରୀର ଓ ମନର ବୁଝାମଣା ଦ୍ୱାରା ହେଲା । ତୁମେ ହେଉଛ ଦର୍ପଣ ଭଳି । ଦର୍ପଣ ଆଗରେ କେହି ହତ୍ୟାକରୁ, ପ୍ରେମ କରୁ ଓ ଚୋରୀ କରୁ, ଦର୍ପଣର ସେଇ ଦୃଶ୍ୟଗୁଡ଼ିକ ସହିତ କୌଣସି ସମ୍ବନ୍ଧ ରହିନଥାଏ । ତୁମେ ହେଉଛ ଦର୍ପଣ ଭଳି ସାକ୍ଷୀ ଆତ୍ମା । ଅଜ୍ଞାନତା ଯୋଗୁ ଜୀବାତ୍ମା, ଦୃଶ୍ୟ ଶରୀର, ମନ, ବୁଦ୍ଧି ସହିତ 'ମୁଁ ଅଛି', ଏଭଳି ଅଧ୍ୟାସ କରି ବସିଛି ।

ଶରୀର, ମନ, ବୁଦ୍ଧି ସହିତ ଏକତା କରିଛ ତ ତାକୁ ଭାଙ୍ଗିଦେବା ପାଇଁ ସାଧନର ଆବଶ୍ୟକତା ରହିଛି । ଯଦି ମନ, ବୁଦ୍ଧି ସହିତ ଏକତା ନକରିଛ ତେବେ କିଛି କରିବାର ନାହିଁ । ବାସ୍, ଯାହା ତୁମେ, ତାକୁ ଜାଣିନେବାର ଅଛି, ଜାଗିଯିବାର ଅଛି । ବର୍ତ୍ତମାନ ମୁଁ ଯେପରି, ସେହିପରି ରହିଛି । ଯେପର୍ଯ୍ୟନ୍ତ ଦୌଡ଼ି ଚାଲିଥିବ, ଯାହା ପାଇ ସାରିଛ ତାକୁ ବି ହରାଇ ବସିବ **"କସ୍ତୁରୀ କୁଣ୍ଡଳ ବସେ"** ସଂସାରରେ ଦୌଡ଼ିବାରେ, ପାଇବାରେ । ଏବେ ଗ୍ରହଣ କ'ଣ, ତ୍ୟାଗ କ'ଣ, କିଛି କରିବାକୁ, ପାଇବାକୁ ରହିଲା ନାହିଁ, ବର୍ତ୍ତମାନ ହର୍ଷ-ବିଷାଦର ବିଷୟ ହିଁ ରହିଲା ନାହିଁ । ବର୍ତ୍ତମାନ ତ ମୁଁ ଯେମିତି ବି ଅଛି ରହିଛି । ଏଇ ମୁହୂର୍ତ୍ତରେ ତୁମେ ନିଜ ଭିତରେ ଥାଇ ବସିଛ ତ କିଛି ପାଇବାର ନାହିଁ । ବୁଦ୍ଧ କହିଲେ – ଯାହା ପ୍ରଥମରୁ ହିଁ ମିଳିସାରି ଥିଲା, ତାକୁ ହିଁ ଆମେ ଖୋଜୁଛୁ, ସିଏ ଆମରି ଭିତରେ ପ୍ରଥମରୁ ହିଁ ଅଛି । ମହାତ୍ମା ହେବାର ଅଛି ତ ବହୁତ ଗ୍ରହଣ-ତ୍ୟାଗ କରିବାକୁ ପଡ଼ିବ କିନ୍ତୁ ପରମାତ୍ମା ହେବା ପାଇଁ ଗୋଟିଏ ମୁହୂର୍ତ୍ତ ବି ଲାଗିବ ନାହିଁ । **'ଅହଂବ୍ରହ୍ମାସ୍ମି'** ଏହା ମୁହୂର୍ତ୍ତକ ଭିତରେ ଘୋଷଣା କରି ପାରିବ । ଯେମିତି ମୁଁ ସେମିତି ଅଛି । ଏଭଳି ହୋଇଗଲା ତ ସିଏ ଗୃହସ୍ଥ ହୋଇଥିଲେ ବି ସନ୍ୟାସୀ ହୋଇଗଲେ ।

ଯାହା କାଲି କରୁଥିଲ ଯଥା ଦୋକାନ, ଅଫିସ୍, ଚାଷବାସ, ତାହା କରିଚାଲ, କେବଳ କର୍ମ ପଛରେ ରହିଥିବା କର୍ତ୍ତାକୁ ହଟାଇନିଅ । ଯାହା ହେଉଅଛି, ଯେମିତି ହେଉଅଛି ତୁମେ ତା'ର ସାକ୍ଷୀ ହୋଇ ରହ ।

**'ସ୍ୱ'**ରୁ ବାହାରକୁ ଚାଲିଗଲ ତ ସବୁ ହେଉଛି **ପର**, ଅନ୍ୟ । ହୁଏତ ସିଏ ଦୋକାନ ହୋଇଥାଉ ବା ମନ୍ଦିର, ଈଶ୍ୱର (ପରମାତ୍ମା) ଏସବୁ ହେଉଛି ସଂସାର । ସବୁ ସ୍ମରଣ, ପ୍ରାର୍ଥନା, ପୂଜା ହେଉଛି ପରର । **ପର ଅର୍ଥାତ୍ ମାୟା** । ମୁଁ' ତୁ'ର ଖବର ଦେଇଥାଏ । ତୁ ନାହିଁ ତ ମୁଁ ରହିପାରିବି ନାହିଁ । ସ୍ୱ-ପର ବା ତୁ-ମୁଁ ହେଉଛି ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ।

କାହାକୁ ପାଇବା, କିଏ ପାଇବ, କ'ଣ ପାଇବ ? ସବୁ ହେଉଛି ଏକ । ଏଠାରେ ଅନ୍ୟ ବୋଲି କିଛି ନାହିଁ, ଯାହାକୁ ପ୍ରାପ୍ତ କରାଯିବ । **ଏକମେବାଽଦ୍ୱିତୀୟ ବ୍ରହ୍ମ, ନେହନାନାସ୍ତି କିଞ୍ଚନ ।** ପୁଣି ଯାହାକୁ ପାଇଥିବ ତାହା ଦିନେ ଅବଶ୍ୟ ହଜିଯିବ ? ମିଳିଥିବା ଜିନିଷ ଅଲଗା ହୋଇଯିବ । ଯାହା ପୂର୍ବରୁ ନଥିଲା ଆଜି ହୋଇଛି, ସିଏ ପୁଣି ନଷ୍ଟ ହୋଇଯିବ, ପୁଣି ନାହିଁ ହୋଇଯିବ ।

ଯଦି କୌଣସି ଗୁରୁ, ପରମାତ୍ମାଙ୍କୁ ପାଇବା ପାଇଁ ସାଧନ ବତାଉଛନ୍ତି, ତେବେ ଜାଣିବ ଯେ ସିଏ ବର୍ତ୍ତମାନ ପରମାତ୍ମାଙ୍କର ଅଖଣ୍ଡତା, ସର୍ବବ୍ୟାପକତା, ସର୍ବରୂପକତାକୁ ଜାଣିନାହାନ୍ତି, ସେ ତାଙ୍କୁ ପରିଚ୍ଛିନ୍ନ ବୋଲି ମାନିନେଇଛନ୍ତି । ସେଥିପାଇଁ ପାଇବାର ସାଧନ ବତାଉଛନ୍ତି । ପରମାତ୍ମା ହେଉଛନ୍ତି ତୁମର ସ୍ୱଭାବ । ସିଏ ହେଉଛନ୍ତି ନିତ୍ୟ ସିଦ୍ଧ । ତାଙ୍କୁ ପାଇବାର ନାହିଁ, କେବଳ ଜାଣିବାର ଅଛି ଯେ ସିଏ ହେଉଛି ମୁଁ । ପରମାତ୍ମା ଓ ତୁମ ଭିତରେ କୌଣସି ସମ୍ବନ୍ଧ ହୋଇପାରିବ ନାହିଁ । ତୁମର ଓ ତାଙ୍କ ଭିତରେ ଦ୍ୱୈତ ନାହିଁ, ତୁମର ନଷ୍ଟ ହୋଇଯିବା ହିଁ ପରମାତ୍ମା । ନା ସିଏ ପିତା, ନା ମାତା, ନା ସଖା, ନା ସ୍ୱାମୀ । କାରଣ ସିଏ ହେଉଛନ୍ତି ଏକୁଟିଆ ।

କର୍ତ୍ତାଭାବ ଚାଲି ଯାଉ ଯାଉ ଜୀବନ ସୁସ୍ଥ ହୋଇଯାଏ, ଶାନ୍ତ ହୋଇଯାଏ । କର୍ମ ଛାଡ଼ିଦେଇ ପଳାଇବାର ଆବଶ୍ୟକତା ନାହିଁ, କେବଳ କର୍ତ୍ତାଭାବ ଛାଡ଼ିବାର ଆବଶ୍ୟକତା ଅଛି । ଦଉଡ଼ିଲ ତ ବାଟବଣା ହେଲ, ଅଟକି ଗଲେ ପାଇଯିବ । ବୁଦ୍ଧ ଦୌଡ଼ିକରି ପାଇ ନଥିଲେ, ଅଟକି ଯାଇ ପାଇଲେ । ପରମାତ୍ମା ଦଉଡ଼ିବାବାଲା ସାଥୀରେ ଦୌଡୁଛନ୍ତି ।

କଥା ହେଉଛି କେବଳ ବୋଧର । ଚେଷ୍ଟା, ପ୍ରୟାସ, ଜପର କଥା ନାହିଁ, କିଛି କରିବାର ନାହିଁ । ଯେମିତି ଅଛି ସେମିତି ଜାଣିବାକୁ ହେବ । କରିବାର କଥା ହିଁ ବ୍ୟର୍ଥ । ମୁଁ ଦେହ ନୁହେଁ, **'ମୁଁ ହିଁ ବ୍ରହ୍ମ'** ଏମିତି ଦୋହରାଇବା କଥା ବି ନୁହେଁ । ଦୋହରାଇବା ଦ୍ୱାରା ତ ବୋଧ ନହେଉଥିବାର ସଂକେତ ମିଳିଥାଏ । ତେଣୁ ଯେତେବେଳେ ମାଲୁମ୍ ପଡ଼ିଗଲା, ସେତେବେଳେ ପୁଣି ଦୋହରାଇବା କ'ଣ ?

ଯେଉଁ ସାଧକର ଏଇ ନିଶ୍ଚୟ ହୋଇଯାଏ ଯେ ସବୁ ଖେଳ ପ୍ରକୃତିରେ ଚାଲିଥାଏ, ମୁଁ ହେଉଛି ତା'ର ଦ୍ରଷ୍ଟା ମାତ୍ର, ତାଙ୍କର ସବୁ କ୍ଲେଶ ସମାପ୍ତ ହୋଇଯାଏ, ସେ ବିକାର ଶୂନ୍ୟ ହୋଇଯାନ୍ତି ।

ଯେପରି ଦର୍ପଣ ଆଗରେ ଘଟଣା ସବୁ ହୋଇଥାଏ, ପ୍ରତିବିମ୍ବ ତିଆରି ହୁଏ । ଘଟଣାଗୁଡ଼ିକ ସମାପ୍ତ ହୋଇଯାଏ, ପ୍ରତିବିମ୍ବ ହଜିଯାଏ, ଦର୍ପଣ ପୁଣି ଖାଲି କି ଖାଲି, ଏହା ତ ହେଉଛି ଦର୍ପଣର ଶୁଦ୍ଧି । ଦର୍ପଣରେ କିଛି ସୃଷ୍ଟି ହୁଏନାହିଁ, ପ୍ରତିବିମ୍ବ ଭଳି କୌଣସି ବସ୍ତୁ ନାହିଁ । ଦର୍ପଣରେ କିଛି ତିଆରି ହୋଇନାହିଁ । କେବଳ ତିଆରି ଲାଭ କି ଆଭାସ ହେଲା । ସେହିପରି ତୁମରି ମନିଭିତରେ ନାନା ପ୍ରକାର ବୃତ୍ତିଗୁଡ଼ିକ ଉଠା ବସା କରିଥାଏ । ତୁମେ ସେସବୁ ଠାରୁ ପୃଥକ୍, ଅସଙ୍ଗ ସାକ୍ଷୀ ହୋଇ ରହିଥାଅ, ଦ୍ରଷ୍ଟା ହୋଇ ରହିଥାଅ ।

ପ୍ରତ୍ୟେକ ଅନୁଭବ ଠାରୁ ତୁମେ ଅଲଗା ହିଁ ହୋଇଥାଅ, କାରଣ ଅନୁଭବର ବି ତୁମେ ହେଉଛ ଦ୍ରଷ୍ଟା । ଯେତେବେଳେ ତୁମେ କହିଥାଅ ଯେ ବଡ଼ ମଜା ଲାଗିଲା, ସେତେବେଳେ ତୁମେ ଦେଖିଲାବାଲା ନିଶ୍ଚିତ ଭାବରେ ସେଇ ଆନନ୍ଦକୁ ଦୂରରେ ଥାଇ ଦେଖୁଅଛ ଯେ ଆନନ୍ଦ ଆସିଲା, ଯାହା ପ୍ରଥମେ ନଥିଲା । ଆନନ୍ଦ ଠାରୁ ତୁମେ ହେଉଛ ଅଲଗା ।

ଗୋଟିଏ କଥା ହେଉଛି ସତ୍ୟ – ଜୀବ ଚେଇଁଥାଉ ବା ଶୋଇଥାଉ, ଜାଗ୍ରତରେ ଦେଖୁ ବା ସ୍ୱପ୍ନରେ ଦେଖୁ, କେବେ ମନ ହାରିଯାଉ ବା ଜିତୁ, କେବେ ଧନୀ ହେଉ ବା କେବେ ନିର୍ଦ୍ଧନ, କେବେ ମହଲ ଭିତରେ ଜୀବ ଥାଉ ବା କୁଡ଼ିଆ ବି ନ ମିଳୁ, କେବେ ସୁସ୍ୱାଦୁ ଭୋଜନ ତ କେତେବେଳେ ବାସୀ ଶୁଖିଲା ରୁଟି, କେତେବେଳେ ବହଳ ଘିଅ, ତ କେବେ ଚଣା ମୁଠିଏ, କେତେବେଳେ ବା ଆଉ କିଛି, ସିଏ ବି ଖାଲି ବଦଳି ଚାଲିଥାଏ କିନ୍ତୁ ଦ୍ରଷ୍ଟା ବଦଳିନଥାଏ । ଶୈଶବ ବଦଳିଗଲା, ଯୌବନ ବଦଳିଗଲା, ବାର୍ଦ୍ଧକ୍ୟ ବି ଚାଲିଯାଉଛି, କେବଳ ଦ୍ରଷ୍ଟା ବଞ୍ଚି ରହିଥାଏ । ଜୀବନରେ ଏକମାତ୍ର ବସ୍ତୁକୁ ସ୍ଥିର ଅଚଳ ଥିବାର ପାଇବ, ସିଏ ହେଉଛି ଯିଏ ପିଲାଟିଦିନରୁ ଆଜି ପର୍ଯ୍ୟନ୍ତ ସବୁ ଅବସ୍ଥା ଗୁଡ଼ିକୁ , ରୋଗ-ଭୋଗ, ସୁଖ-ଦୁଃଖ, ସଂଯୋଗ-ବିୟୋଗ, ମାନ-ଅପମାନ, ଥଣ୍ଡା-ଗରମ ଇତ୍ୟାଦିର ପରିବର୍ତ୍ତନକୁ ଜାଣିଛି ।



# ।। ଦ୍ରଷ୍ଟାର ଉପରକୁ ଚାଲ ।।

ଜ୍ଞାନର ପ୍ରଥମ କିରଣ, ପ୍ରାରମ୍ଭରେ ଦୃଶ୍ୟ-ଦ୍ରଷ୍ଟାର ବିବେକ ଦ୍ୱାରା ପରିସ୍ଫୁଟ ହୋଇଥାଏ । ସଂସାରରେ ଦୁଇଟି ତତ୍ତ୍ୱ ମିଳିଥାଏ । ତାକୁ ଭିନ୍ନ ଭିନ୍ନ ନାମରେ କୁହା ଯାଇଥାଏ, ଯଥା : ଦ୍ରଷ୍ଟା-ଦୃଶ୍ୟ, ଜଡ଼-ଚେତନ, ଆତ୍ମା-ଅନାତ୍ମା, ଧ୍ୟାତା-ଧ୍ୟେୟ, ପ୍ରମାତା-ପ୍ରମେୟ, ଅନୁଭାବ-ଅନୁଭାବ୍ୟ ଇତ୍ୟାଦି ।

ଯାହାକୁ ଦ୍ରଷ୍ଟା ଦେଖିନେଲା, ଧ୍ୟାତା ଧ୍ୟେୟକୁ ଜାଣିନେଲା, ପ୍ରମାତା ପ୍ରମେୟକୁ ଜାଣିନେଲା, ଅନୁଭୋକ୍ତା ଯେଉଁ ବିଷୟକୁ ଅନୁଭବ କରିନେଲା, ସେଇ ସେଇ ଦୃଶ୍ୟ, ଧ୍ୟେୟ, ଜ୍ଞେୟ, ପ୍ରମେୟ ଠାରୁ ସେଇ ଦେଖିବା, ଜାଣିବା, ଅନୁଭବ କରିବାବାଲା ନିଶ୍ଚିତ ଭାବରେ ପୃଥକ ହୋଇଥାଏ । ଶବ୍ଦକୁ ଶୁଣିବାବାଲା, ସ୍ପର୍ଶକୁ ଗ୍ରହଣ କରିବାବାଲା, ରୂପକୁ ଦେଖିବାବାଲା, ରସର ସ୍ୱାଦ ନେବାବାଲା, ଗନ୍ଧ ଇତ୍ୟାଦିକୁ ଶୁଂଘିବାବାଲା, ଶବ୍ଦ, ସ୍ପର୍ଶ, ରୂପ ତଥା ଗନ୍ଧଠାରୁ ହିଁ ପୃଥକ ହୋଇଥାଏ । ଯିଏ ଦ୍ରଷ୍ଟା, ସିଏ କେବେହେଲେ ଦୃଶ୍ୟ ହୋଇନଥାଏ । ତୁମେ ତା'ଠାରୁ ଉର୍ଦ୍ଧ୍ୱରେ, ଯାହା ବି ତୁମେ ଅନୁଭବ କରିନେଇ ଥାଅ, ତାହା ତୁମ ଠାରୁ ଅଲଗା ହୋଇଯାଇଥାଏ ।

ବର୍ତ୍ତମାନ ଜ୍ଞାନର ପୂର୍ଣ୍ଣତାରେ ଦ୍ରଷ୍ଟା-ଦୃଶ୍ୟ, ଜ୍ଞାତା-ଜ୍ଞେୟ, ଧ୍ୟାତା-ଧ୍ୟେୟ, ପ୍ରମାତା-ପ୍ରମେୟ, ଅନୁଭୋକ୍ତା-ଅନୁଭାବ୍ୟ ଦୁଇଟି ନୁହଁନ୍ତି ସେମାନେ ହେଉଛନ୍ତି ଏକ, ଯଦି ଦୁଇ ରହେ ତେବେ ଅଦ୍ୱୈତର ସିଦ୍ଧି ହେବନାହିଁ, ଦ୍ୱୈତର ହିଁ ସିଦ୍ଧି ହେବ । ଏହା ତ ହେଉଛି ଅଜ୍ଞାନ । ବିରୋଧାଭାସ ପ୍ରତୀତ ହୋଇଥାଏ ଆରମ୍ଭ ଏବଂ ଶେଷର ସିଦ୍ଧାନ୍ତରେ, କାହାକୁ ସତ ବୋଲି କୁହାଯିବ ?

ଯେତେବେଳେ ଦୃଶ୍ୟକୁ ସତ୍ତାଶୂନ୍ୟ ବୋଲି କୁହାଯାଏ, ସେତେବେଳେ ଦ୍ରଷ୍ଟା ବି ସତ୍ତାଶୂନ୍ୟ ହୋଇଯାଇଥାଏ । ଯେମିତି କି ପୁତ୍ର ନାହିଁ ତ ପିତାର ଉପାଧି ବି ରହିବ ନାହିଁ । ପୁତ୍ର ମଲା ତ ପିତା ବି ମଲା, ପୁରୁଷ କେବଳ ବଞ୍ଚି ରହିଯିବ । ପିତାର ନାମ ତ ପୁତ୍ର ଅପେକ୍ଷାରେ ରହିଥାଏ । ଉଭୟ ହେଉଛନ୍ତି ଗୋଟିଏ ଶ୍ରେଣୀର ନାମ, ଏକା ସାଙ୍ଗରେ ଜନ୍ମ ହୋଇଥାନ୍ତି ଏବଂ ଏକାସାଙ୍ଗରେ ହଜିଯାନ୍ତି । ସେହିପରି ଦୃଶ୍ୟର ଅପେକ୍ଷାରେ ଦ୍ରଷ୍ଟା ନାମ ରହିଥାଏ । ଦୃଶ୍ୟ ମିଥ୍ୟା ହେଲେ ଦ୍ରଷ୍ଟା ବି ତା' ସାଙ୍ଗରେ ମିଥ୍ୟା ହୋଇଗଲା । ଦ୍ରଷ୍ଟା ଓ ଦୃଶ୍ୟ ଗୋଟିଏ ଶ୍ରେଣୀର । ଦ୍ରଷ୍ଟା ଠାରୁ ଦୃଶ୍ୟ ଅଲଗା ନୁହେଁ । ଦ୍ରଷ୍ଟା ହିଁ ଦୃଶ୍ୟ । ଦୁଇ ନୁହେଁ ଏକ । ଦ୍ରଷ୍ଟା ଦୃଶ୍ୟ ବିନା ରହିପାରିବ ନାହିଁ । ଦୃଶ୍ୟ ବିନା ତୁମେ ଦ୍ରଷ୍ଟାର ନିର୍ଣ୍ଣୟ କିପରି କରିପାରିବ ? ଦ୍ରଷ୍ଟାର ପରିଭାଷା କିପରି କରିପାରିବ ? ଦୃଶ୍ୟ ବିନା ଦ୍ରଷ୍ଟା ହୋଇପାରିବ ନାହିଁ । ଦ୍ରଷ୍ଟାର ପରିଭାଷାରେ ଦୃଶ୍ୟକୁ ଛିଡ଼ା କରାଇବାକୁ ପଡ଼ିବ । ତେଣୁ ସେଇ ଦ୍ରଷ୍ଟା ଠାରୁ ଦୃଶ୍ୟ ଅଲଗା ରହିଲା କେଉଁଠି ? ଏକ ହିଁ ହେବ। ପ୍ରଥମେ ଦୃଶ୍ୟ ନଷ୍ଟ ହୋଇଯାଇଥାଏ, ତା'ପରେ ଦ୍ରଷ୍ଟା ବି ନଷ୍ଟ ହୋଇଯାଏ ଏବଂ ଯେତେବେଳେ ଦ୍ରଷ୍ଟା ଛିଡ଼ାହେବ, ସେତେବେଳେ ଦୃଶ୍ୟ ବି ନିଶ୍ଚିତ ଭାବରେ ଆଗରେ ଛିଡ଼ା ହୋଇଛି, ନହେଲେ ତୁମେ କେଉଁ କଥାର, କେଉଁ ବସ୍ତୁର ଦ୍ରଷ୍ଟା ହେବ ? ହୋଇ ବି ପାରିବ ନାହିଁ । ଉଭୟ ହେଉଛନ୍ତି ସାପେକ୍ଷିକ ଉପାଧି । ଯିଏ ହେଉଛି ଦ୍ରଷ୍ଟା, ସିଏ ବି ହେଉଛି ଦୃଶ୍ୟ, ଦୁଇ ନୁହେଁ ଏକ ଏବଂ ଏହି ଘୋଷଣା ଉପନିଷଦଗୁଡ଼ିକର ଦ୍ରଷ୍ଟା ଋଷିମାନେ କରିଛନ୍ତି – **'ସର୍ବଂ ଖଲ୍ୱିଦଂ ବ୍ରହ୍ମ', 'ଏକମେବାଽଦ୍ୱିତୀୟ ବ୍ରହ୍ମ', 'ନେହ ନାନାସ୍ତି କିଞ୍ଚନ'** ।

ତେଣୁ ଦୃଶ୍ୟ ଠାରୁ ପ୍ରଥମେ ସାଧକକୁ ମୁକ୍ତ କରିବାକୁ ହେବ । ତା'ପରେ ଦ୍ୱିତୀୟ ଘଟଣା ସ୍ୱତଃ ଘଟିଯିବ । କରିବାକୁ ପଡ଼ିବ ନାହିଁ । ପୁଅ ମରିଗଲା ତ ବାପକୁ ମାରିବାକୁ ପଡ଼ିବ ନାହିଁ, ବାପ ସ୍ୱତଃ ହିଁ ମରିଯିବ । ପୁଅର ଅଭାବରେ ବର୍ତ୍ତମାନ ତାକୁ ବାପ ବୋଲି କିଏ କହିବ ? ପତିର ଅଭାବରେ ପତ୍ନୀ ନାହିଁ, ତେଣୁ ଦୃଶ୍ୟର ଅଭାବରେ ଦ୍ରଷ୍ଟା ବି ବଞ୍ଚି ରହିପାରିବ ନାହିଁ । ଦୃଶ୍ୟ ଏବଂ ଦ୍ରଷ୍ଟା ଉଭୟ ଏକ ମୁଦ୍ରାର ଦୁଇଟି ପାର୍ଶ୍ୱ । ଯାହାକୁ ଆମେ ଦେଖନ୍ତି, ସେଥିରେ ଆମେ ଏକା ହିଁ ଭାସୁଥାନ୍ତି ।

ଯେମିତି ଦର୍ପଣ ଅନେକ ହୋଇଥିବାରୁ ସେଥିରେ ପ୍ରତିବିମ୍ବିତ ଛବିଗୁଡ଼ିକ ଅଲଗା ଅଲଗା ନୁହଁନ୍ତି । ଦର୍ପଣ ବିକାରୀ ହୋଇଥିଲେ ପ୍ରତିବିମ୍ବ ବିକାରୀ ହୋଇପାରିବ ନାହିଁ । ପୂର୍ଣ୍ଣିମାର ଚନ୍ଦ୍ର ହୁଏତ ସାଗର ଉପରେ ପ୍ରତିବିମ୍ବିତ ହେଉ, ହୁଏତ ଦୁର୍ଗନ୍ଧ ପାଣି ଉପରେ ହେଉ, ପ୍ରତିବିମ୍ବ ଦୁର୍ଗନ୍ଧ, ବିକାରୀ ହୋଇନଥାଏ । ଅନେକ ଆଭୂଷଣ ହୋଇଥିଲେ ସୁଦ୍ଧା ସ୍ୱର୍ଣ୍ଣ ଭିତରେ ପ୍ରଭେଦ ହୋଇନଥାଏ । ସୁନା ବିକାରୀ ହୋଇନଥାଏ । ସେହିପରି ଦୃଶ୍ୟ ଅନେକ ହୋଇଥିଲେ ବି ଦ୍ରଷ୍ଟା

ଅନେକ ହୋଇନଥାଏ । ଏହା ସହିତ ଦ୍ରଷ୍ଟା – ଦୃଶ୍ୟ ଦୁଇ ହୋଇନଥାନ୍ତି, ଏକ ହିଁ ହୋଇଥାନ୍ତି । ଦ୍ରଷ୍ଟା ହିଁ ହେଉଛି ଦୃଶ୍ୟ । ବିମ୍ବ ହିଁ ହେଉଛି ପ୍ରତିବିମ୍ବ । ସ୍ୱର୍ଣ୍ଣ ହିଁ ହେଉଛି ଅଳଂକାର । ରାମ ଓ ରାବଣ ଭିତରେ, କୃଷ୍ଣ ଓ କଂସ ଭିତରେ, ଦାନୀ ଓ ଭିକାରୀ ମଧ୍ୟରେ, ହତ୍ୟାକାରୀ ଓ ଦୟାଳୁ ଭିତରେ ସେଇ ଏକ ହିଁ ପ୍ରକାଶ ପାଉଛନ୍ତି । ସେଇଠି ହିନ୍ଦୁ, ମୁସଲମାନ ଦୁଇ ନୁହେଁ । ରାମଙ୍କ ଭିତରେ ହିଁ ରାମଙ୍କୁ ଦେଖିଲ, ହିନ୍ଦୁ ଭିତରେ ବି ବର୍ତ୍ତମାନ ରାମଙ୍କୁ ଦେଖିଲ ତ ବର୍ତ୍ତମାନ ତୁମରି ଆଖି ଖୋଲିନାହିଁ, ତୁମେ ଅନ୍ଧ । ଯେଉଁଦିନ ରାବଣ ଭିତରେ ବି ରାମଙ୍କୁ ଦେଖିବାରେ ଲାଗିଯିବ, ମୁସଲମାନ ଭିତରେ ବି ରାମ ଦେଖାଯାଉଥିବେ, ସେହିଦିନ ତୁମରି ଚକ୍ଷୁ ଖୋଲିଗଲା ବୋଲି ଜାଣିବ । ରାବଣ ବି ହେଉଛି ତାଙ୍କରି ରୂପ, ମୁସଲମାନ ବି ତାଙ୍କରି ରୂପ । ଶୁଭ ଭିତରେ ଅଶୁଭ ଭିତରେ, ଉଚ୍ଚ ଭିତରେ, ନୀଚ ଭିତରେ, ପଶୁ–ପକ୍ଷୀ ଭିତରେ, ଜଳସ୍ଥଳ ଭିତରେ ଏକମାତ୍ର ତତ୍ତ୍ୱ ରହିଛି । କେଉଁଠି ରାଜା ହୋଇଯାଇ, କେଉଁଠି ପ୍ରଜା ହୋଇଯାଇ, କେଉଁଠି ଦାନୀ ହୋଇ, କେଉଁଠି ଭିକାରୀ ହୋଇ, କେଉଁଠି ଗୁରୁ ବନିଯାଇ, କେଉଁଠି ଶିଷ୍ୟ ବନିଯାଇ, କେଉଁଠି ଫୁଲ ହୋଇଯାଇ ତ କେଉଁଠି କଣ୍ଟା ହୋଇଯାଇ ସେଇ ଏକା ହିଁ ଅଛନ୍ତି ।

**''ତେରେ ରୂପ ଅନେକ ତୁ ଏକ ହୀ ହୈ''**

ଏହିଭଳି ଦେଖୁ ଦେଖୁ ଦ୍ୱୈତର ସମାପ୍ତି ହୋଇଯିବ । ଏକକୁ ଦେଖୁ ଦେଖୁ ତୁମେ ଏକରସ ହୋଇଯିବ ।

**'ଦେଖତ ଦେଖତ ଐସା ଦେଖ, ମିଟ ଜାୟେ ଦ୍ୱୈତ, ରହ ଜାୟ ଏକ ।'**

ବର୍ତ୍ତମାନ ଦ୍ରଷ୍ଟା ରହିଲା କେଉଁଠି ? ସିଏ ତ ଦୃଶ୍ୟର କବର ଭିତରେ ତା' ସାଙ୍ଗରେ ହିଁ ଶୋଇଗଲା । ବର୍ତ୍ତମାନ ଯିଏ ବଞ୍ଚିରହିଲା, ସିଏ ହେଉଛି ଅନିର୍ବଚନୀୟ, ଅପ୍ରମେୟ, ଅକଥନୀୟ, ଅତୁଳନୀୟ, ସତ୍ତାମାତ୍ର, ଚିନ୍ମାତ୍ର ।

ଏହାର ତାତ୍ପର୍ଯ୍ୟ ହେଉଛି ଏୟା ଯେ ଯାହା ବି ତୁମକୁ ଦେଖାଯାଉଛି, ସିଏ ହେଉଛି ଏକ । ତୁମେ ହିଁ ନିଜକୁ ଅନେକ ରୂପରେ ଦେଖୁଛ । ସିଏ ଅନେକ ରୂପରେ ହେଉଛନ୍ତି ଏକ, ଯେମିତି ଅନେକ ଅଳଂକାର ଉପରେ–ଉପରେ ଭାସୁଥିଲେ ବି ସେ' ସବୁ ହେଉଛି ଏକ ମାତ୍ର ସ୍ୱର୍ଣ୍ଣ । ଅନେକ ଲହରୀ ରୂପରେ ଏକ ମାତ୍ର ସାଗର ହିଁ ଲହଡ଼ି ଭାଙ୍ଗୁଛି । ଯେତେବେଳେ ସବୁ ରୂପ ହେଉଛି ତୁମରି, ତେଣୁ ଭୟ କ'ଣ ? ରୂପରୁ ହଟିଯାଇ ତୁମେ ଅରୂପ ଆଡ଼କୁ ଚାଲ । ଅରୂପକୁ ଚିହ୍ନିବା ପାଇଁ ଚେଷ୍ଟା କର ଏବଂ ସେଇ ତୁମେ ହିଁ ହେଉଛ ସାକ୍ଷୀ ମାତ୍ର । **''ସର୍ବଧୀ ସାକ୍ଷୀ ଭୂତମ୍, ସାକ୍ଷୀ ଚେତା କେବଲୋ ନିର୍ଗୁଣଶ୍ଚ''** । ଦୃଶ୍ୟ ଓ ଦ୍ରଷ୍ଟାର ଅଭାବ ବେଳେ ଯେଉଁ ଏକ ସାକ୍ଷୀ ରହିଯାଏ, ସିଏ ହେଉଛ ତୁମେ– **'ତତ୍ତ୍ୱମସି'** । ସାକ୍ଷୀ ଭିତରେ ରହିଯାଅ, ଚେହେରାକୁ, ଶରୀରକୁ, ରୂପ

ରଙ୍ଗକୁ କମ୍ ଦେଖ । ଯିଏ ଚେହେରାର ମୁଖା, ଓଢ଼ଣୀ ଘୋଡ଼ାଇ ହୋଇଛି, ଯିଏ ଶରୀର ଭିତରେ ଲୁଚି ରହିଛି ତାକୁ ଦେଖ । ସିଏ ସବୁ ଭିତରେ ଗୋଟିଏ ହାଡ଼ର ଛାଞ୍ଚ ଭଳି ସମାନ ଭାବରେ ବ୍ୟାପ୍ତ । ଶୂନ୍ୟରେ ଶୂନ୍ୟକୁ ଯୋଡ଼ିଦିଅ, ଫେଡ଼ିଦିଅ, ଗୁଣି ଦିଅ ସବୁ ହେଉଛି ଏକ ଶୂନ୍ୟ ।

ପରମାତ୍ମାଙ୍କ ଭଜନ ତ ସେତେବେଳେ ଅଖଣ୍ଡ ହୋଇପାରିବ, ଯେତେବେଳେ ତୁମକୁ ଏଇ ବୋଧ ହୋଇଯିବ ଯେ ପରମାତ୍ମା ହେଉଛି ମୁଁ । ତୁମେ ହିଁ ନିରନ୍ତର ରହିଛ । ଅନ୍ୟର ବୋଧ, ହୋଶ୍, ଧ୍ୟାନ, ଚିନ୍ତନ କେବେହେଲେ ନିରନ୍ତର ହୋଇପାରିବ ନାହିଁ । ଅଭ୍ୟାସ ହିଁ ହେଉଛି ଦୁଃଖର କାରଣ । ପରମାତ୍ମା ହେଉଛନ୍ତି ତୁମର ସ୍ୱଭାବ ।

ଯେପର୍ଯ୍ୟନ୍ତ କିଛି ପାଇବାର ଅଛି, ହେବାର ଅଛି, କରିବାର ଅଛି, କିଛି ଦେଖିବାର ଅଛି ସେ ପର୍ଯ୍ୟନ୍ତ ଜାଣିରଖ ବର୍ତ୍ତମାନ ତୁମେ ପରମାତ୍ମାଙ୍କ ଠାରୁ ଦୂରରେ ରହିବାକୁ ଚାହୁଁଛ । ଯାହାକୁ ତୁମେ ବାହାରେ ଖୋଜୁଛ, ସିଏ ହେଉଛ ତୁମେ ନିଜେ । ତୁମ ପାଖରେ ଅଛି ନା ଭିତରେ ଅଛି, ଏଭଳି କହିବା ବି ଉଚିତ୍ ନୁହେଁ । ପାଇଯିବି ବୋଲି ଭାବିନେଲ ତ ହରାଇଲ । ସିଏ ଦୌଡ଼ିଲେ ମିଳନ୍ତି ନାହିଁ, କେବଳ ଜାଗିଯିବାର ଅଛି । ଅଳସୁଆ ଶିରୋମଣି ହୋଇଯାଅ । କିଛି କରିବାର ନାହିଁ । ଯାହାକୁ ତୁମେ ବାହାରେ ଖୋଜୁଛ, ସେଇ ପରମାତ୍ମା ତୁମ ଭିତରେ ଉପସ୍ଥିତ ଅଛନ୍ତି, ସିଏ ହେଉଛ ତୁମେ ।

ମୋକ୍ଷର ଅର୍ଥ ହେଉଛି ନିଜ ସହିତ ପରିଚିତ ହେବା ଏବଂ ଯାହା ମୁଁ ନୁହେଁ ତା'ଠାରୁ ମୁକ୍ତି ପାଇବା । ଅଭ୍ୟାସର ଅର୍ଥ ହେଉଛି ଯାହା ତୁମେ ନୁହେଁ, ତାହା ହେବାକୁ ଚାହୁଁଛ ଏବଂ ତାହା ତୁମେ କେବେହେଲେ ହୋଇପାରିବ ନାହିଁ । ଦୁର୍ଗନ୍ଧ ଫୁଲ ଗୋଲାପ ହୋଇପାରିବ ନାହିଁ । ଧନ୍ୟ ସେଇ ଲୋକମାନେ, ଯିଏ ବୋଧ ମାତ୍ରକେ ଜାଗ୍ରତ ହୋଇଯାଇଥାନ୍ତି ଯେ ମୁଁ ହେଉଛି କେବଳ ଦ୍ରଷ୍ଟା, ସାକ୍ଷୀ, ଆତ୍ମା । ବାସ୍ ଏଇଭଳି ଦୃଢ଼ ନିଶ୍ଚୟର କେବଳ ଆବଶ୍ୟକତା ରହିଛି ।

ଯେପର୍ଯ୍ୟନ୍ତ ଆଖି ଉପରେ ଚଷମା ରହିଛି, ପରଦା ରହିଛି, ସେଯର୍ପ୍ୟନ୍ତ ଯାହା କିଛି ବି ମାନିନିଅ କିନ୍ତୁ ଯେତେବେଳେ ପରଦା ହଟିଯିବ, ଚଷମା ବାହାର କରି ଦେଖିବ, ସେତେବେଳେ ସତ୍ୟ ଯେମିତି ତାକୁ ଦେଖିବ ।

ଯିଏ ଦୃଶ୍ୟ ଭିତରେ ପଶି ବାଟବଣା ହୋଇଛି, ସିଏ ଅଧାର୍ମିକ । ହୁଏତ ସିଏ ଭଗବାନଙ୍କୁ ଆଖି ଆଗରେ ଆକାଶରୁ ଓହ୍ଲାଇଥିବାରୁ ଦେଖିଥାଉ ନା କାହିଁକି ?, ହୁଏତ ଭଗବାନ ତା' ଆଖି ଆଗରେ ଛିଡ଼ା ହୋଇଯାନ୍ତୁ ନା କାହିଁକି ? ସେସବୁ ହେଉଛି କଳ୍ପନା ମାତ୍ର, ସ୍ୱପ୍ନ ଭଳି । ଅନୁଷ୍ଠାନ କରିବାର ଆବଶ୍ୟକତା ନାହିଁ। ଅନୁଷ୍ଠାନ କେବଳ ଥକାଇଦେବା ପାଇଁ ହୋଇଥାଏ ଯେ ତୁମେ ଚୁପ୍‌ହୋଇ ବସିଯାଅ । ଭୁଲ୍‌ରେ ବି ତୁମେ ତା'ଠାରୁ ଅଲଗା ହୋଇନାହଁ । ସର୍ବଦା ଯୋଡ଼ି

ହୋଇରହିଛ । ପରମାତ୍ମାଙ୍କ ସହିତ ମିଶିବା ପାଇଁ ପ୍ରୟାସ ହିଁ ପରମାତ୍ମାଙ୍କ ଠାରୁ ଦୂରରେ ଥିବା ଭ୍ରମକୁ ଦୃଢ଼ କରିଥାଏ । ପରମାତ୍ମା ତୁମ ସହିତ ହିଁ ଚାଲୁଛନ୍ତି । ତାଙ୍କୁ ଛାଡ଼ିବାର କୌଣସି ରାସ୍ତା ହିଁ ନାହିଁ । ବୁଝିବା ହିଁ ଯଥେଷ୍ଟ । ଜାଗ୍ରତ ହୋଇ ଦେଖ । ସିଏ ହିଁ ତୁମେ । ସବୁ କ୍ରିୟାର ସିଏ ହେଉଛନ୍ତି ସାକ୍ଷୀ, ସିଏ ସାଥୀରେ ଅଛନ୍ତି । ପୂଜା, ପ୍ରାର୍ଥନା, କାନ୍ଦିବା, ଡାକିବା ଏସବୁ ବନ୍ଦ କର, ସିଏ ତ ତୁମ ଭିତରେ ହିଁ ଅଛନ୍ତି, ତୁମେ ହିଁ ନିଜେ । ପରମାତ୍ମାଙ୍କୁ ପାଇବା ପାଇଁ ଦାନ, ପୁଣ୍ୟ, ତପ, ଜପ, କରି ପାଇବାର ଭାବ ହିଁ ହେଉଛି ଭୁଲ୍ । ସିଏ କୌଣସି ବସ୍ତୁ ନୁହଁନ୍ତି, ଯାହାଙ୍କୁ ଦାମ ଦେଇ କିଣି ନେଇପାରିବ । ପରମାତ୍ମା ହେଉଛନ୍ତି ଅକାରଣ । ତାଙ୍କୁ ପାଇବା ପାଇଁ କିଛି ସାଧନରୂପୀ ମୂଲ୍ୟ ଦେବାକୁ ପଡ଼ିବ ନାହିଁ ଯେ ଏତିକି କଲି, ତା'ପରେ ଯାଇ ମିଳିଲା । ମାତ୍ର ମନରେ ଭରସା ଆସେ ନାହିଁ ଯେ ମୁଁ କିଛି ନକଲେ କେମିତି ମିଳିବେ ? ଫଳ, ମିଠାଇ, ଲୁଗା ଇତ୍ୟାଦି ପାଇଁ କିଛି ନକଲେ ତ ସିଏ ମିଳିନଥାଏ । ପରମାତ୍ମାଙ୍କ ଠାରୁ ଅଲଗା ହେଲେ ତ ତୁମେ ଜୀବିତ ରହିପାରିବ ନାହିଁ । ମାଛକୁ ଜଳରୁ ଅଲଗା କରି ଦିଆଗଲେ ତ ସେ ମରିଯିବ । ସେହିପରି ତୁମରି ଅବସ୍ଥା ହୋଇଥାନ୍ତା, ଯଦି ସିଏ ତୁମ ଠାରୁ ଅଲଗା ହୋଇଥାନ୍ତେ । ପରମାତ୍ମା ମିଳି ସାରିଛନ୍ତି ।

ଜୀବର ପରମାତ୍ମାଙ୍କ ଠାରୁ ଦୂରତା ନାହିଁ, ଦୂରତା କେବଳ ବିସ୍ମରଣ ପାଇଁ ହେଉଛି । ଭୁଲ୍ ଥିଲା ମନର । ଯିଏ ନଥିଲା ତାକୁ ସିଏ ନିଜର ବୋଲି ମାନିନେଲା । ଯାହା ମୁଁ ଥିଲି, ତାକୁ ଜାଣି ହିଁ ନାହିଁ ।

ତୁମେ ସେଇ ରାମଙ୍କ ଦ୍ୱାରା ପଥରର ପୂଜା କରୁଛ, ତାଙ୍କ ଦ୍ୱାରା ପ୍ରାର୍ଥନା, ଭଜନ କରାଉଛ, ତାଙ୍କ ଦ୍ୱାରା ରାମ-ରାମ ଲେଖାଉଛ, ତାଙ୍କୁ ଧନୁର୍ବାଣ ଛାଡ଼ି କାଗଜ କଲମ ଧରାଇ ଦେଇଛ । ଏଇ ପାପ ହିଁ କରୁଛ । ଏତେଗୁଡ଼ିଏ କାଗଜ, କଲମ ଯାହା ପିଲାଙ୍କ କାର୍ଯ୍ୟରେ ଲାଗିଥାନ୍ତା, ତାକୁ ଅଯଥାରେ ନଷ୍ଟ କରିଦେଲ । ଲେଖିଲାବାଲା ହେଉଛନ୍ତି ରାମ । କାଗଜ ଉପରେ $H_2O$ ଲେଖିଦେଲେ ଶୋଷ ମରିଯାଏ ନାହିଁ । କାଗଜ ଉପରେ ରାମ-ରାମ ଲେଖିବା ସେହିଭଳି ଏକ ନିରର୍ଥକ କାର୍ଯ୍ୟ । ଯିଏ ଲେଖୁଛନ୍ତି, ସିଏ ହେଉଛନ୍ତି ରାମ, ତାଙ୍କୁ ଚିହ୍ନ । ସିଏ କିଏ, ଯିଏ ରାମ-ରାମ ଲେଖୁଛନ୍ତି ଏବଂ ରାମ ନାମ ରଟନା କରି ଚାଲିଛନ୍ତି, ତାଙ୍କୁ ଖୋଜ ଏବଂ ତାଙ୍କ ଦ୍ୱାରା ହିଁ ରାମଙ୍କୁ ପାଇଯିବ ।

ସାଂସାରିକ ପଦାର୍ଥ ସବୁ ନଷ୍ଟ ହୋଇଥାଏ । ପରମାତ୍ମା ହେଉଛନ୍ତି ନିତ୍ୟ । ସେଇ ପରମାତ୍ମା ହେଉଛ ତୁମେ । ପରମାତ୍ମା ହେଉଛନ୍ତି ତୁମର ସ୍ୱଭାବ । ସହଜ ସମାଧି କେବେ ହେଲେ ଘଟିନଥାଏ । ଯାହାର କାରଣ ଅଛି, ସେଇ କାର୍ଯ୍ୟ କେବେହେଲେ ବି ନଷ୍ଟ ହୋଇଯିବ । ସମ୍ବୋଧୀ,

ସମାଧି ସାଧନ–ସାଧ୍ୟ ନୁହେଁ । ସିଏ ହେଉଛନ୍ତି କୃପା ସାଧ୍ୟ । ଆମ ଭିତରେ ଥାଇ ପରମାତ୍ମା ହିଁ ସବୁ ସମୟରେ ଦେଖୁଛନ୍ତି ଏବଂ ଅଜ୍ଞାନୀ ତାଙ୍କୁ ଦେଖିବାକୁ ଚାହୁଁଛି । କିନ୍ତୁ ସିଏ କେବେହେଲେ କାହାର ଦୃଶ୍ୟ ହୋଇପାରିବେ ନାହିଁ । ସିଏ ହେଉଛନ୍ତି ଦ୍ରଷ୍ଟା ଏବଂ ଦ୍ରଷ୍ଟା ହୋଇ ରହିଥିବେ ।

ଦ୍ରଷ୍ଟା ଆଡ଼କୁ ଚାଲ, ତେବେ ଯାଇ ତୁମେ ଧାର୍ମିକ ହେବ । ଯିଏ ଜାଣିବାବାଲାକୁ ଜାଣିନେଲା ସିଏ ସବୁକୁ ଜାଣିନେଲା । ଦେଖିବାବାଲାକୁ ଦେଖ । ଦୃଶ୍ୟରୂପୀ ପରମାତ୍ମାଙ୍କୁ ଖୋଜିବାର ଅଭ୍ୟାସ ଛାଡ଼ । ଯିଏ ଭିତରୁ ଥାଇ ଦେଖୁଛନ୍ତି ଇନ୍ଦ୍ରିୟମାନଙ୍କ ଦୁଆରବାଟ ଦେଇ, ତାଙ୍କୁ ଜାଣ ଯେ ସିଏ କିଏ ? ସିଏ ହେଉଛି ଧାର୍ମିକ । ବାସ୍ତବିକ ଧର୍ମର ଆରମ୍ଭ ସେତେବେଳେ ହୋଇଥାଏ, ଯେତେବେଳେ ସମସ୍ତଙ୍କ ଜାଣିବାବାଲାକୁ ଜାଣିବାର ରାସ୍ତାକୁ ଆଦରି ନେଇଥାଅ । ପରମାତ୍ମାଙ୍କୁ ଦୃଶ୍ୟ ଭଳି ଦେଖିବାର ଅଭ୍ୟାସ ଛାଡ଼ । ବର୍ତ୍ତମାନ ତାଙ୍କୁ ଦ୍ରଷ୍ଟା ଭଳି ଜାଣ । ଦୃଶ୍ୟ ହେଉଛି 'ପର', ଦ୍ରଷ୍ଟା ହେଉଛନ୍ତି 'ସ୍ୱ' । ଦୃଶ୍ୟ ବାହାରେ ଅଛି, ଦ୍ରଷ୍ଟା ହେଉଛନ୍ତି ଭିତରର ପରମାତ୍ମା । ସିଏ ବାହ୍ୟବସ୍ତୁ ନୁହଁନ୍ତି, ସିଏ ଦୃଶ୍ୟ ନୁହଁନ୍ତି ।

ପରମାତ୍ମାଙ୍କୁ ବାହାରେ ଦେଖିବା ସେହିପରି, ଯେମିତି ଚନ୍ଦ୍ରକୁ ପାଣି ଭିତରେ ଦେଖିବା । ଦୃଶ୍ୟ ଭିତରେ ଯାହା ଦେଖାଯାଉଛି, ସିଏ ହେଉଛି ଦ୍ରଷ୍ଟାର ଛାୟା । ଧୀରପୁରୁଷ ଦୃଶ୍ୟକୁ ଦେଖନ୍ତି ନାହିଁ, ସିଏ ଅବିନାଶୀ ଦ୍ରଷ୍ଟାକୁ ଦେଖିଥାନ୍ତି । ଦେଖିବାବାଲାକୁ ଦେଖିନେଲା, ଜାଣିବାବାଲାକୁ ଜାଣିନେଲା ତ ସିଏ ସବୁ ଦେଖିନେଲା, ସବୁକୁ ଜାଣିନେଲା । ଦେହ ହେଉଛି ମନ୍ଦିର, ପରମାତ୍ମା ତା' ଭିତରେ ଅଛନ୍ତି । ଦ୍ରଷ୍ଟାକୁ ଦେଖିବା ପାଇଁ ଆଖି ବନ୍ଦ କରିବାକୁ ହେବ । ଦୃଶ୍ୟକୁ ଦେଖିବା ପାଇଁ ଆଖି ଖୋଲିବାକୁ ପଡ଼ିଥାଏ । ଦୃଶ୍ୟମାତ୍ରକେ ସବୁ ହେଉଛି ସ୍ୱପ୍ନ । କେବଳ ଦ୍ରଷ୍ଟା ହିଁ ସତ୍ୟ । ଆଜିପର୍ଯ୍ୟନ୍ତ ସବୁକୁ ଦେଖିଲ, କେବଳ ନିଜକୁ ହିଁ ଚିହ୍ନିପାରିଲ ନାହିଁ, ସିଏ ଅଜଣା ଭଳି ରହିଯାଇଥିଲା । ଅମୃତ ଅଛି ତୁମ ଭିତରେ, ତୁମେ ବାହାରେ ବିଷ ଖୋଜୁଛ, ତାକୁ ପିଇ ପିଇ ମରିଯାଉଛ । ପରମାତ୍ମା ଆଜି ପର୍ଯ୍ୟନ୍ତ ବାହାରେ କାହାକୁ କେବେହେଲେ ମିଳିନାହାନ୍ତି । ଯାହାଙ୍କୁ ମିଳିଗଲା, ତାଙ୍କୁ ଭିତରେ ଖୋଜିବାବାଲା, ଦେଖିବାବାଲା, ଜାଣିବାବାଲା, ଅନୁଭବ କରିବାବାଲା ରୂପରେ ମିଳିଗଲା ।

ହଠପୂର୍ବକ ଚିତ୍ତର ନିରୋଧ କରୁଥିବା ମୂଢ଼ର ଚିତ୍ତ କେବେହେଲେ ସ୍ଥିର ହୋଇପାରିବ ନାହିଁ । କିଛି କରିବା ହିଁ ବନ୍ଦକର । କରିବା ହିଁ ହେଉଛି ମନର ଭୋଜନ । କିଛି ନକରିବା ହେଉଛି ମନର ମୃତ୍ୟୁ । ମନ ନିଜର ମୃତ୍ୟୁ ଚାହିଁନଥାଏ, କିଛି ନା କିଛି କାମ କରିବାକୁ ଚାହିଁଥାଏ, ହୁଏତ ସିଏ ରାମ–ରାମ ଲେଖୁ ବା ରାମ–ରାମ ଜପୁ ।

ବିନା ସାଧନରେ, କେବଳ ବିଚାର ମାତ୍ରକେ ଯିଏ ମୁକ୍ତିର ଅନୁଭବ କରିନେଇଥାଏ, ସେଇ ଜୀବ ହେଉଛି ଧନ୍ୟ । ଯେପର୍ଯ୍ୟନ୍ତ ଧ୍ୟାନର ଅଭ୍ୟାସ ଯାଇନାହିଁ, ସେପର୍ଯ୍ୟନ୍ତ ତୁମର ଅବସ୍ଥା କଞ୍ଚା ଅଛି, ତୁମେ ସ୍ୱରୂପରେ ଅବସ୍ଥାନ କରିନାହଁ । ସାଧନର ଉଦ୍ଦେଶ୍ୟ ହେଉଛି ନିଜର ସହଜ ସ୍ୱରୂପକୁ, ନିଜର ସହଜ ସ୍ୱଭାବକୁ ପ୍ରାପ୍ତ କରିବା ଅର୍ଥାତ୍ ଜାଣିନେବା ଯେ ମୁଁ ହେଉଛି ସଚ୍ଚିଦାନନ୍ଦ, ଦ୍ରଷ୍ଟା, ସାକ୍ଷୀ, ନିତ୍ୟ, ମୁକ୍ତ, ଆତ୍ମା । ଭଲ ଭାବରେ ଶୁଣିନେଲ ତ ଘଟଣା ଘଟିଯାଇଥାଏ । ଶୁଣିନେଲା ପରେ ଆଉ କିଛି କରିବାକୁ ନଥାଏ । ଅଭ୍ୟାସ କେଉଁ କଥା ପାଇଁ କରିବ ଯେ – ମୁଁ ଅଛି, ମୁଁ ଅଛି ? ଏହା ହେଉଛି ପାଗଳପଣିଆ କେବଳ । ଶୁଣିନେଲେ ପରୀକ୍ଷିତ, ଶୁଣିନେଲେ ହନୁମାନ, ଶୁଣିନେଲେ ଅର୍ଜୁନ, କଥା ଶେଷ ହୋଇଗଲା । ସ୍ମରଣ ହୋଇଗଲା, କୌଣସି ଯାତ୍ରା ନାହିଁ । ତୁମେ ହିଁ ହେଉଛ ଲକ୍ଷ୍ୟ । ତୁମେ ହିଁ ହେଉଛ ସିଏ । ଧୀରେ ଧୀରେ ହେବ କହିଲେ କିଛି ହେବ ନାହିଁ । ଏଭଳି ଧାରଣା ଯଦି ସୃଷ୍ଟି କରିନେଲ, ତେବେ ତୁମେ ଠିକ୍ ଭାବରେ ଶୁଣି ହିଁ ନାହଁ । ଜାଣିନେଲ ଯେ ମୁଁ ଅଛି, ତେବେ କ'ଣ ଅଭ୍ୟାସ କରିବା ବାକୀ ରହିବ ? କିଛି ବି ଶେଷରେ ରହିଲା ନାହିଁ । ମା' କୋଳକୁ ପିଲା ଯେମିତି ଅଛି, ସେମିତି ଚାଲିଯାଇଥାଏ । ତୁମେ ଯେମିତି ହୋଇଥାଅ, ପରମାତ୍ମା ସେଇମିତି ଆପଣାର କରିନେଇଥାନ୍ତି । ଟିକିଏ ହେଲ ବି ଅନ୍ୟଥା ହେବାର ଆବଶ୍ୟକତା ନାହିଁ ।



# ।। ସାକ୍ଷୀ ରହିବା ହିଁ ଧ୍ୟାନ ।।

ଯେତେବେଳେ କ୍ରୋଧ ତା'ର ସ୍ୱଭାବ ଅନୁସାରେ ଉଠୁଛି ସେତେବେଳେ ତାକୁ ଦେଖିଚାଲ, କାମ ଭାବ ଜାଗିଯାଉଛି ତ ତାକୁ ଦେଖିଚାଲ । ସେମାନେ ନିଜର ସ୍ୱଭାବ ଅନୁସାରେ ଉଠିଛନ୍ତି ତୁମର ବିନା ନିମନ୍ତ୍ରଣରେ, ତେଣୁ ନିଜକୁ ନିଜେ ଚାଲିଯିବେ । ଏସବୁ ଯାହା କିଛି ମନରେ ହେଉଅଛି ତାକୁ ଦେଖିଚାଲ । ଏୟା ହେଉ, ଏୟା ନହେଉ, ଏମିତି ହେଉ, ଏମିତି ନହେଉ ଏହିଭଳି ତୁମେ କିଛି ହେଲେ ବି ନିର୍ଣ୍ଣୟ ନିଅ ନାହିଁ । ତୁମେ କୌଣସି ଆକାଂକ୍ଷା ରଖ ନାହିଁ । ତୁମେ କେବଳ ଦେଖିଚାଲ । ଯଦି କ୍ରୋଧ ଉଠୁଛି ତ ତା'ର ଅପମାନ କରନାହିଁ । ତୁମେ କେବଳ ତାକୁ ସ୍ୱୀକାର କରିନିଅ ଯେ ଠିକ୍ ଅଛି, ସ୍ୱାଭାବିକ ଅଛି । କାମ ଉଠୁଛି ତ କହ ଠିକ୍ ଅଛି, ସ୍ୱାଭାବିକ ଅଛି । ତୁମେ ଦ୍ରଷ୍ଟା ରୁହ, ଟିକିଏ ହେଲେ ବି ବିଚଳିତ ହୁଅନାହିଁ । ତୁମର ସାକ୍ଷୀ ଭାବ ଲାଗିରହିଥାଉ, ତୁମେ ଦ୍ୱନ୍ଦ୍ୱର ମଝିରେ ରହିଯାଅ, ସାକ୍ଷୀ ଭିତରେ ରହିଯାଅ । ଯାହା ହେଉଅଛି ତାକୁ ଦେଖିବାର ଅଭ୍ୟାସ ବଢ଼ାଅ । ଯେମିତି ଅଛି ତାକୁ ସେମିତି ଦେଖ । ତୁମେ ଅନ୍ୟଥା ନକରିବାକୁ ଚାହଁ ।

ସାକ୍ଷୀ ହେଉଛି ସକାଳ । କର୍ତ୍ତା–ଭୋକ୍ତା ହେଉଛି ଅନ୍ଧାର ରାତ୍ରି । ଯେ ପର୍ଯ୍ୟନ୍ତ ତୁମକୁ ନିଜ ଭିତରେ କର୍ତ୍ତା–ଭୋକ୍ତାପଣ ଲାଗୁଛି, ସେପର୍ଯ୍ୟନ୍ତ ତୁମେ ଅନ୍ଧାରୀଆ ରାତିରେ ଯାତ୍ରା କରୁଛ । ଯେତେବେଳେ ତୁମେ ସାକ୍ଷୀପଣିଆର ଅନୁଭବ କରିଥାଅ, ସେତେବେଳେ ତୁମେ ପୂର୍ଣ୍ଣ ଆଲୋକରେ ଅଛ । ପୁନଶ୍ଚ ତୁମର ଜୀବନ କେବଳ ଲୀଳା ମାତ୍ର ହୋଇଗଲା । ଯେତେବେଳେ ତୁମେ ମନରେ, ଶରୀରରେ, ପ୍ରାଣରେ, କୌଣସି ଦୃଶ୍ୟ ସହିତ ନିଜକୁ ଏକାକାର କରିନିଅ, ସେତେବେଳେ ତୁମର ମୃତ୍ୟୁ ହୁଏ । ଯଦି ମନର ସେପାରିରେ ରହି ଆମେ ନିଜକୁ ସାକ୍ଷୀ ଭାବରେ ଜାଣିନେବା, ତେବେ ଆମର ମୃତ୍ୟୁ କାହିଁ ? ଯେତେବେଳେ ତୁମେ ମନ ହିଁ ନୁହଁ, ସେତେବେଳେ ଯଦି ମନରେ ଯେଉଁ କ୍ରୋଧ ଉଠୁଛି ତୁମେ ତାହା କିପରି ହୋଇପାରିବ ? ସେତେବେଳେ ତୁମେ

ଏତିକି ହିଁ ବୁଝିଯାଅ ଯେ ମୋର ମନରେ କ୍ରୋଧ ଉଠୁଛି, ମୁଁ ତାକୁ ଦେଖୁଛି । ଭୋକ-ଶୋଷ ଲାଗିଲା ତ ମୁଁ ଭୋକିଲା-ଶୋଷିଲା ଏଭଳି ନ ଜାଣି, ଏଭଳି ଜାଣ ଯେ ପ୍ରାଣକୁ ଭୋକ-ଶୋଷ ଲାଗୁଛି ଏବଂ ମୁଁ ହେଉଛି ତାକୁ ଜାଣିବାବାଲା, ଜାଣୁଛି । ଯେତେବେଳେ ଏହିଭଳି କହୁଛ ସେତେବେଳେ ତୁମେ ନିଜକୁ ଶରୀର, ପ୍ରାଣ ଏବଂ ମନ ଠାରୁ ଅଲଗା, ତା'ର ଜ୍ଞାତା, ଦ୍ରଷ୍ଟା, ସାକ୍ଷୀ, ଆତ୍ମା ବୋଲି ଜାଣୁଛ ।

ନା ତୁମେ ଜୀବନ, ନା ତୁମେ ମୃତ୍ୟୁ । ଜୀବନ ଓ ମୃତ୍ୟୁ ଉଭୟଙ୍କ ମଝିରେ ତୁମେ ହେଉଛ ସାକ୍ଷୀ । ଯଦି ତୁମେ ଏଇ ଦୁଇଟି ମଧ୍ୟରୁ କୌଣସି ଗୋଟିଏକୁ ବାଛିନେଲ ତେବେ ଦ୍ୱିତୀୟକୁ ବିନା ଇଚ୍ଛାରେ ତୁମକୁ ଭୋଗିବାକୁ ପଡ଼ିବ । ଯଦି ସମ୍ମାନ-ଅପମାନ, ଲାଭ-ହାନି, ପ୍ରେମ-ଘୃଣା ଦୁଇଟି ଭିତରୁ କୌଣସି ଗୋଟିଏକୁ ବାଛିନେଲ ତେବେ ଦ୍ୱିତୀୟକୁ ସହଜରେ ଭୋଗିବାକୁ ହେବ । ଆସିବାକୁ ହେବ ନିର୍ଦ୍ୱନ୍ଦ୍ୱ ଉପରକୁ । ଯେଉଁଠି ତୁମକୁ ଦ୍ୱନ୍ଦ୍ୱ ଦେଖାଯିବ, ସେଇଠି ତୁମେ ଚୟନ କରନାହିଁ, ଦୁହିଁଙ୍କର ସାକ୍ଷୀ ହୋଇଯାଅ । ତୁମେ ଆଜି ପର୍ଯ୍ୟନ୍ତ ଯାହା ନିଜକୁ ଅନ୍ୟର ଆଖିରେ ଚିହ୍ନିଥିଲ ଭଲ ନା ମନ୍ଦ, କାମୀ ନା କ୍ରୋଧୀ, ତାହା ତୁମେ ନୁହଁ । ଭିତରେ କେହି ଏକ ଅଛୁଆଁ, ଅସଙ୍ଗ, ଏଇ ଦ୍ୱନ୍ଦ୍ୱ ଠାରୁ ଦୂରରେ ଯେଉଁ ଦ୍ରଷ୍ଟା ଅଛି, ସିଏ ହେଉଛ ତୁମେ ।

ଯେଉଁ ଦିନ ତୁମ ମନରେ ଅନ୍ୟଠାରୁ ମିଳୁଥିବା ସମ୍ମାନ-ଅପମାନର, ଭଲ-ମନ୍ଦ ହେବାର କୌଣସି ମୂଲ୍ୟ ନରହିବ, ସେଇଦିନ ତୁମେ ନିଜକୁ ଜାଣିଲ, ସେହିଦିନ ତୁମେ ସାକ୍ଷୀରେ ଅବସ୍ଥାନ କରିଲ । ନିଜ ସମ୍ବନ୍ଧରେ ଶୁଣି ପରିଚୟ କରିନେବା, ଏହା ନିଜକୁ ଜାଣିବା ନୁହେଁ ।

ସାଧାରଣତଃ ତୁମେ ବାସି ଭୋଜନ କରୁଛ । ମୋଠାରୁ ବା ବୁଦ୍ଧ, ଓଶୋ, କବୀର, ଦାଦୁ, ନାନକ ଇତ୍ୟାଦିଙ୍କ ବଚନ ପଢ଼ି, ଶୁଣି ନିଜକୁ ସେହିପରି ମାନି ନେଇଛ । ଏଇ ଅନୁଭବ, ଏଇ ବଚନ ହେଉଛି ସେମାନଙ୍କର, ତୁମର ନୁହେଁ । ''ଆମେ ହେଉଛୁ ଆତ୍ମା'' ଏସବୁ ତ ତାଙ୍କ ଠାରୁ ଶୁଣି ଦୋହରାଉଛ । ତୁମେ ତୁମର ବୋଲି କେତେବେଳେ କହିବ ?

ତୁମେ ନିଜକୁ ଜାଣିନିଅ ଯେ ତୁମେ କିଏ ? ତୁମେ କେବଳ ନିଜକୁ ସାକ୍ଷୀ ବୋଲି ଜାଣ । ତା'ପରେ ଯାହା ହେବ ତାହା ଠିକ୍ ହେବ । ନିଜକୁ ନଜାଣିବା ପୂର୍ବରୁ ଯାହା ବି ହେବ ତାହା ବନ୍ଧନ ଭଳି ହେବ । ସାକ୍ଷୀ ଭାବରେ ଜାଗିଗଲେ ସବୁ ସମସ୍ୟାଗୁଡ଼ିକର ସମାଧାନ ହୋଇଯାଇଥାଏ ।

ସାକ୍ଷୀ ଭାବର ଉଦ୍ଦେଶ୍ୟ ହେଉଛି ତୁମ ମନରେ ଯେଉଁ କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦି ବୃତ୍ତିଗୁଡ଼ିକ ଉଠିଲା ଏବଂ ଯଦି ତୁମେ ତାକୁ ଖରାପ କହିଦେଲ ଯେ ଏଇ ଭାବ ତ ଉଠିବା ଉଚିତ୍ ନୁହେଁ, ଏଇ ଭାବ ତ ଠିକ୍ ନୁହେଁ, ତେବେ ତୁମେ ସାକ୍ଷୀ ହୋଇ ରହିଲ ନାହିଁ ବରଂ ସେଇ ବୃତ୍ତିଗୁଡ଼ିକର କର୍ତ୍ତା ହୋଇ ବସିଗଲ । ସାକ୍ଷୀ ଭାବର ଉଦ୍ଦେଶ୍ୟ ହେଉଛି ଯାହା ହେଲା, ଯେମତି ହେଲା, ଠିକ୍ ହିଁ ହେଲା କାହିଁକି ନା ତୁମେ ହେଉଛ ଦ୍ରଷ୍ଟା । କର୍ତ୍ତା ତ ହେଉଛନ୍ତି ଏକ ମାତ୍ର

ପରମାତ୍ମା । ତାଙ୍କୁ ତୁମେ ଭଲ କୁହନାହିଁ କି ଖରାପ କୁହନାହିଁ । ଯଦି ଭଲ-ମନ୍ଦର ନିର୍ଣ୍ଣୟ ତୁମେ ନେଇଗଲ, ତେବେ ତୁମେ ସେଇ ବୃତ୍ତିଗୁଡ଼ିକ ସହିତ ଯୋଡ଼ି ହୋଇଗଲ, କର୍ତ୍ତା ବନିଗଲ, ଆଉ ତୁମେ ସାକ୍ଷୀ ହୋଇ ରହିଲ ନାହିଁ । ତୁମେ କେବଳ ଦେଖିଚାଲ । କୌଣସି ବି ଦୃଶ୍ୟ, କର୍ମ ବା ବୃତ୍ତି ସହିତ ଯୋଡ଼ି ହୋଇଯାଅ ନାହିଁ, ନା ପ୍ରେମ, ନା ଘୃଣା, ନା ରାଗ, ନା ଦ୍ୱେଷ, ନା ପକ୍ଷ, ନା ବିପକ୍ଷ, ନା ଭଲ, ନା ମନ୍ଦ । ବୃତ୍ତିଗୁଡ଼ିକର ଉଠୁଥିବା ଓ ଶାନ୍ତ ହେଉଥିବାକୁ ଦେଖିବା ହିଁ ହେଉଛି ସାକ୍ଷୀ ଭାବର ଜାଗରଣ, ଏହାକୁ ହିଁ ସହଜ ଧ୍ୟାନ, ସହଜ ସମାଧି, ସହଜାବସ୍ଥା କୁହାଯାଇଥାଏ ।

ଆତ୍ମ ସାକ୍ଷାତ୍କାର କୌଣସି ତ୍ୟାଗ ବା ଭୋଗ ନୁହେଁ । ଆତ୍ମ ଜାଗରଣର ଉଦ୍ଦେଶ୍ୟ, ସାକ୍ଷୀଭାବର ଉଦ୍ଦେଶ୍ୟ, ଦ୍ରଷ୍ଟାଭାବର ଉଦ୍ଦେଶ୍ୟ ହେଉଛି ପର ଠାରୁ , ଦୃଶ୍ୟ ଠାରୁ, ଅନାତ୍ମା ଠାରୁ ଫେରିଆସି ସ୍ୱ ଆଡ଼କୁ ଚାଲି ଆସିବା । ଯେମିତି ମନରେ କୌଣସି ଅନୁକୂଳ ବିଷୟ ଦ୍ୱାରା ସୁଖ ପ୍ରକଟ ହେଲା ଏବଂ ତୁମେ ମାନିନେଲ ଯେ ମୁଁ ହେଉଛି ସୁଖୀ, କୌଣସି ପ୍ରତିକୂଳ କାରଣ ଯୋଗୁ ମନରେ ଦୁଃଖ ଦେଖାଦେଲା ଏବଂ ତୁମେ ମାନିନେଲ ଯେ ମୁଁ ହେଉଛି ଦୁଃଖୀ, ଅର୍ଥାତ୍ ତୁମେ ଅନ୍ତଃକରଣର ଧର୍ମଗୁଡ଼ିକର ସାକ୍ଷୀ ହୋଇ ରହିଲ ନାହିଁ ବରଂ କର୍ତ୍ତା ହୋଇଗଲ । ଯେତେବେଳେ କି ସିଦ୍ଧାନ୍ତ ହେଉଛି ଏୟା ଯେ ମୁଁ ଅନ୍ତଃକରଣର **"ମନୋବୁଦ୍ଧିଽହଂକାର ଚିତ୍ତାନି ନାହଂ"** ର କୌଣସି ବି ବୃତ୍ତି ନୁହେଁ ଏବଂ ଏହିଭଳି ହୃଦୟ ଭିତରେ ଜାଣିଯିବା ହିଁ ସାକ୍ଷୀ ଭାବର ଜାଗରଣ ।

ଯେତିକି ଯେତିକି ତୁମେ ସାକ୍ଷୀ ହୋଇଯାଅ, ସେତିକି ଖରାପ ଗୁଣ ବିଦା ହୋଇଯାଏ । ଖରାପ ହେବା ପାଇଁ ସାକ୍ଷୀର ଉପସ୍ଥିତି ବାଧା ସୃଷ୍ଟି କରିଥାଏ । ଭଲ ହେବା ପାଇଁ ବି ସାକ୍ଷୀର ଉପସ୍ଥିତି ହେଉଛି ପ୍ରତିବନ୍ଧକ । ତୁମେ ତ ସେତେବେଳେ ସାକ୍ଷୀ ହେଲ, ଯେତେବେଳେ ଭଲ-ମନ୍ଦ ଉଭୟର ଅହଂକାର ଠାରୁ ମୁକ୍ତ ହୋଇଗଲ ।

ସାକ୍ଷୀର ଧାରଣା କହିଥାଏ ନା ତୁମେ ଧରି ପକାଅ, ନା ତୁମେ ଛାଡ଼ି ଦିଅ, ମାତ୍ର ଦେଖି ଚାଲିଥାଅ । ତୁମେ କେବଳ ଜାଗ୍ରତ ହୋଇ ଦେଖିଚାଲ । ସାକ୍ଷୀ ଭାବରେ ଯାହା ହେବ ସେସବୁ ହେଉଛି ଠିକ୍, କର୍ତ୍ତାଭାବରେ ଯାହା ବି ହେବ ସେସବୁ ହେଉଛି ଭୁଲ୍ । ସାକ୍ଷୀ ଭାବ ଦ୍ୱାରା ଯାହା ହେବ ତାହା ହେଉଛି ଶୁଭ, ତାହା ହିଁ ମୁକ୍ତି । କର୍ତ୍ତା ଭାବ ଦ୍ୱାରା ଯାହା ହେବ ତାହା ହେଉଛି ଅଶୁଭ, ତାହା ହିଁ ବନ୍ଧନ ।

ସାକ୍ଷୀର ଅର୍ଥ ହେଉଛି ନାଁ ତୁମେ କର୍ତ୍ତା-ଭୋକ୍ତା ହୋଇରହିଲ, ନା ଚିନ୍ତକ । ଯଦି ତୁମେ କର୍ତ୍ତା ନୁହେଁ ତେବେ ଶରୀର ଠାରୁ ପୃଥକ ହୋଇଗଲ । ଚିନ୍ତକ ନୁହଁ ତ ତୁମେ ମନ ଠାରୁ ପୃଥକ ହୋଇଗଲ । ଏଇ ଶରୀର ଏବଂ ମନ ଠାରୁ ଅଲଗା ହେଉ ହେଉ ତୁମେ ଆତ୍ମାର ଗଭୀରତା

ଭିତରକୁ, ପଛକୁ ଚାଲିଗଲ, ସମସ୍ତଙ୍କ ପଛକୁ, ଯାହା ପଛରେ ଆଉ କେହି ନାହିଁ । ତାକୁ ହିଁ ବେଦ ସାକ୍ଷୀ ବୋଲି କହିଥାଏ । ସେଇ ସାକ୍ଷୀ ହିଁ ହେଉଛି ବ୍ରହ୍ମ, ସିଏ ହିଁ ତୁମେ । ସାକ୍ଷୀର ଅର୍ଥ ହେଉଛି ମନକୁ ଲୁଟିନେବାର କଳା, ମନକୁ ନଷ୍ଟ କରିଦେବାର କଳା ।

ସାକ୍ଷୀ ଭାବରେ କୌଣସି କର୍ମର କିଛି ମୂଲ୍ୟ ନଥାଏ । ଯଦି ସାକ୍ଷୀ ଭାବରେ ଥାଇ କେହି ମଦ ବି ପିଇନିଏ ତେବେ କୌଣସି ପାର୍ଥକ୍ୟ ଦେଖାଦେଇନଥାଏ । ମୁଁ ତୁମକୁ ମଦ ପିଇବା ପାଇଁ କହୁନାହିଁ । ମାତ୍ର ସାକ୍ଷୀ ଭାବ ଉପରେ ଧ୍ୟାନରଖ । ନହେଲେ ତୁମେ ଭାବିନେବ ଯେ ମୁଁ ତ ସାକ୍ଷୀ ହୋଇଗଲି, ପିଇଦିଏ ମଦ । ତେଣୁ ପିଇବାର, ଭୋଗ କରିବାର ଯେପର୍ଯ୍ୟନ୍ତ କାମନା ରହିଛି, ସେପର୍ଯ୍ୟନ୍ତ ତୁମେ ସାକ୍ଷୀ ହୋଇନାହଁ ।

ସାକ୍ଷୀର ଏତିକି ମାତ୍ର ଅର୍ଥ ହୋଇଥାଏ ଯେ ଯାହା ହେଉଛି, ତାକୁ ଆମେ ହେବାକୁ ଦେଇଥାଉ ଏବଂ ତାକୁ ଦେଖିଥାଉ । ଆମେ ହେଉଛୁ ଦେଖିବାବାଲା ଦ୍ରଷ୍ଟା, କର୍ତ୍ତା ନୁହେଁ । ଯେପର୍ଯ୍ୟନ୍ତ ତୁମେ  ବସ୍ତୁଗୁଡ଼ିକ ପାଇଁ ବାସନା ପୋଷଣ କରିଚାଲିଛ, ସେପର୍ଯ୍ୟନ୍ତ ତୁମେ କର୍ତ୍ତା ହୋଇ ରହିଥିବ । ଯେତେବେଳେ ତୁମେ ପରମାତ୍ମା ଭାବରେ ଉତ୍ତରିବାକୁ ଆରମ୍ଭ କରିବ, ସେତେବେଳେ ତୁମେ ସାକ୍ଷୀ ହେବାରେ ଲାଗିବ ।

ସାକ୍ଷୀ ହେଉଛି ସୂତ୍ର । ତୁମେ ସମସ୍ୟାଗୁଡ଼ିକ ପଛରେ ପଡ଼ିଯାଅନାହିଁ, ସମସ୍ୟା ଗୁଡ଼ିକୁ ସମାଧାନ କରିବା ଚକ୍ର ଭିତରେ ପଡ଼ି ସମୟ ନଷ୍ଟ କରନାହିଁ । ତୁମେ ସମସ୍ୟାଗୁଡ଼ିକ ପଛରେ ଛିଡ଼ା ହୋଇଯାଅ, ସମସ୍ୟାଗୁଡ଼ିକ ବଳେ ଖସପଡ଼ିବ । ସମସ୍ତ ସମସ୍ୟାଗୁଡ଼ିକ ମଝିରୁ ଅହଂକାରର ସୂତ୍ରକୁ ଟାଣିନିଅ । ଅହଂକାରର ସୂତ୍ରକୁ ଟାଣି ନେଉ ନେଉ ସବୁ ସମସ୍ୟାରୂପୀ ପୁତୁଳା ନଷ୍ଟ ହୋଇଯିବ । ଏଇ ଅହଂକାର ହେଉଛି ଅନେକ ସମସ୍ୟାଗୁଡ଼ିକ ମଝିରେ ରହିଥିବା ଏକମାତ୍ର ସୂତ୍ର । ମୁଁ ହେଉଛି ଦେହ, ମୁଁ ହେଉଛି ମନ ଏଇ ମୂଳ ମିଥ୍ୟାର ମାନ୍ୟତା ଯୋଗୁ ହଜାର ହଜାର ମିଥ୍ୟା ଧାଡ଼ି ବାନ୍ଧି ଛିଡ଼ା ହୋଇଯାଏ । ତୁମେ ଅନେକ ସହିତ ଲଢ଼ନାହିଁ, ଜିତିପାରିବ ନାହିଁ । ତୁମେ କେବଳ ଦେହାଭିମାନକୁ ଟାଣିନିଅ, ବାସ୍ ମୁଁ ହେଉଛି ସାକ୍ଷୀ, ମୁଁ ହେଉଛି ଦ୍ରଷ୍ଟା ଏଇ ନିଶ୍ଚୟ କରିନିଅ, ଏତିକିରେ ହିଁ ତୁମେ କୃତାର୍ଥ ହୋଇଯିବ । କିଛି କରିଦେଇ ଆଜି ପର୍ଯ୍ୟନ୍ତ କେହି କେବେହେଲେ କୃତାର୍ଥ ହୋଇପାରିନାହିଁ । **'ଏକ ହୀ ସାଧେ ସବ ସଧେ, ସବ ସାଧେ ସବ ଜାୟ'** । ମୂଳ ହେଉଛି ଅହଂକାର, ତୁମେ ସିଧା ସଳଖ ମୂଳକୁ କାଟିଦିଅ । ଏହିଭଳି ସ୍ଥିତିରେ ଥିବା ପୁରୁଷ ଦେଖି, ଶୁଣି, ଶୁଂଘି, ଖାଇ ସୁଖ ପୂର୍ବକ ରହିଥାଏ, ପୁଣି ତା' ପାଇଁ କିଛି ଛାଡ଼ିଦେବାର, କିଛି ଧରିପକାଇବାର ଝଂଝଟ ରହିନଥାଏ । ଯାହା ମିଳିଥାଏ, ସେ ତାକୁ ସ୍ୱୀକାର କରନିଏ ।

ଯାହା ହୁଏ, ତାକୁ ବି ସ୍ୱୀକାର କରିନିଏ । ଯାହାହୁଏ ହେବାକୁ ଦେଇଥାଏ । ତାଙ୍କ ଜୀବନ ସହଜ ହୋଇଯାଇଥାଏ । ଯେଉଁଦିନ ତୁମେ ସେଇମିତି ହୋଇଯିବ ସେତେବେଳେ ତୁମେ କାହା ପାଖ ଦେଇ ଚାଲିଗଲେ ବି ତାକୁ ଜଣା ବି ପଡ଼ିବ ନାହିଁ । ସହଜ ମଣିଷକୁ ବାହାରୁ ଦେଖିଲେ ଚିହ୍ନି ହେବ ନାହିଁ ।

ତୁମେ ହେଉଛ ଦ୍ରଷ୍ଟା, ସାକ୍ଷୀ, ନିରାକାର, ଅଶରୀରୀ ଆତ୍ମା । ତେବେ କ'ଣ ତୁମେ ଆଜି ପର୍ଯ୍ୟନ୍ତ ଚାଲିଛ ? ଶରୀର ଚାଲିଥାଏ, ମନ ଭାବିଥାଏ, ବାଣୀ କହିଥାଏ, ପ୍ରାଣ ଖାଇଥାଏ ତୁମେ ହେଉଛ ଏସବୁର ସେପାରିରେ, ସବୁ କ୍ରିୟାଗୁଡ଼ିକ ପଛରେ ଥିବା କେବଳ ସାକ୍ଷୀ ସ୍ୱରୂପ ।

ତୁମ ଭିତରେ ତାକୁ ଖୋଜ, ଯାହା ସେପାରିକୁ ତୁମେ ଯାଇପାରିବ ନାହିଁ । ପଦାର୍ଥର ସେପାରିରେ ଆଲୋକ ମିଳିଯାଇଥାଏ, ଆଲୋକ ସେପାରିରେ ନେତ୍ର ମିଳିଯାଇଥାଏ, ନେତ୍ର ସେପାରିରେ ମନ ମିଳିଯାଇଥାଏ, ମନ ସେପାରିରେ ବୁଦ୍ଧି ମିଳିଯାଇଥାଏ, ବୁଦ୍ଧି ସେପାଖରେ ଜୀବ ମିଳିଯାଇଥାଏ ଏବଂ ଜୀବ ସେପାଖରେ ସାକ୍ଷୀ ମିଳିଯାଇଥାଏ । ବର୍ତ୍ତମାନ ସାକ୍ଷୀ ସେପାରିକୁ ଯିବା ପାଇଁ ଆଉ କିଛି ବାକୀ ରହିନଥାଏ, କିଛି ଉପାୟ ନଥାଏ । ବାସ୍, ଏସବୁର ଯିଏ ସାକ୍ଷୀ, ସେଇ ସାକ୍ଷୀର ଅନ୍ୟ କେହି ଦ୍ରଷ୍ଟା, ସାକ୍ଷୀ ନାହିଁ ଏବଂ ସେଇ ତୁମେ ହେଉଛ ସାକ୍ଷୀ ଆତ୍ମା ।

ତୁମେ ଆଖି ବନ୍ଦକର, ଶରୀରକୁ ଦେଖିପାରିବ, ହାତ ହଲାଅ, ଆଙ୍ଗୁଠି ଉଠାଅ ସେଗୁଡ଼ିକୁ ଦେଖିପାରିବ, ଗଣିପାରିବ । ମୁଣ୍ଡ, ପେଟ, ପାଦ, କାନ, ଦାନ୍ତ ଇତ୍ୟାଦିରେ ଯନ୍ତ୍ରଣା ହେଉଛି, ତୁମେ ଜାଣିପାରିବ । ତୁମେ ମନର ବିଚାରକୁ ଦେଖି ନେଇଥାଅ, ତୁମେ ଏଇସବୁ ଇନ୍ଦ୍ରିୟଗୁଡ଼ିକର, ଯନ୍ତ୍ରଣା, ସୁଖ-ଦୁଃଖ, ଭଲ-ମନ୍ଦ, ସୁନ୍ଦର-ଅସୁନ୍ଦର, ଖଟା-ମିଠା, ପିତା, ଲୁଣିଆଁ, ଗରମ-ଶୀତଳର ପ୍ରଭେଦକୁ ଜାଣିନେଇଥାଅ, ତୁମେ ହେଉଛ ଏଗୁଡ଼ିକୁ ଦେଖିବାବାଲା, ସାକ୍ଷୀ । ବର୍ତ୍ତମାନ ତୁମେ ସେଇ ସର୍ବସାକ୍ଷୀ ସ୍ୱୟଂଙ୍କ ପଛକୁ ଯାଇପାରିବ ନାହିଁ, କାରଣ ସାକ୍ଷୀକୁ ବି ଦେଖିବ ତ ତୁମେ ସାକ୍ଷୀ ହୋଇ ରହିବ । ଶରୀରକୁ ଦେଖିନେଲ ତ ତୁମେ ଶରୀର ହୋଇ ରହିଲ ନାହିଁ, ମନକୁ ଦେଖିନେଲ ତ ତୁମେ ମନ ହୋଇ ରହିଲ ନାହିଁ । ସେହିପରି ତୁମେ ସାକ୍ଷୀକୁ ଦେଖିପାରିବେ ନାହିଁ, ସାକ୍ଷୀ ଠାରୁ ଦୂରକୁ ଯାଇପାରିବ ନାହିଁ । ପ୍ରତ୍ୟେକ ଅବସ୍ଥାରେ ସାକ୍ଷୀ ହୋଇ ରହିଥାଅ ଏହାହିଁ ହେଉଛି ତୁମର ସାକ୍ଷୀଭାବ । ଏହାହିଁ ହେଉଛି ସମସ୍ତ ବୁଦ୍ଧ ପୁରୁଷମାନଙ୍କର ଚିନ୍ତନ ମାଳାର ସୂତ୍ର । ଏଇ ସାକ୍ଷୀ ଭାବର ସୂତ୍ର ଯାହାଙ୍କ ହାତକୁ ଆସିଗଲା, ତାଙ୍କ ପାଇଁ ସମସ୍ତ ବିରୋଧ ଶୂନ୍ୟ ହୋଇଯାଇଥାଏ । ସାକ୍ଷୀ ଭାବରେ ଶୁଭ-ଅଶୁଭ ଉଭୟ ଶାନ୍ତ ହୋଇଯାଆନ୍ତି, ତୁମେ ହେଉଛ

ଦୁହିଁଙ୍କ ସେପାରିରେ, ତୁମେ ହେଉଛ ଦୁହିଁଙ୍କୁ ଦେଖିବାବାଲା । ସାକ୍ଷୀରେ ''ତୁ ଓ ମୁଁ'' ବି ବଞ୍ଚିବ ନାହିଁ, କାରଣ ତୁମେ ହେଉଛ ''ତୁ ଓ ମୁଁ'' ର ବି ସାକ୍ଷୀ ।

ବର୍ତ୍ତମାନ ଦେଖ, ମୁଁ କହୁଛି ଏବଂ ତୁମେ ଶୁଣୁଛ । ଯଦି ତୁମେ ହେଉଛ ସାକ୍ଷୀ, ତେବେ ତୁମେ କହିବାବାଲା ମୋତେ ଏବଂ ଶୁଣିବା ବାଲା ତୁମେ, ଆମ ଦୁହିଁଙ୍କ ସେପାରିକୁ ଚାଲିଗଲ । ତୁମେ ନିଜର ଶୁଣିବାର ବି ସାକ୍ଷୀ ହୋଇଯିବ, ଯେମିତି ତୁମେ ହେଉଛ ମୋର କହିବାର ସାକ୍ଷୀ । ସେହିପରି ତୁମେ ହେଉଛ ତୁମର ଶୁଣିବାବାଲାର ବି ସାକ୍ଷୀ । କହିବା ଓ ଶୁଣିବା ଏ ଦୁହିଁଙ୍କ ଉପରେ ଯିଏ ଅଛି, ସିଏ ହେଉଛି ସାକ୍ଷୀ, ସିଏ ହେଉଛ ତୁମେ ।

ସାକ୍ଷୀ ହେଉଛି ସମସ୍ତ ବେଦ, ଶାସ୍ତ୍ରଗୁଡ଼ିକର ସାର । ସାକ୍ଷୀ ପାଇଁ ଅଲଗା-ଅଲଗା ଶବ୍ଦଗୁଡ଼ିକର ପ୍ରୟୋଗ କରାଯାଇଛି, ଯଥା- କେଉଁଠି ଧ୍ୟାନ, କେଉଁଠି ସ୍ମରଣ, କେଉଁଠି ସ୍ମୃତି, କେଉଁଠି ମନେରଖିବା, କେଉଁଠି ସମାଧି, କେଉଁଠି ନିର୍ବାଣ, କେଉଁଠି ବା ମୋକ୍ଷ । ଭାବ ହେଉଛି କେବଳ ଏୟା ଯେ ତୁମେ ଦୃଶ୍ୟ ଠାରୁ ଅଲଗା ହୋଇଯାଅ, ଦୂରେଇ ଯାଅ । ପଛେଇ ପଛେଇ ଚାଲିଯାଅ ଏବଂ ଦ୍ରଷ୍ଟା ଭିତରେ ବୁଡ଼ିଯାଅ । ଯାହା ଦେଖାଯିବ, ଜାଣିରଖ, ସେ ତୁମ ଠାରୁ ଅଲଗା ଏବଂ ଯିଏ ଦେଖିବାବାଲା ତାକୁ ଜାଣିରଖ ଯେ ସିଏ ହେଉଛି ମୁଁ । ଧୀରେ ଧୀରେ ସମସ୍ତ ଦୃଶ୍ୟ ସମାପ୍ତ ହୋଇଯିବ, ଯେତେବେଳେ ଦେଖିବାକୁ କିଛି ବାକୀ ରହିବ ନାହିଁ, ସେଇଠି ଦ୍ରଷ୍ଟା ହିଁ ରହିବ, ସାକ୍ଷୀ ହିଁ ତିଷ୍ଠି ରହିବ ।

ଯେଉଁଆଡ଼େ ବି ଯାଅ, ଯାହା ବି ଦେଖ, ଯାହା ବି ହୋଇଥାଅ ତୁମର ସ୍ୱଭାବ ସାକ୍ଷୀ ହୋଇ ରହିଥାଉ । ବାସ୍, ହାତକୁ ଆସିଗଲେ ପରମାତ୍ମା, କାରଣ ସିଏ ତ ହେଉଛନ୍ତି ସାକ୍ଷୀ **'ସର୍ବ ଧୀ ସାକ୍ଷୀ ଭୂତମ୍'** । ପ୍ରଜ୍ଞାକୁ ପ୍ରଖର କର । ସାକ୍ଷୀ ହୁଅ, ଯାହା ବି କରୁଛ ସାକ୍ଷୀ ହୋଇ ଦେଖ, ଶ୍ୱାସ ବି ଚାଲୁଛି ତ ଦେଖୁଥିବା ଅବସ୍ଥାରେ ଚାଲୁ, ହାତ ଉଠୁ ବା ପାଦ ଉଠୁ ତ ଦେଖୁଥାଇ ହଲଚଲ ହେଉଥାଉ । ସାକ୍ଷୀକୁ ଯିଏ ସାଧିପାରିଲା ତା'ର ତୃଷ୍ଣା ମେଣ୍ଟିଗଲା ।

ସାକ୍ଷୀ ଭାବ ହେଉଛି ଏଭଳି ସାଧନା, ଯାହା ମନର ସାଧନା ନୁହେଁ । କୌଣସି କ୍ରିୟା ଦ୍ୱାରା, କୌଣସି ସାଧନା ଦ୍ୱାରା ଆମେ ମନର ସେପାରିକୁ ଯାଇପାରିବା ନାହିଁ । ପରମାତ୍ମାଙ୍କ ଠାରେ ପ୍ରତିଷ୍ଠିତ ହୋଇପାରିବା ନାହିଁ । ସାକ୍ଷୀଭାବ ହିଁ ହେଉଛି ପରମାତ୍ମାଙ୍କ ସହିତ ଏକତ୍ୱତାର ବୋଧ କରାଇବା ପାଇଁ ସରଳ ସାଧନା ।

ଆମେ ପ୍ରତିଦିନ ଏୟା ଦେଖିଥାଉ ଯେ ରାତିରେ ସ୍ୱପ୍ନ ହେଲା, ପ୍ରାତଃକାଳରେ ତାହାର ସ୍ମରଣ ରହିଥାଏ, ସ୍ୱପ୍ନ ମିଥ୍ୟା ହୋଇଯାଇଥାଏ । କିନ୍ତୁ ତାହାର ସ୍ମରଣ କର୍ତ୍ତା ହେଉଛି ସତ୍ୟ । ସ୍ୱପ୍ନ ବି ଚାଲିଯାଇଥାଏ, ସୁଷୁପ୍ତି ଆସିଯାଇଥାଏ । ସୁଷୁପ୍ତି ବି ଜାଗ୍ରତ ହେଲା ପରେ ଚାଲିଯାଇଥାଏ । ମୂର୍ଚ୍ଛା ହୋଇଥାଏ ସିଏ ବି ଭାଙ୍ଗିଯାଇଥାଏ, ଧ୍ୟାନ ଲାଗିଥାଏ ସିଏ ବି ଚାଲିଯାଏ, ସମାଧି ହୋଇଥାଏ ସିଏ ବି ପୁଣି ଚାଲିଯାଇଥାଏ କିନ୍ତୁ ସବୁ ପରିବର୍ତ୍ତନକୁ ଦେଖିବାବାଲା 'ଦର୍ଶନ' ସବୁ ସମୟରେ ତିଷ୍ଠି ରହିଥାଏ । ଜାଣିବା, ଦେଖିବାବାଲା ଦର୍ଶନ ହେଉଛି ନିତ୍ୟ, ସିଏ ହେଉଛି ସାକ୍ଷୀ, ସିଏ ହିଁ ତୁମେ ।

ଶୈଶବ ଆସିଲା-ଗଲା, କିଶୋର ଅବସ୍ଥା ଆସିଲା-ଗଲା, ଯୌବନ ଆସିଲା ଗଲା, ପ୍ରୌଢ଼ାବସ୍ଥା ଆସିଲା-ଗଲା, ବୃଦ୍ଧାବସ୍ଥା ଆସିଲା-ଗଲା, ରୋଗ ଆସିଲା-ଗଲା, ଗରୀବ ଅବସ୍ଥା ଆସିଲା-ଗଲା, ମନେ ରହିଲା- ଭୁଲିଗଲେ, ଥଣ୍ଡା ଆସିଲା-ଗଲା, ଗରମ ଆସିଲା-ଗଲା, ବର୍ଷା ଆସିଲା-ଗଲା କିନ୍ତୁ ଦର୍ଶନର କ୍ଷମତା, ଦେଖିବା ଜାଣିବାର ଆମର ଯେଉଁ କ୍ଷମତା ତାହା ସବୁ ପରିସ୍ଥିତିରେ, ଅବସ୍ଥାରେ, କାଳରେ, କ୍ରିୟାଗୁଡ଼ିକରେ ସେଇମିତି ଲାଗିରହିଥାଏ । ସାକ୍ଷୀ ଭାବ ଆମର ସ୍ୱଭାବ ସର୍ବଦା ତିଷ୍ଠି ରହିଥାଏ । ଇନ୍ଦ୍ରିୟମାନେ ନିଜ-ନିଜର ବିଷୟ ଗ୍ରହଣ କରି କରି ଥକି ଯାଇଥାନ୍ତି । ଶୁଣିବା, ଛୁଇଁବା, ଦେଖିବା, ଚାଖିବା, ଶୁଂଘିବା ଇତ୍ୟାଦି କ୍ରିୟାଗୁଡ଼ିକୁ ଇନ୍ଦ୍ରିୟମାନେ ସର୍ବଦା କରିପାରିବେ ନାହିଁ କିନ୍ତୁ ତୁମର ଦର୍ଶନ, ଜ୍ଞାନ, ଚେତନ ସ୍ୱଭାବର କେବେହେଲେ ଅଭାବ ହେବନାହିଁ ବା ସେଥିରେ କ୍ଳାନ୍ତି ଆସୁଥିବାର ଦେଖିପାରିବ ନାହିଁ । ଦେଖିବା, ଜାଣିବାର କ୍ଷମତା ଆମ ଭିତରେ ଅବିଚ୍ଛିନ୍ନ ଭାବରେ ସର୍ବଦା ତିଷ୍ଠି ରହିଥାଏ ।

ରାତିରେ ଶୋଇସାରି ଯେତେବେଳେ ତୁମେ ଉଠିଥାଅ, ସେତେବେଳେ ସେଇଠି ଜୀବକୁ ଯେଉଁ ଗୋଟିଏ ନିର୍ବିଷୟ ସୁଖ ଓ ଅଜ୍ଞାନତାର ଅନୁଭବ ହେଉଥିଲା, ତାକୁ ବି କେହି ଜଣେ ପଛରୁ ଅବଶ୍ୟ ଦେଖୁଥିଲା । ସେଥିପାଇଁ ତ ସକାଳୁ ଉଠି ସେଇ ଜୀବ ଦ୍ୱାରା ମନ, ବାଣୀ ମାଧ୍ୟମରେ ଏହା କୁହାଯାଇଥାଏ ଯେ ରାତିରେ ମୁଁ ଗଭୀର ନିଦ୍ରାର ଅନୁଭବ କଲି, ବା ରାତିରେ ମୋତେ ଏକ ଭଲ ମିଠା ସୁଖ ଭଳି ନିଦ ଆସିଲା ଓ ମୋତେ କିଛି ଜଣାପଡ଼ିଲା ନାହିଁ । ଏଇ ଗଭୀର ନିଦ୍ରା ରୂପୀ ସୁଷୁପ୍ତିର ବି ପ୍ରକାଶକ, ଜାଣିବାବାଲା, ଦେଖିବାବାଲା କେହି ସାକ୍ଷୀ, ଦ୍ରଷ୍ଟା, ଆତ୍ମା ଅଛି, ଯିଏ ସମସ୍ତ ପରିବର୍ତ୍ତନଗୁଡ଼ିକ ଭିତରେ ଅପରିବର୍ତ୍ତନଶୀଳ ହୋଇ ରହିଥାଏ, ଏବଂ ସିଏ ହେଉଛ ତୁମେ ।

ସେଇ ଯେଉଁ ସାକ୍ଷୀ ଅଛି, ସେଇ ଯେଉଁ witness ଅଛି, ସେଇ ଯେଉଁ ଦ୍ରଷ୍ଟା ଅଛି, ସେଇ ଯେଉଁ ବୋଧର ବିନ୍ଦୁଅଛି, ସିଏ ହେଉଛି ମନର ବାହାରେ । ସିଏ ମନର କ୍ରିୟାଗୁଡ଼ିକର ଅଂଶ

ନୁହେଁ, ସିଏ ତ ହେଉଛି ସେଇ ବିନ୍ଦୁ, ଯିଏ ଆମ ମନର ଅବସ୍ଥାଗୁଡ଼ିକୁ ଦେଖିବାବାଲା । ଆମେ ଯାହାକୁ ବି ଜାଣିଥାନ୍ତି ତାହା ଦେହ ହେଉ ବା ଦେହର କ୍ରିୟା ହେଉ, ମନ ହେଉ ବା ମନର ବିଚାର ହେଉ, ଆମେ ତାକୁ ଜାଣିବାବାଲା, ତା'ଠାରୁ ସର୍ବଦା ପୃଥକ ହୋଇ ରହିଥାଉ ।

ସାକ୍ଷୀକୁ ତୁମେ କେବେହେଲେ ଦେଖି ପାରିବ ନାହିଁ । ଯିଏ ଦେଖିବ, ସିଏ ତ ତୁମେ ହିଁ ହେବ ଏବଂ ଯାହା ଦେଖାଯିବ, ସିଏ ତୁମଠାରୁ ଭିନ୍ନ ଜଡ଼, ବିକାରୀ, ପରିଚ୍ଛିନ୍ନ, ଅନାତ୍ମ ପଦାର୍ଥ ହିଁ ହେବ । ଦେଖିବାବାଲାକୁ ହିଁ ଚୈତନ୍ୟ ଦ୍ରଷ୍ଟା କୁହାଯାଇଥାଏ । ସାକ୍ଷୀ ଭାବ ହେଉଛି ଆତ୍ମାରେ ପ୍ରବେଶ କରିବାର ଦୁଆର । ପୂର୍ଣ୍ଣ ସାକ୍ଷୀ ଭାବର ସ୍ଥିତି ହେଉଛି ଆତ୍ମ ଉପଲବ୍ଧୀ । ଯିଏ ଦୃଶ୍ୟ ହୋଇଯିବ, ସିଏ ପୁଣି ଅନାତ୍ମା ହିଁ ହେବ । ତୁମେ ଦ୍ରଷ୍ଟା ହିଁ ଆତ୍ମା ହୋଇ ରହିବ । ସାକ୍ଷୀ ହେଉଛି ତୁମର ସ୍ୱରୂପ । ଯାହାକୁ ବି ତୁମେ ଦେଖି ପାରୁଛ, ଜାଣି ପାରୁଛ, ଅନୁଭବ କରି ନେଉଛ, ତା'ଠାରୁ ତୁମେ ଜାଣିବା, ଦେଖିବା, ଅନୁଭବ କରିବାବାଲା ଅଲଗା ହୋଇଯାଇଥାଅ । କାରଣ ତୁମେ ହେଉଛ ତା'ଠାରୁ ଅଲଗା । ସେଥିପାଇଁ ତ ତୁମେ ତାକୁ ଦେଖିପାରୁଛ, ଜାଣିପାରୁଛ, ଅନୁଭବ କରିପାରୁଛ ।

ସାକ୍ଷୀର ମୂର୍ଚ୍ଛିତ ହେବାକୁ ହିଁ ମନ କୁହାଯାଇଥାଏ ବା ଚିତ୍ତ କୁହାଯାଇଥାଏ । ଯଦି ସାକ୍ଷୀ ସମ୍ପୂର୍ଣ୍ଣ ଭାବରେ ଜାଗ୍ରତ ହୋଇଯିବ, ତେବେ ମନ ବା ଚିତ୍ତ ନାମକ କୌଣସି ବସ୍ତୁ ହିଁ ନାହିଁ । ଯେତିକି ମାତ୍ରାରେ ତୁମ ଭିତରେ ସାକ୍ଷୀ ଭାବ ଜାଗ୍ରତ ହୋଇଯିବ, ସେତିକି ତୁମେ ହିଁ ନିଜକୁ ମନ ଠାରୁ ବାହାରେ ଅନୁଭବ କରିବ । ସାକ୍ଷୀ ଭାବ ଜାଗ୍ରତ ହୋଇଯିବାର ନାମ ହେଉଛି ଅ-ମନ ।

ଯିଏ ବିନା ଇନ୍ଦ୍ରିୟ, ବିନା ମନରେ ସିଧା ସଳଖ ଜାଣିଥାଏ, ତାକୁ ସାକ୍ଷୀ କୁହାଯାଏ । ଯିଏ ସାକ୍ଷାତ୍ (ସ୍ୱୟଂ) ଜାଣିଥାଏ, ତାକୁ ସାକ୍ଷୀ କୁହାଯାଏ ।

ଶରୀର ଜଳିଯାଉଛି ତ ତାକୁ ଜଳିବାକୁ ଦେବାନାହିଁ, ତାକୁ ବଞ୍ଚାଇ ରଖିବାକୁ ହେବ, ଉପଚାର କରିବାକୁ ହେବ କିନ୍ତୁ ସାକ୍ଷୀ ଦେଖୁଛି ଯେ ଶରୀରରେ, ମନରେ କଷ୍ଟ ହେଉଛି, ମୁଁ ହେଉଛି କେବଳ ସାକ୍ଷୀ ।

ଯେପର୍ଯ୍ୟନ୍ତ କର୍ତ୍ତାଭାବ ରହିଛି ସେପର୍ଯ୍ୟନ୍ତ ଧ୍ୟାନ ହେବନାହିଁ । ଦ୍ରଷ୍ଟା ହୋଇଯିବା, ସାକ୍ଷୀ ହୋଇଯିବା ହିଁ ଧ୍ୟାନ । ସାକ୍ଷୀ ହୋଇଯିବା ହିଁ ସମାଧି । ସାକ୍ଷୀର ସାକ୍ଷୀ ନଥାଏ । କର୍ତ୍ତା ଚାଲିଯିବା ହିଁ ଅହଂକାର ଶୂନ୍ୟ ହୋଇଯିବା ।

ସାକ୍ଷୀ ହେଉଛି ଆମର ସ୍ୱଭାବ । ସାକ୍ଷୀର ଅନ୍ୟ କୌଣସି ଦ୍ରଷ୍ଟା, ସାକ୍ଷୀ ନାହାନ୍ତି । ଧ୍ୟାନ ହେଉଛି ମାର୍ଗ, ସାକ୍ଷୀ ହେଉଛି ଲକ୍ଷ୍ୟ । ସାକ୍ଷୀ ଭାବର କାରଣ ହେଉଛି ଧ୍ୟାନ । ଅଷ୍ଟାବକ୍ର ଧ୍ୟାନ,

ସମାଧିକୁ ଏକ ବୋଲି ମାନିନିଅନ୍ତି । ଯେଉଁ କଥା କୃଷ୍ଣ କହୁଛନ୍ତି, ସେଇ କଥା ଉପନିଷଦ, ରାମାୟଣ, ଗୀତା ଇତ୍ୟାଦି ବି କହୁଛନ୍ତି ଯେ କେବଳ ତାଙ୍କୁ ଭଲ ଭାବରେ ଶୁଣିକରି ଜାଣିନିଅ, ବାସ୍, କାମ ହୋଇଗଲା । ଆଉ କିଛି କରିବାକୁ ହେବ ନାହିଁ । **''ଜାନତ୍ ତୁମହି ତୁମହି ହୋଇ ଜାଇ'', ''ଜ୍ଞାନାଦେବ ତୁ କୈବଲ୍ୟମ୍'', ''ତମେବ ବିଦିତ୍ୱାଽତି ମୃତ୍ୟୁମେତି, ଜ୍ଞାତ୍ୱା ଦେବଂ ସର୍ବ ପାପ ହାନି ।''**

ପରମାତ୍ମାଙ୍କୁ ସାକ୍ଷୀ ଭାବରେ ହିଁ ଜଣାଯାଇ ପାରିବ, ଯିଏ ତୁମ ମନ ଭିତରେ ଲୁଚି ବସିଛନ୍ତି ସିଏ ଦୃଶ୍ୟ ହୁଅନ୍ତି ନାହିଁ, ସମସ୍ତଙ୍କୁ ତିଆରି କଲାବାଲା, ଜାଣିବାବାଲା ଜଣେ ପରମାତ୍ମା ଅଛନ୍ତି, ସିଏ ଆଉ କେହି ନୁହଁନ୍ତି, ସିଏ ହିଁ ତୁମେ । ଏଭଳି ଜାଣିବାବାଲା କେବେ ଅଶାନ୍ତ ହୋଇପାରିବ ନାହିଁ । ସିଏ ପୁଣି ପ୍ରତ୍ୟେକ ସ୍ଥିତିରେ ଶାନ୍ତ, ପ୍ରସନ୍ନ ରହିବ । ଯାହା ବି ହେଉଛି, ଯେମିତି ବି ହେଉଛି ଠିକ୍ ହିଁ ହେଉଛି, କାରଣ ସିଏ ତ କରୁଛନ୍ତି, ସିଏ ତ ଭୋଗୁଛନ୍ତି । ଯେତେବେଳେ ସିଏ ହେଉଛନ୍ତି ଏକ, ସେତେବେଳେ କାହାକୁ ଗ୍ରହଣ କରିବା, କାହାକୁ ତ୍ୟାଗ କରିବା ? କାହାଠାରୁ ଆଶା ରଖିବା, କାହାଠାରୁ ତାକୁ ନିରାଶା ମିଳିବ ? କାହାଠାରୁ ସମ୍ମାନ ଚାହିଁବ ? କାହାଠାରୁ ତାକୁ ଅପମାନ ମିଳିବ ? ଏଭଳି ଜାଣିବାବାଲା ସର୍ବଦା ସନ୍ତୁଷ୍ଟ ରହିଥାଏ । ସମୟ ଅନୁସାରେ ସୂର୍ଯ୍ୟଦର୍ଶନ, ପୁଷ୍ପ, ଫଳ, ସନ୍ତାନ, ବର୍ଷା, ଗରମ, ଶୀତ ସବୁ କିଛି ହୋଇଥାଏ । ତେଣୁ ଧୈର୍ଯ୍ୟ ରଖ, ପ୍ରତୀକ୍ଷା କର, ସବୁକିଛି ସମୟ ଅନୁସାରେ ହୋଇଥାଏ । ମାନାପମାନ, ସୁଖ-ଦୁଃଖ, ସଂଯୋଗ-ବିୟୋଗ, ଲାଭା-ଲାଭ, ଜୟା-ଜୟ, ଦିନ-ରାତି, ଥଣ୍ଡା-ଗରମ, ଭୋକ-ଶୋଷ ସବୁକୁ ଦେଖିଚାଲ ଏବଂ ଯାହା ହେଉଛି, ତା'ର ସାକ୍ଷୀ ହୋଇରହ ।

ସୂର୍ଯ୍ୟ ଉଦୟ ହୋଇଗଲା ପରେ ଅନ୍ଧକାର ନାହିଁ, ସେହିପରି ସାକ୍ଷୀଭାବ ଆସିଗଲେ ଦୁଃଖ ନାହିଁ । ଦୁଃଖ ହୋଇଥାଏ ଦେହ, ବୁଦ୍ଧି, କର୍ମ, ଭୋଗ, ସୁଖ-ଦୁଃଖ ସହିତ ତାଦାତ୍ମ୍ୟ କରିଦେଲେ । ସାକ୍ଷୀଭାବ ଜାଗିଗଲା ତ ଦୁଃଖ ବି ଗଲା ।

ନଦୀ ପାରି ହେବା ପାଇଁ ପହଁରା ଆସିବା ହିଁ ଅନିବାର୍ଯ୍ୟ କଳା । ସେହିପରି ଭବସାଗର ପାର ହେବା ପାଇଁ ସାକ୍ଷୀଭାବ, ଦ୍ରଷ୍ଟାଭାବ, ଅସଂଗତା ଆସିବା ବି ଜରୁରୀ ।

ଯଦି ତୁମେ ମନର କର୍ମଗୁଡ଼ିକ ପ୍ରତି ସାକ୍ଷୀଭାବ, ଦ୍ରଷ୍ଟାଭାବକୁ ଉପଲବ୍ଧ ହୋଇଗଲ, ତେବେ ସେହି କର୍ମ ବି ଧର୍ମର ଅଙ୍ଗ ହୋଇଯିବ ।

କର୍ତ୍ତାଭାବ ଚାଲିଯିବା ହିଁ ସୁସ୍ଥ ହୋଇଯିବା । କର୍ମ ଛାଡ଼ିଦେଇ ଧାଇଁ ପଳାଇବାର ଆବଶ୍ୟକତା ନାହିଁ, କର୍ତ୍ତା ଭାବ ଚାଲିଯିବା ହିଁ ଆବଶ୍ୟକ । ବୁଦ୍ଧଦେବ ଅଟକିଯାଇ ପାଇଗଲେ,

ଛାଡ଼ିଦେଇ ବା ଦୌଡ଼ି କରି ପାଇନଥିଲେ । ପରମାତ୍ମା ତ ଦୌଡ଼ିବା ବାଲା ସାଙ୍ଗରେ ହିଁ ଦୌଡୁଛନ୍ତି ।

ସାକ୍ଷୀ ହେବାରେ ନା ଶରୀରର ଆବଶ୍ୟକତା ଅଛି, ନା ମନର ଆବଶ୍ୟକତା ଅଛି । ଶୁଦ୍ଧ ବ୍ରହ୍ମ, ଯିଏ ତୁମ ଭିତରେ ଲୁଚିଛନ୍ତି, ସିଏ ହେଉଛି ମୁଁ, ଏଭଳି ଜାଣିନେବା ହିଁ ହେଉଛି ତାଙ୍କ ସହିତ ସିଧା ସାକ୍ଷାତ୍କାର ।

ଜ୍ଞାନୀ କେବଳ ଭୋଗ କରିଥାଏ । ଅଜ୍ଞାନୀ କେଉଁଠି ଭୋଗ କରି ପାରିଥାଏ, ସିଏ ତ କାନ୍ଦିଥାଏ, କୁନ୍ଥେଇଥାଏ । ଯିଏ ନିଜ ଭିତରେ, ଆତ୍ମା ଭିତରେ, ଦ୍ରଷ୍ଟା ଭିତରେ ରହିଗଲା, ସିଏ ତ ତତ୍‌କ୍ଷଣାତ୍ ମୁକ୍ତ ହୋଇଗଲା । ଯିଏ କର୍ମ କରିଥାଏ ତଥାପି ସୁଦ୍ଧା ସେଇ କର୍ମରେ କର୍ତ୍ତାଭାବ ନଥାଏ ଏବଂ ଯିଏ ଭୋଗ କରିଥାଏ ତଥାପି ସୁଦ୍ଧା ସେଇ ଭୋଗରେ ଭୋକ୍ତାର ଭାବ ରହିନଥାଏ, ଏହିଭଳି ଜ୍ଞାନୀ ହିଁ ସାକ୍ଷୀଭାବକୁ ପ୍ରାପ୍ତ ହୋଇଛନ୍ତି ବୋଲି ଜାଣ । ଯଦି ତୁମେ ସେହି ଅନିର୍ବଚନୀୟ ଦଶାକୁ ଜାଣିବାକୁ ଚାହୁଁଛ, ତେବେ ଚାଲ ସାକ୍ଷୀଭାବରେ । ଜାଣିବାର ପ୍ରକ୍ରିୟା ହେଉଛି ସାକ୍ଷୀ । ଜାଗିଯିବ ତ ଜାଣିବ । ଶୋଇରହିଲ ଯଦି ଜାଣିପାରିବ ନାହିଁ ।

ଅହଂକାର ଅଛି ତ ତୁମେ କିଛି ନକଲେ ବି ତାହା କର୍ମ, ଅହଂକାର ନାହିଁ ତ ସବୁ କର୍ମ ହେଉଥିଲେ ବି ତୁମେ ଅକର୍ମରେ ଅବସ୍ଥିତ । ଅହଂକାର ରହିତ ହେବାର ଅର୍ଥ ହେଉଛି ବର୍ତ୍ତମାନ ତୁମେ କର୍ତ୍ତା ନୁହଁ । ବର୍ତ୍ତମାନ ପରମାତ୍ମା ତୁମ ଭିତରେ ବସିରହି କରୁଛନ୍ତି ବା କରାଉଛନ୍ତି । ପରମାତ୍ମା ହେଉଛନ୍ତି କର୍ତ୍ତା, ତୁମେ କର୍ତ୍ତା ନୁହଁ । ଶୁଖିଲା ପତ୍ରକୁ ପବନ ଯେଉଁଆଡ଼େ ନେଇଯାଏ, ସିଏ ସେଇଆଡ଼କୁ ଉଡ଼ିଯାଇଥାଏ । ଜ୍ଞାନୀଙ୍କ ଦ୍ୱାରା ଯେଉଁ କର୍ମ ପ୍ରକୃତି କରାଉଥାଏ, ତାହା ତା' ଦ୍ୱାରା ହୋଇଥାଏ, ସ୍ୱୟଂ କିଛି କରନ୍ତି ନାହିଁ । କର୍ମକୁ ଅକର୍ମରେ ବଦଳାଇବାର ନାହିଁ, ବରଂ କର୍ତ୍ତାକୁ ଅକର୍ତ୍ତାରେ ବଦଳାଇବାର ଅଛି । ଅହଂକାର ଛାଡ଼ିବାର ଅଛି, କର୍ମକୁ ଛାଡ଼ିବାର ନାହିଁ । ଲୋକେ କର୍ମ ଛାଡ଼ିଦେଇଥାନ୍ତି କିନ୍ତୁ 'ମୁଁ', 'ଅହଂକାର'କୁ ଛାଡ଼ିନଥାନ୍ତି । କର୍ତ୍ତାପଣିଆର ଅହଂକାରକୁ କେହି ଛାଡ଼ିବାକୁ ଚାହିଁନଥାନ୍ତି ।

ସାକ୍ଷୀ ହେଲା ମାନେ ଅକର୍ତ୍ତା ହେଲ । ଅକର୍ତ୍ତା ହେଲ ତ ସବୁପ୍ରକାରର କର୍ମ ସମ୍ବନ୍ଧୀୟ, ଚିନ୍ତା, ଅହଂକାର ସମାପ୍ତ ହୋଇଯିବ । ସଫଳତା – ଅସଫଳତାର ଚିନ୍ତା ସମାପ୍ତ । ଯେ ପର୍ଯ୍ୟନ୍ତ କୃତ୍ୟ ରହିଛି, କର୍ତ୍ତାଭାବ ରହିଛି, ସେ ପର୍ଯ୍ୟନ୍ତ ଚିନ୍ତା ରହିଛି । ସାକ୍ଷୀର ଅର୍ଥ ହେଉଛି ବର୍ତ୍ତମାନ ଆମେ କିଛି କରିବା ନାହିଁ ।

ସାକ୍ଷୀ ଆଗରେ ମନ ନଥାଏ । ସାକ୍ଷୀ ନରହିଥିଲେ କର୍ତ୍ତା ରହିଥାଏ ଏବଂ ମନ ପୂର୍ଣ୍ଣ ସ୍ୱଚ୍ଛନ୍ଦ–ତା'ର ସହ ବିଚରଣ କରିଥାଏ ।

ସମଗ୍ର ବେଦ ଉପନିଷଦର ଏୟା ହେଉଛି ଉପଦେଶ ଯେ ତୁମେ ନିଜକୁ ଅଦ୍ୱୟ ବୋଲି ଜାଣିନିଅ, ଏକ ହୋଇଯାଅ, ଦୁଇ ହୋଇ ରହିନଯାଅ । ରାତି ଏବଂ ଦିନ, ସୁଖ ଏବଂ ଦୁଃଖ, ଜୀବନ ଏବଂ ମୃତ୍ୟୁ, ନିନ୍ଦା ଓ ସ୍ତୁତି, ହର୍ଷ ଓ ଶୋକ, ମାନ ଓ ଅପମାନ ତୁମର ଏଇ ଦୁହିଁଙ୍କ ଭିତରେ ସମତା ଭାବ ଆସିଯାଉ, ତୁମେ ଏ ଦୁହିଁଙ୍କର ଏକମାତ୍ର ସାକ୍ଷୀ ହୋଇଯାଅ । ସୁଖକୁ ବି ଦେଖ ଏବଂ ଦେଖିବା ମୁହୂର୍ତ୍ତରେ ସୁଖର ଭୋଗୀ ହୋଇଯାଅ ନାହିଁ, କେବଳ ଦେଖିବାବାଲା ହୋଇ ରହିଯାଅ, ସେଇ ମିଳିବାକୁ ଥିବା ସୁଖ ସହିତ ତାଦାତ୍ମ୍ୟ ସ୍ଥାପନ କରନାହିଁ । ଏମିତି ଭାବନାହିଁ ଯେ ମୁଁ ଏହାକୁ ପାଇ ସୁଖୀ ହୋଇଗଲି । ଏତିକି କୁହ ଯେ ମୁଁ ସୁଖକୁ ପ୍ରକଟ ହେଉଥିବାର ଦେଖୁଛି । ତୁମର ଦେଖିବା ଅଛୁଆଁ ହୋଇ ରହୁ । କର୍ତ୍ତା–ଭୋକ୍ତା ଭାବରେ କେବେହେଲେ ଛନ୍ଦି ହୋଇଯାଅ ନାହିଁ । ଦୁଃଖ ଆସୁଛି ସେତେବେଳେ ବି ଦେଖ । କଣ୍ଟା ମିଳୁ ବା ପୁଷ୍ପ ମିଳୁ ଦେଖିଚାଲ । ଧୀରେ ଧୀରେ ନିଜ ଦ୍ରଷ୍ଟା ଉପରେ ସ୍ଥିର ହୋଇଯାଅ, କେନ୍ଦ୍ର ଉପରେ ଛିଡ଼ା ହୋଇଯାଅ । ଅକମ୍ପ ହୋଇ ରୁହ । ସେଇ ଅବସ୍ଥାକୁ ବ୍ରହ୍ମ, ମୋକ୍ଷ, ନିର୍ବାଣ, ସତ୍ୟ, ସାକ୍ଷୀ, ଦ୍ରଷ୍ଟା କୁହାଯାଏ । ସେଇ ଶାନ୍ତ ଅବସ୍ଥା ବା ଶୂନ୍ୟ ଦଶାକୁ ଯିଏ ଜାଣିଥାଏ ସିଏ ହେଉଛି ଜାଣିବା ଯୋଗ୍ୟ, ସିଏ ହିଁ ସଚ୍ଚିଦାନନ୍ଦ । ଯାହା ବି ତୁମ ଆଗରେ ଦେହ ସଂଘାତ ଦ୍ୱାରା ହେଉଅଛି, ତୁମେ ତାହାର ସାକ୍ଷୀ ହୋଇଯାଅ ।

ଯେପର୍ଯ୍ୟନ୍ତ ଭିତରୁ କିଛି ଦ୍ୱନ୍ଦ୍ୱ ଉଠୁଛି, ହେୟ–ଉପାଦେୟ ବିଷୟର ଗ୍ରହଣ–ତ୍ୟାଗ ହେଉଅଛି, ସେପର୍ଯ୍ୟନ୍ତ ଜାଣିରଖ ଯେ ଏହା ହେଉଛି ସାକ୍ଷୀର ସ୍ଥିତି, ଧ୍ୟାନର ସ୍ଥିତି ନୁହେଁ, ବର୍ତ୍ତମାନ ସଂସାର ହିଁ ଚାଲିଛି । ହୁଏତ ସେଇ ଦୃଶ୍ୟ ଶୁଭ ହେଉ ବା ଅଶୁଭ ହୋଇଥାଉ, ସୁନ୍ଦର ହେଉ ବା ଅସୁନ୍ଦର ହେଉ ତୁମେ ତାକୁ ଦେଖି ଚାଲ ଏଇ ସବୁ ଯାହା ଦେଖାଯାଉଛି ତାହା ହେଉଛି ଅନିତ୍ୟ ସଂସାର, ମନର ମାୟା । ମନର ଜାଲ ଭିତରେ ତୁମେ ପଡ଼ନାହିଁ । ମନର ବିଚାରଗୁଡ଼ିକୁ, ବିକାରଗୁଡ଼ିକୁ, ଚଞ୍ଚଳତାକୁ ନିଜର ବୋଲି ବୁଝନାହିଁ । ଅସଙ୍ଗତାପୂର୍ବକ ମନ ଏବଂ ତା'ର ବିଚାର ଗୁଡ଼ିକୁ ଦେଖିଚାଲ । ମନ ସହିତ ଯୋଡ଼ି ହୋଇଥିବା ସବୁ ଅହଂକାର ଠାରୁ ନିଜକୁ ମୁକ୍ତ କରିନିଅ । ସ୍ୱୟଂରେ ଅବସ୍ଥାନ କରି ନିଜର ଦ୍ରଷ୍ଟା ସାକ୍ଷୀ ଚେତନ ଆତ୍ମତତ୍ତ୍ୱରେ ଜାଗ୍ରତ ହୋଇଯାଅ ।

ଯେପରି ସୂର୍ଯ୍ୟ ଜଗତର ସମସ୍ତ ଶୁଭାଶୁଭ ଦୃଶ୍ୟଗୁଡ଼ିକୁ ପ୍ରକାଶିତ କରି ନିଜେ ସବୁ ଦୃଶ୍ୟଗୁଡ଼ିକ ଠାରୁ, ଘଟଣାଗୁଡ଼ିକ ଠାରୁ, କ୍ରିୟାଗୁଡ଼ିକ ଠାରୁ, ସେମାନଙ୍କର ଫଳ ଠାରୁ ଅସଙ୍ଗ ରହିଥାନ୍ତି, ସେହିପରି ମୁଁ ଆତ୍ମାରୂପୀ ସୂର୍ଯ୍ୟ ଭିତରେ ସର୍ବଦା ପ୍ରକାଶମାନ । ମୋର ଆଲୋକରେ

ଏଇ ମନ, ବୁଦ୍ଧି, ଇନ୍ଦ୍ରିୟଗୁଡ଼ିକ ନିଜ-ନିଜ କାର୍ଯ୍ୟକରି ଚାଲିଥାନ୍ତି କିନ୍ତୁ ମୁଁ ଏମାନଙ୍କ ଖେଳ ଠାରୁ ପୃଥକ୍ ଦ୍ରଷ୍ଟା ସାକ୍ଷୀ ହୋଇ ଦେଖି ଆସୁଅଛି ।

ଯାହା ହେଉଛି ତାକୁ ସ୍ୱୀକାର କରିନେବା ହିଁ ଆସ୍ତିକତା । ମୁଁ ଶୁଭ ଅଶୁଭ ସବୁକୁ ଦେଖୁଛି । ଦେଖି ଚାଲ ଯେ କେଉଁଠି ହେଲେ ମୁଁ ମନର କୌଣସି ବି କାର୍ଯ୍ୟରେ ବାଧା ସୃଷ୍ଟି କରୁନାହିଁ ତ । ମନ-ବୁଦ୍ଧି ରୂପୀ ଜୀବ ଯେପରି କରିବ, ତାକୁ ତାହାର ଫଳ ଦିନେ ନା ଦିନେ ଭୋଗ କରିବାକୁ ପଡ଼ିବ । ପରମଧନ, ପରମାନନ୍ଦ, ପରମଶାନ୍ତି ଭିତରେ ରହିଛି । ଯେତେବେଳେ ଭିତରୁ ସାକ୍ଷୀ ଭାବ ଜାଗ୍ରତ ହେବ, ସେତେବେଳେ ଯାଇ କର୍ତ୍ତାପଣର ଅଭିମାନ ବିଲୀନ ହେବ । ଯେପର୍ଯ୍ୟନ୍ତ ସାକ୍ଷୀଭାବ ଭିତରେ ଜାଗ୍ରତ ହୋଇନାହିଁ, ସେପର୍ଯ୍ୟନ୍ତ ତୁମେ ହଜାର ହଜାର ଥର ଗୀତା, ଉପନିଷଦ ପଢ଼ିନିଅ, କର୍ତ୍ତାପଣିଆର ଅଭିମାନ ଦୂର ହେବନାହିଁ । ପ୍ରତି ମୁହୂର୍ତ୍ତକୁ ଦେଖୁଥାଅ , ପ୍ରତ୍ୟେକ କ୍ରିୟାକୁ ଦେଖୁଥାଅ। ମନକୁ ବୁଝାଇବାର ନାହିଁ, ତୁମେ ନିଜର କେନ୍ଦ୍ର ସାକ୍ଷୀଭାବରେ ରହିଯାଅ । ସିଏ ହିଁ ଧ୍ୟାନ । ମନକୁ ବୁଝାଇବାର, ଅଟକାଇବାର ଚେଷ୍ଟା କେବେ ହେଲେ କରନାହିଁ । ମନକୁ, ତା'ର ବିଚାର ଗୁଡ଼ିକୁ ଅଟକାଇବାର ନାହିଁ, ମୋଡ଼ିବାର ନାହିଁ, କେଉଁଠି ଯୋଡ଼ିବାର ନାହିଁ, ଦବାଇ ରଖିବାର ନାହିଁ । ତୁମେ କେବଳ ଦେଖି ଚାଲ । ଭିତରେ ବହୁତ ପ୍ରକାର ବିଚାର ଗୁଡ଼ିକର, ବିକଳ୍ପର ଜାଲ ବିଛା ହୋଇଛି, ତୁମେ କାହା ସହିତ କେବେହେଲେ ତାଦାତ୍ମ୍ୟ କରନାହିଁ । ତୁମେ କେବଳ ଦେଖି ଚାଲ । ତଟସ୍ଥ, କୂଟସ୍ଥ ହୋଇ, ତୁମେ ସାକ୍ଷୀ ଚେତନ ହୋଇ ଦେଖିଚାଲ । ମନଠାରୁ ହଟିଯାଇ ମନର ଗତିକୁ ଦେଖିଚାଲ ।

ଯେତିକି ଯେତିକି ତୁମେ ସାକ୍ଷୀ ହୋଇଯାଅ, ସେତିକି ସେତିକି ଖରାପ ଗୁଣ ବିଦା ହୋଇଯାଇଥାଏ । ଖରାପ ହେବା ପାଇଁ ସାକ୍ଷୀର ଉପସ୍ଥିତି ବାଧା ପହଞ୍ଚାଇଥାଏ । ଭଲ ହେବା ପାଇଁ ସାକ୍ଷୀର ଉପସ୍ଥିତି ବାଧକ ହୋଇଥାଏ । ସାକ୍ଷୀ ତ ସେତେବେଳେ ହେବ ଯେତେବେଳେ ଭଲ-ମନ୍ଦ ଉଭୟ ଅହଂକାର ଠାରୁ ମୁକ୍ତ ହୋଇଥିବ ।

ସୁଖ ହେଉଛି ତ ମୁଁ ଜାଣୁଛି, ଦୁଃଖ ହେଉଛି ତ ମୁଁ ଜାଣୁଛି, ମାତ୍ର ମୁଁ ସୁଖ ନୁହେଁ କି ମୁଁ ଦୁଃଖ ନୁହେଁ । ଯେମିତି ସକାଳ-ସନ୍ଧ୍ୟା ହୋଇଥାଏ, ସେହିପରି ସୁଖ-ଦୁଃଖ ହୋଇଥାଏ । ମୁଁ ହେଉଛି ପୃଥକ୍ ଏବଂ ସମସ୍ତ ଅନୁଭବ ହେଉଛି ମୋଠାରୁ ଅଲଗା । ମୁଁ ହେଉଛି କେବଳ ସାକ୍ଷୀ ।



## ॥ ପହୁଞ୍ଚର ପରିଚୟ ॥

ଗୋଟିଏ କଷଟିକୁ ମନେ ରଖିଥିବ । ଯାହା ଆଗରେ ଅନୁଭବକୁ ଆସୁଛି, ତାହା ତୁମଠାରୁ ଅଲଗା, ତେଣୁ ଜାଣିରଖ ବର୍ତ୍ତମାନ ପ୍ରକୃତ ଲକ୍ଷ୍ୟ ଆସିନାହିଁ, ଏହା ହେଉଛି ତୁମରି ପ୍ରାରମ୍ଭିକ ଅବସ୍ଥା । ଧ୍ୟାନବେଳେ ଆଲୋକ ଦେଖାଯାଉଛି ତ ଯେ ବର୍ତ୍ତମାନ ଲକ୍ଷ୍ୟ ପହଞ୍ଚିନାହିଁ । କୁଣ୍ଡଳିନୀ ଜାଗ୍ରତ ହୋଇଛି, ଜାଣିବ ଯେ ଲକ୍ଷ୍ୟରେ ପହଞ୍ଚି ନାହଁ । ଜ୍ୟୋତି ଦର୍ଶନ ହେଉଛି ତ ଜାଣିବ ଯେ ଲକ୍ଷ୍ୟ ଉପରେ ପହଞ୍ଚି ନାହଁ । ରାମ, କୃଷ୍ଣ, ଦେବୀ-ଦେବତା କଳ୍ପିତ ରୂପଗୁଡ଼ିକର ଦର୍ଶନ ହେଉଛି ଯଦି ସେତେବେଳେ ଜାଣିବ ଯେ ବର୍ତ୍ତମାନ ଲକ୍ଷ୍ୟ ଆସିନାହିଁ । ଏସବୁ ଅନୁଭବ ହେଉଛି ମନର । ପରମାତ୍ମା ତ ଦୃଶ୍ୟ ନୁହଁନ୍ତି ସିଏ ତ ଦେଖିବାବାଲା ଭିତରେ, ଖୋଜିବାବାଲା ଭିତରେ, ପ୍ରାର୍ଥନା କରିବାବାଲାଙ୍କ ଭିତରେ, ଧ୍ୟାନ କରିବାବାଲାଙ୍କ ଭିତରେ ଲୁଚି ବସିଛନ୍ତି । ସିଏ କେବେହେଲେ ବାହାରେ ଦେଖାଯିବେ ନାହିଁ । ଯାହା ଦେଖାଯିବ, ତାହା ହେଉଛି ତୁମ ମନର ସ୍ୱପ୍ନ ।

ଯେପର୍ଯ୍ୟନ୍ତ ବାହ୍ୟ ବିଷୟଗୁଡ଼ିକରେ ରସ ଦେଖାଯାଉଛି, ସେପର୍ଯ୍ୟନ୍ତ ଜାଣିବ ଯେ ଦୃଷ୍ଟି ଭିତର ଆଡ଼କୁ, ସତ୍ୟ ଆଡ଼କୁ ମୋଡ଼ିହୋଇ ଯାଇନାହିଁ । ଜ୍ଞାନୀ ଜାଣିଥାନ୍ତି ଯେ ମୋର ଦୃଷ୍ଟିରେ ସୁଖ ଅଛି । ମୁଁ ଯେଉଁଠି, ଯାହା ଉପରେ ଦୃଷ୍ଟି ପକାଉଛି ଏବଂ ଯେପର୍ଯ୍ୟନ୍ତ ପକାଉଛି ସେଇ ପଦାର୍ଥ, ସ୍ଥାନ, ବ୍ୟକ୍ତି ସେପର୍ଯ୍ୟନ୍ତ ସୁଖଭଳି ଲାଗୁଛି ଏବଂ ଯେତେବେଳେ ଏହି ବୁଦ୍ଧି ଆସିଯିବ ଯେ ସୁଖରୂପ ହେଉଛି ମୁଁ, ସେତେବେଳେ କାହା ଉପରେ ସୁଖ ପାଇଁ ଦୃଷ୍ଟି ପକାଇବା କାହିଁକି ? ଯେପର୍ଯ୍ୟନ୍ତ ଏଭଳି ସ୍ଥିତି ଆସିନାହିଁ, ସେପର୍ଯ୍ୟନ୍ତ ମନ ଅସଂଯତ ହୋଇ ରହିବ ।

ଯଦି ତୁମେ ଦୁଃଖୀ ଅଛ, ତେବେ ଧ୍ୟାନ ରଖିଥାଅ ଯେ ତୁମେ ଭୁଲ ଦିଗକୁ ଧରି ପକାଇଛ । ଦୁଃଖ ବଢ଼ି ବଢ଼ି ଯାଉଛି ତ ତୁମକୁ ସାକ୍ଷୀ ଭାବରେ ବଞ୍ଚିବା ଆସିନାହିଁ, ବର୍ତ୍ତମାନ ଲକ୍ଷ୍ୟରେ ପହଞ୍ଚି ନାହଁ । ନିଜର ଦୁଃଖ ପାଇଁ ଅନ୍ୟ କାହାକୁ କେବେହେଲେ ଦୋଷ ଦିଅନାହିଁ ।

ପରମାତ୍ମାଙ୍କୁ, ଆନନ୍ଦକୁ ତୁମେ ବାହାରେ ଖୋଜୁଥାନ୍ତ ଯଦି ତେବେ ମନ୍ଦିର, ତୀର୍ଥ, ଧ୍ୟାନ, ସମାଧିକୁ ଯାଇଥାନ୍ତ । କିନ୍ତୁ ପରମାତ୍ମା କେବେହେଲେ ହଜିଯାଇନାହାନ୍ତି, ବିସ୍ମରଣ ହୋଇଯାଇଛି, କେବଳ ସ୍ମରଣକୁ ଆସିବାର ଅଛି । ହଜିଯାଇଥାନ୍ତା ଯଦି ତେବେ ସେଇ ଚୈତନ୍ୟ ବିନା ତୁମେ କେବେ ହେଲେ ଖୋଜିବା ପାଇଁ ବାହାରି ପାରିନଥାନ୍ତ । ସିଏ ହେଉଛ ତୁମେ, ଯାହାକୁ ତୁମେ ଖୋଜୁଛ । ତତ୍ତ୍ୱଜ୍ଞାନୀ ପୁରୁଷ ଏଣେ-ତେଣ ପୂଜାପାଠ କରିବା, ତୀର୍ଥ, ମନ୍ଦିର, ଧ୍ୟାନ, ସମାଧି, କୁଣ୍ଡଳିନୀ ଜାଗ୍ରତ କରିବା ଭଳି ସାଧନର ଜାଲ ଭିତରୁ ନିଜକୁ ମୁକ୍ତ ରଖିଥାନ୍ତି ।

ଜ୍ଞାନୀ ପୁରୁଷ କେବେହେଲେ ମରନ୍ତି ନାହିଁ । ଅଜ୍ଞାନୀ ବି ମରିନଥାନ୍ତି କିନ୍ତୁ ଅଜ୍ଞାନୀ ନିଜକୁ ଅମୃତ ଆତ୍ମା ବୋଲି ନଜାଣି, ମୃତ ଶରୀର ବୋଲି ମାନି ନେଇଥାନ୍ତି, ସେଥିପାଇଁ ଅଜ୍ଞାନୀକୁ ମରିବାକୁ ପଡ଼ିଥାଏ । ଜ୍ଞାନୀର ଦେହ ବି ମରିବ । ଯିଏ ଜନ୍ମ ନେଇଛି ସିଏ ନିଶ୍ଚିତ ଭାବରେ ମରିବ । ଜ୍ଞାନୀ ଜାଣିଥାଏ ମୁଁ ଦେହ ନୁହେଁ, ମୁଁ ହେଉଛି ଅମୃତଆତ୍ମା, ମୋର ମୃତ୍ୟୁ କେବେ ହେଲେ ହୋଇପାରିବ ନାହିଁ । ତୁମେ ମାନି ନେଇଥାଅ ଯେ ମୁଁ ମରିଗଲି, ତେଣୁ ତୁମେ ମରିଗଲ । ଏହା ପ୍ରସିଦ୍ଧ ବାକ୍ୟ ଯେ - **''ଜୈସୀ ମତି ବୈସୀ ଗତି '' । (ଯେମିତି ମତି ସେମିତି ଗତି)**

ଜ୍ଞାନୀ ପୁରୁଷ ତୁମ ଦ୍ୱାରା ବା ଶରୀର ନିଜର ସୁଖ-ଦୁଃଖ ଦ୍ୱାରା ଟିକିଏ ହେଲେ ବି ପ୍ରଭାବିତ ହୁଏନାହିଁ ଏବଂ ଯିଏ ହୋଇଥାଏ, ସିଏ ଜ୍ଞାନୀ ନୁହଁନ୍ତି । ଯେତେବେଳେ ବୁଦ୍ଧ ପୁରୁଷ ତୁମରି ଦୁଃଖବେଳେ ତୁମକୁ ସହାନୁଭୂତି ଦେଖାଇଥାନ୍ତି, ସେତେବେଳେ ତାହା ହେଉଛି ଏକ ନାଟକ, ସୌଜନ୍ୟତା ବଶତଃ ଅର୍ଥାତ୍ ତୁମକୁ ଖରାପ ନଲାଗୁ, ପୀଡ଼ା ନହେଉ ଏବଂ ତୁମକୁ ବି ସଚେତନ କରାଇଥାନ୍ତି ଯେ ଛାଡ଼, ଏସବୁ ହେଉଛି ମାୟା, ଏବେ ଜାଗ, କେତେ ଦିନ ପର୍ଯ୍ୟନ୍ତ ଶୋଇରହିଥିବ । କିନ୍ତୁ ଭିତରେ ଭିତରେ ହସିଥାନ୍ତି, କାରଣ ମରିବା, ବଞ୍ଚିବା, ଜନ୍ମଦିବସ, ବିବାହ ଇତ୍ୟାଦି ଏସବୁ ହେଉଛି ମିଛ ଖେଳ ।

ମୁଁ ବର୍ତ୍ତମାନ ଜ୍ଞାନକୁ ପାଇଯାଇଛି, ଏଭଳି ବୁଦ୍ଧି ବି ଯେଉଁ ଜ୍ଞାନୀଙ୍କର ହୋଇନଥାଏ, ସିଏ କୃତାର୍ଥ ହେଲେ ବୋଲି ଜାଣ । ମୁଁ କୃତାର୍ଥ ହେଲି, ଏଥିରେ ବି ମୁଁ' ର ଅହଂକାର ଛିଡ଼ା ହୋଇଛି, ବର୍ତ୍ତମାନ ସିଏ ଦ୍ୱୈତର ବାହାରକୁ ଯାଇନାହାନ୍ତି । ସିଏ ଅନ୍ୟମାନଙ୍କୁ କହିବେ ଯେ ତୁମେ ଜ୍ଞାନକୁ ଉପଲବ୍ଧ ହୋଇନାହଁ, ମୁଁ ଜ୍ଞାନକୁ ପାଇସାରିଛି, ଏଇ କଥନରେ ଦ୍ୱନ୍ଦ୍ୱ, ଦ୍ୱୈତ ରହିଛି । ମୁଁ ହେଉଛି ଆତ୍ମଜ୍ଞାନୀ, ତୁମେ ଅଜ୍ଞାନୀ ଏଥିରେ ବି ମୁଁ, ତୁ' ର ପାର୍ଥକ୍ୟ ମହଜୁଦ୍ ଅଛି ।

ଜ୍ଞାନୀ କେବେହେଲେ କହିବେ ନାହିଁ ଯେ ମୁଁ ଜାଣିଛି । ଯେତେବେଳେ ଜ୍ଞାନୀ ତୁମକୁ କହିବେ ଯେ ମୁଁ ହେଉଛି କାମୀ, ମୁଁ କ୍ରୋଧୀ, ଅଜ୍ଞାନୀ ଏବଂ ତଥାପି ସୁଦ୍ଧା ଯଦି ତୁମେ ତାଙ୍କ ପାଖରେ ଅଟକି ରହିଯାଅ, ତେବେ ତୁମେ ପରମଜ୍ଞାନୀଙ୍କ ପାଖରେ ତିଷ୍ଠି ପାରିବ । ତେବେ ଯାଇ

ତୁମେ କୌଣସି ଜ୍ଞାନୀଙ୍କର ସତ୍‌ସଙ୍ଗ ପାଇବ । ଦାମ୍ଭୀକ, ଦାବୀ କଲାବାଲାତ ବହୁତ ଅଛନ୍ତି, କିନ୍ତୁ ପ୍ରକୃତ ଜ୍ଞାନୀ ବହୁତ୍ କମ୍ । ଯାହାଙ୍କର ଜ୍ଞାନ ହୋଇଯାଏ, ସିଏ ଚିତ୍କାର କରିନଥାନ୍ତି ।

ଯିଏ ସାକ୍ଷୀ ହୋଇଗଲା ତାଙ୍କୁ ଦେଖାଯାଇଥାଏ ଯେ ମୋର କରିବା ଦ୍ୱାରା କିଛି ହୁଏନାହିଁ, ସବୁ ହୋଇଚାଲିଛି, ମୁଁ ଅଯଥାରେ ଆଜି ପର୍ଯ୍ୟନ୍ତ କର୍ତ୍ତାବନିଯାଇ ବୋଝ ବୋହି ଚାଲିଥିଲି । ଜ୍ଞାନୀଙ୍କର ଅର୍ଥ ହେଉଛି ଯିଏ ନିଜ ତରଫରୁ କିଛି କରନ୍ତି ନାହିଁ । ତୁମେ ଜ୍ଞାନୀଙ୍କୁ କର୍ମଠ ବୋଲି କୁହନାହିଁ କି ଅଳସୁଆ ବୋଲି କୁହନାହିଁ । ଜ୍ଞାନୀ ନିଜ ତରଫରୁ କିଛି ହିଁ ହୋଇନଥାନ୍ତି, ବନିଯାଇ ନଥାନ୍ତି । ଯାହା ପ୍ରକୃତି ଚାହିଁଥାଏ, ତାଦ୍ୱାରା କରାଇ ଚାଲିଥାନ୍ତି ।

ଜ୍ଞାନୀ ହେଉଛନ୍ତି ତୀର୍ଥ । ଜ୍ଞାନୀଙ୍କ ଚତୁଃପାର୍ଶ୍ୱରେ ତୀର୍ଥର ସୁଗନ୍ଧ ଘେରି ରହିଥାଏ, ସେଇଠି ଜୀବର ଅନ୍ତରାତ୍ମା ଶୁଦ୍ଧ ହୋଇଯାଇଥାଏ । ଭିତରେ ତାଙ୍କର ଜ୍ଞାନର ଗଙ୍ଗା ଅହର୍ନିଶ ବହି ଚାଲିଥାଏ । ବାହାରର ଗଙ୍ଗା ତ ଶରୀରର ମଇଳା, ଧୂଳିକୁ ଧୋଇ ନେଇଥାଏ, ମାତ୍ର ଚୈତନ୍ୟର ଜ୍ଞାନଗଙ୍ଗା ଦ୍ୱାରା ତୁମର ଚୈତନ୍ୟ, ତୁମର ଆତ୍ମା ବି ସ୍ନାନ କରିନେବ ।

ଜ୍ଞାନୀ କେବଳ ଭୋଗ କରିଥାନ୍ତି, ଅଜ୍ଞାନୀ କେଉଁଠି ଭୋଗ କରିପାରେ, ସିଏ ତ କାନ୍ଦୁଥାଏ, ପଛଘୁଞ୍ଚା ଦେଇଥାଏ । ଯିଏ ନିଜ ଭିତରେ, ଆତ୍ମାରେ, ସାକ୍ଷୀରେ, ଦ୍ରଷ୍ଟାରେ ଅଧିଷ୍ଠିତ ହୋଇଗଲା, ସିଏ ତ ତତ୍‌କ୍ଷଣାତ୍ ମୁକ୍ତ ହୋଇଗଲା । କର୍ମ କରୁଥାଏ ତଥାପି ସୁଦ୍ଧା କର୍ତ୍ତାର ଭାବ ରହିନଥାଏ, ଭୋଗ କରୁଥାଏ ତଥାପି ସୁଦ୍ଧା ଭୋକ୍ତାର ଭାବ ରହିନଥାଏ, ଏଭଳି ଜ୍ଞାନୀ ହିଁ ସାକ୍ଷୀ ଭାବକୁ ପ୍ରାପ୍ତ ହୋଇଛନ୍ତି ବୋଲି ଜାଣ । ଯଦି ତୁମେ ସେଇ ଅନିର୍ବଚନୀୟ ଦଶାକୁ ଜାଣିବାକୁ ଚାହୁଁଛ, ତେବେ ଚାଲ ସାକ୍ଷୀଭାବକୁ । ଜାଣିବାର ପ୍ରକ୍ରିୟା ହେଉଛି ସାକ୍ଷୀ । ଜାଗିଯିବ ତ ଜାଣିବ । ଶୋଇ ରହିଥିବ ଯଦି ଜାଣିପାରିବ ନାହିଁ ।

ଜ୍ଞାନୀ ଜ୍ଞାନରେ ଜୀଇଁଥାଏ, କର୍ମରେ ନୁହେଁ । ଅଜ୍ଞାନୀ ଅଜ୍ଞାନରେ ଜୀଇଁଥାଏ, ଜ୍ଞାନରେ ନୁହେଁ । ଯିଏ ତୁମକୁ କହିଥାଏ ସଂସାର ଆଡ଼କୁ ଗଲେ ବିପଦ ଅଛି, ଯିବ ତ ଫାନ୍ଦରେ ପଡ଼ିଯିବ, ଏଭଳି ଯିଏ କହିଥାନ୍ତି ତାଙ୍କର ଡର ରହିଥାଏ ଯେ ସେଇଠି ଯଦି ତାଙ୍କୁ ତୃପ୍ତି ମିଳିଗଲା ତ ପୁଣି ସିଏ ମୋକ୍ଷର ଇଚ୍ଛା ଛାଡ଼ି ଦେବେ । ଯେମିତି ପୃଥିବୀ ଓ ଆକାଶର ମିଳନ କେବେହେଲେ ସମ୍ଭବ ନୁହେଁ, ସେହିପରି ସଂସାରରେ କାହାକୁ କେବେ ହେଲେ ତୃପ୍ତି ମିଳିବା ସମ୍ଭବ ନୁହେଁ ।

ମୁଁ ତୁମକୁ କହୁଛି ଯାଅ ସଂସାର ଭିତରକୁ, ଖୁବ୍ ବାଟବଣା ହୁଅ, ଦେଖ, ଭୋଗ କର ସଂସାରକୁ । ବାଟବଣା ହେବାରେ, ଭୋଗ କରିବାରେ କେବେହେଲେ କୃପଣତା କରନା, ଯାହା ଫଳରେ ଯେତେବେଳେ ଫେରିବ, ସେତେବେଳେ ସମ୍ପୂର୍ଣ୍ଣ ଭାବରେ ଫେରିବ, ପୁଣି ପଛକୁ ଫେରି

ସଂସାରକୁ ଆଉ ଦେଖିବ ନାହିଁ । ଯେମିତି ସାପ ଥରେ କାତି ଛାଡ଼ି ଦେଲାପରେ ପୁଣି ତାକୁ ଫେରିଆସି ଦେଖିନଥାଏ, ତା' ଭିତରେ ଆଉ ପଶି ନଥାଏ ।

ଅଜ୍ଞାନରେ ଯାହା-ଯାହା ହୋଇଥାଏ ତାହା ଜ୍ଞାନରେ ବି ହୋଇଥାଏ, ଦୁହିଁଙ୍କର କାରଣ କେବଳ ଅଲଗା- ଅଲଗା ହୋଇଥାଏ, ମାତ୍ର ଦୁହିଁଙ୍କର କାର୍ଯ୍ୟ ଯେମିତି କି ସେମିତି ହୋଇଥାଏ ।

ଜ୍ଞାନୀଙ୍କ ଦ୍ୱାରା ପରମାତ୍ମା ଯାହା କରାଇଥାନ୍ତି, ସିଏ କରି ଦେଇଥାନ୍ତି, ଯାହା କରାଇନଥାନ୍ତି ତାହା କରିନଥାନ୍ତି । ତାଙ୍କର କୌଣସି ଦାୟିତ୍ୱ ନଥାଏ ।

ଜ୍ଞାନୀ ସୁଖ-ଦୁଃଖରେ, ସମ୍ମାନ-ଅପମାନରେ, ଲାଭ-ହାନିରେ, ସଂଯୋଗ-ବିୟୋଗରେ ନିର୍ବିଚାର ହୋଇ ରହିଥାନ୍ତି । ଯାହା ହୁଏ ତାକୁ ଦେଖି ନେଇଥାନ୍ତି । ତଟସ୍ଥ ହୋଇ ରହିଥାନ୍ତି । ସେଇ ଘଟଣା ଉପରେ ବହୁତ ମୂଲ୍ୟ ଦିଅନ୍ତି ନାହିଁ । ସିଏ ସନ୍ତାପରୁ ମୁକ୍ତ ହୋଇଯାଇଥାନ୍ତି ।

ଯାହାଙ୍କ ଜୀବନରେ ପରମାତ୍ମା ଓ ଆତ୍ମାର ଭେଦ ସମାପ୍ତ ହୋଇଯାଇଛି ସେଇଠି ଗୁରୁ ଶିଷ୍ୟର ଭେଦ ବି ନଷ୍ଟ ହୋଇଯାଇଥାଏ । ନା କେହି ଆତ୍ମା ନା କେହି ପରମାତ୍ମା ଅଛନ୍ତି । ଏଇଠି ନା କିଛି ନିଜର ଅଛି, ନା ପରର ଅଛି । ସବୁ ହେଉଛି ତାଙ୍କର । ସବୁ ହେଉଛି ସେଇ ଏକ'ର । ଏଇ ମୁଁ-ତୁ'ର ଭେଦ ହେଉଛି କଳ୍ପିତ । ଯାହା ମୁଁ ଭିତରେ ମହଜୁଦ୍ ଅଛି, ତାହା ତୁ ଭିତରେ ବି ମହଜୁଦ୍ ଅଛି । ଯେ ପର୍ଯ୍ୟନ୍ତ ଦୁଇ ଅଛି ସେପର୍ଯ୍ୟନ୍ତ ଅଜ୍ଞାନ ରହିଛି ।

ଯାହା ହୋଇଥାଉ, ଯେମିତି ହୋଇଥାଉ ସେଥିରେ ସୁସ୍ଥ, ପ୍ରସନ୍ନ ରହୁଥିବା ବ୍ୟକ୍ତିଙ୍କ ଜୀବନରେ ଅଶାନ୍ତି ଆସିବ କେମିତି ? ମୁକ୍ତ ପୁରୁଷ ନା ସ୍ତୁତିକରାଗଲେ ପ୍ରସନ୍ନ ହୋଇଥାନ୍ତି, ନାଁ ନିନ୍ଦା କରାଗଲେ ଦୁଃଖୀ ହୋଇଥାନ୍ତି, ନା ତାଙ୍କର ମୃତ୍ୟୁ ପ୍ରତି କୌଣସି ବିରୋଧ ଭାବ ଥାଏ, ନା ଜୀବନ ପ୍ରତି କୌଣସି ଆଗ୍ରହ ଥାଏ । ନିନ୍ଦା ବି ତୁମେ କରୁଛ ତ ତୁମେ ଜାଣ, ସ୍ତୁତି ବି ତୁମେ କରୁଛ ତ ତୁମେ ଜାଣ । ସିଏ ଅଡୋଳ, ଅଚଳ, ଅକମ୍ପ ନିଜର ସାକ୍ଷୀ ସ୍ୱରୂପରେ ଅବସ୍ଥାନ କରିଥାନ୍ତି, ସିଏ ସବୁ ଅବସ୍ଥାରୁ, କର୍ମରୁ , ଭୋଗରୁ ବାହାର ହୋଇ ସାରିଛନ୍ତି ।

ଜ୍ଞାନୀ କେବେହେଲେ କହିପାରିବେ ନାହିଁ ଯେ ମୁଁ ଖୋଜି ନେଇଛି, ନା ଖୋଜି ଚାଲିଛି ବୋଲି ସେ କହିବେ । କାରଣ ଯେତେବେଳେ ତୁମେ ଜାଗିଯିବ, ସେତେବେଳେ ତୁମେ ଜାଣିବାକୁ ପାଇବ ଯେ ଯାହା ତୁମେ ପାଇଛ, ତାକୁ ତୁମେ କେବେହେଲେ ହରାଇନଥିଲ । ସେଥିପାଇଁ ଖୋଜିନେଲି ବୋଲି କହିବା ବ୍ୟର୍ଥ । ଜ୍ଞାନୀ ତ ଏତିକି ହିଁ କହିପାରିବେ ଯେ ଯାହା ପ୍ରଥମରୁ ହିଁ ଥିଲା କିନ୍ତୁ ତା' ଆଡ଼କୁ ଦେଖିପାରିନଥିଲି, ବର୍ତ୍ତମାନ ମୁଁ ତାକୁ ଦେଖିନେଲି । ଜ୍ଞାନୀ କେତେବେଳେ

ଆବଶ୍ୟକ ପଡ଼ିଲେ ଅହଂକାର, କ୍ରୋଧ, କାମ, ଲୋଭର ବି ଉପଯୋଗ କରି ନେଇଥାନ୍ତି । ମାତ୍ର ପ୍ରତ୍ୟେକ ଅବସ୍ଥାରେ ଯାହା ବି ଜ୍ଞାନୀଙ୍କ ଦ୍ୱାରା ହୋଇଥାଏ, ଜ୍ଞାନୀ ତା'ଠାରୁ ବାହାରେ ରହିଥାନ୍ତି । ଜ୍ଞାନୀ ନା ସୁଖ ସହିତ ଯୋଡ଼ିହୁଅନ୍ତି ନା ଦୁଃଖ ସହିତ । ସୁଖ-ଦୁଃଖ ହେଉଛି ମନର ଭୋଗ । ଜ୍ଞାନୀ ହେଉଛନ୍ତି ସାକ୍ଷୀ ।

ଚରିତ୍ର ହେଉଛି ପ୍ଲାଷ୍ଟିକ୍‌ର ଫୁଲ, ଉପରେ ଲଗେଇ ଦିଆଯାଇଛି । ଅନ୍ଧାନୁକରଣ ଅନ୍ୟକୁ ଦେଖାଇବା ପାଇଁ ଭଲ ମାତ୍ର ଶୀଳ ହେଉଛି ନିଜର ମାଲିକ । ଚରିତ୍ର ନିଜର ମାଲିକ ନୁହେଁ, ସିଏ ହେଉଛି ଅନ୍ୟର ଗୋଲାମୀ । ରାମ ଓ କୃଷ୍ଣଙ୍କ ଶୀଳ ଦେଖାଯାଉଛି, କୃଷ୍ଣ ରାମଙ୍କ ଚରିତ୍ରକୁ ଅନୁକରଣ କଲେ ନାହିଁ । ଯଦି ତୁମକୁ ଜୀବନରେ କେବେ କେହି ଶୀଳବାନ ମହାପୁରୁଷ ମିଳିଯିବେ, ସେତେବେଳେ ବୁଝିଯିବ ଯେ ଏଇ ପାଦ ଧରି ପକାଇବା ଭଳି । ଚରିତ୍ରବାନର ଛଳନା ଭିତରକୁ କେବେହେଲେ ପଶିଯାଅ ନାହିଁ । କାରଣ ସିଏ ଚରିତ୍ରବାନ ତ ଉପରେ-ଉପରେ, ଭିତରେ ତାଙ୍କର ସବୁ ବିପରୀତ କାର୍ଯ୍ୟ ଚାଲିଥାଏ ।

ବୁଦ୍ଧଙ୍କ ଭଳି ବ୍ୟକ୍ତି ପୃଥିବୀ ଉପରକୁ ଯେତେବେଳେ ବି ଆସନ୍ତି, ସେତେବେଳେ କ୍ରାନ୍ତିକାରୀ ତୋଫାନ ନେଇ ଆସିଥାନ୍ତି, ଯାହା ଆମ ସମସ୍ତଙ୍କର ଅନ୍ଧବିଶ୍ୱାସର ମୂଳକୁ ଓପାଡ଼ି ପକାଇଥାଏ । ମାନ୍ୟତାର ମହଲକୁ ଭାଙ୍ଗିଦେଇଥାଏ ଏବଂ ଆମ ପାଇଁ ଛାଡ଼ି ଦେଇଥାଏ ଆମର ଶୁଦ୍ଧତା, ନିଜତା । ମନରୁ ବିଦା ହୋଇଯାଇଥାଏ ସବୁ ଭିଡ଼ଭାଡ଼, ସମାଜର ମେଣ୍ଢା ଚାଲିଚଳଣ ଏବଂ ପ୍ରଥମ ଥର ବ୍ୟକ୍ତି ଜାଣିଥାଏ ଶୁଦ୍ଧ ବ୍ୟକ୍ତି ହେବା ।

ଯାହାଠାରୁ ବଞ୍ଚିବାର କୌଣସି ଉପାୟ ନାହିଁ, ସେଇ ମୃତ୍ୟୁକୁ ସ୍ୱୀକାର କରିନିଅ । ତା'ଠାରୁ ବଞ୍ଚି ରହିବାକୁ ଅଯଥା ଚେଷ୍ଟା କରନାହିଁ । ଯାହା ଅଛି ତାକୁ ମୁଁ ସ୍ୱୀକାର କରୁଛି ଏହା ହିଁ ହେଉଛି 'ତଥାତା'ର ପରିଚୟ । ମୋ ତରଫରୁ କୌଣସି ପ୍ରକାର ଅଭିଯୋଗ, ଦାବୀ ନାହିଁ ।

ନାମଦେବଙ୍କ ଆଗରେ କୁକୁରର ରୂପ, ଏକନାଥଙ୍କ ସମ୍ମୁଖରେ ଗଧର ରୂପ, ଜ୍ଞାନଦେବଙ୍କ ସମ୍ମୁଖରେ ମଇଁଷି ରୂପରେ, ରାମଭକ୍ତମାନଙ୍କ ସମ୍ମୁଖରେ ରାମ ରୂପରେ, କୃଷ୍ଣ ଭକ୍ତମାନଙ୍କ ସମ୍ମୁଖରେ ସିଏ କୃଷ୍ଣ ରୂପରେ, ଶ୍ୟାମ ରୂପରେ ପ୍ରତୀତ ହୋଇଥାନ୍ତି । ଜ୍ଞାନୀଙ୍କୁ ସର୍ବତ୍ର ଏକ ହିଁ ଦେଖାଯାଇଥାଏ । ସିଏ ବ୍ରାହ୍ମଣ-ଚଣ୍ଡାଳ, ଗାଇ-ଗଧ, କୁକୁର-ହାତୀ ଭିତରେ ଏକ ଆତ୍ମାକୁ ହିଁ ଦେଖିଥାନ୍ତି ।

**ପଣ୍ଡିତାଃ ସମଦର୍ଶିନଃ** – ଗୀତା -୫/୧୮

ଜ୍ଞାନୀଙ୍କୁ ଯଦି କେହି ଅଜ୍ଞାନୀ ମାରିବାକୁ ଆସେ, ତେବେ ସିଏ ତାକୁ ଡରନ୍ତି ନାହିଁ, ମନରେ ପ୍ରସନ୍ନ ହିଁ ହୋଇଥାନ୍ତି ଯେ – ପ୍ରଭୋ ! ଆପଣ ମୋ ଠାରୁ ଲୁଚି ରହିପାରିବେ ନାହିଁ । ତୁମେ ଏଇ ରୂପରେ ମୋ' ପାଖକୁ ଆସିଛ । ତୁମେ ହେଉଛ ସିଏ, 'ତତ୍ତ୍ୱମସି' । ଏହା ମୃତ୍ୟୁ ନୁହେଁ, ଏହା ହେଉଛି ମୋକ୍ଷ ।

ଜ୍ଞାନୀଙ୍କୁ ପୀଡ଼ା ହୋଇଥାଏ କିନ୍ତୁ ଜ୍ଞାନୀ ପୀଡ଼ାକୁ ଦେଖି ଚାଲିଥାନ୍ତି ଯେ ପୀଡ଼ା ଅଛି, ଯନ୍ତ୍ରଣା ଅଛି କିନ୍ତୁ ତାଙ୍କୁ ଦୁଃଖ ହୋଇନଥାଏ । ଜ୍ଞାନୀଙ୍କୁ ଦୁଃଖ, ଦୁଃଖୀ କରିନଥାଏ । କଣ୍ଟା କାଟୁଛି, ଏହା ଜ୍ଞାନୀଙ୍କୁ ବି ଜଣାପଡ଼ିଥାଏ କିନ୍ତୁ ମୋତେ ଫୋଡ଼ିଲା, ମୋତେ କଷ୍ଟ ହେଉଛି ଏଭଳି ଭାବରେ ଜ୍ଞାନୀ ଦେଖିନଥାନ୍ତି । ଜ୍ଞାନୀର ମନ ଏକାଗ୍ର ହୋଇଥିବାରୁ ତାଙ୍କୁ ସୂକ୍ଷ୍ମରୁ ସୂକ୍ଷ୍ମ ସମ୍ବେଦନାର ବି ଖବର ମିଳିଥାଏ । ଧଳା ଲୁଗା ଉପରେ ଟିକିଏ ଦାଗ ବି ଦେଖା ପଡ଼ିଥାଏ । କଳା କନା ଉପରେ ଦାଗ ତ ପଡ଼ିଥାଏ କିନ୍ତୁ ଦାଗ ଦେଖାଯାଏ ନାହିଁ ।

ମୁଁ ବର୍ତ୍ତମାନ ଜ୍ଞାନକୁ ଉପଲବ୍ଧ ହୋଇଯାଇଛି, ଏହିଭଳି ବୁଦ୍ଧି ବି ଯେଉଁ ଜ୍ଞାନୀଙ୍କର ହୋଇନଥାଏ, ସିଏ କୃତାର୍ଥ ହେଲେ ବୋଲି ଜାଣ । ମୁଁ କୃତାର୍ଥ ହେଲି ଏଥିରେ ବି ଅହଂକାର ଛିଡ଼ା ହୋଇଛି, ବର୍ତ୍ତମାନ ସିଏ ଦ୍ୱୈତରୁ ବାହାର ହୋଇନାହାଁନ୍ତି । ଅନ୍ୟମାନଙ୍କୁ ସିଏ କହିବେ – ତୁମକୁ ଜ୍ଞାନର ଉପଲବ୍ଧି ହୋଇନାହିଁ, ମୁଁ ଜ୍ଞାନକୁ ପାଇସାରିଛି । ଏଇ କଥନରେ ବି ଦ୍ୱନ୍ଦ୍ୱ, ଦ୍ୱୈତ ରହିଛି । ମୁଁ ହେଉଛି ଆତ୍ମଜ୍ଞାନୀ, ତୁମେ ହେଉଛ ଅଜ୍ଞାନୀ, ଏଥିରେ ବି ମୁଁ, ତୁ'ର ପାର୍ଥକ୍ୟ ଉପସ୍ଥିତି ଅଛି ।

ଜୀବନ ସେଇଠି ଗଭୀର ହୁଏ, ଯିଏ ବିରୋଧଗୁଡ଼ିକୁ ବି ଆତ୍ମସାତ୍ କରିନେଇଛନ୍ତି । ଯେଉଁଠି ଜୀବନରୁ ବିରୋଧ ଚାଲିଯାଏ, ସେଇଠି ଜୀବନ ହେଉଛି ନପୁଂସକ, ପଙ୍ଗୁ, ଡରକୁଳା । ଯେଉଁଠି ଜୀବନରେ କୌଣସି ବିରୋଧ ରହିନଯାଏ, ସେଇଠି ଜୀବନ ଦୁର୍ବଳ ହୋଇଯାଏ । ଜୀବନର ମହତ୍ତ୍ୱ, ସୌରଭ, ସମୃଦ୍ଧି ବିରୋଧରେ ଥାଏ । ରାମଙ୍କର ଜୀବନ ହେଉଛି ମର୍ଯ୍ୟାଦିତ, କୃଷ୍ଣଙ୍କର ଜୀବନ ହେଉଛି ଅମୂଲ୍ୟ । ସେଇଠି ନା ମର୍ଯ୍ୟାଦା ଅଛି ନା ଅହିଂସା । ପରମ ସ୍ୱତନ୍ତ୍ର ।

ଯିଏ କହୁଛି ମୁଁ ଜାଣେ ନାହିଁ, ସିଏ ଦିନେ ଜାଣିବାରେ ସମର୍ଥ ହୋଇଯାଇଥାଏ । ଯିଏ କହିଲା ମୁଁ ଜାଣିଛି, ତା' ପାଇଁ ଜ୍ଞାନର ଦୁଆର ବନ୍ଦ ହୋଇଯାଏ । ବର୍ତ୍ତମାନ ସିଏ କାହାଠାରୁ କିଛି ଶିକ୍ଷା ନେଇପାରିବ ନାହିଁ, ତା'ର ଜ୍ଞାନର ଅହଂକାର ହିଁ ତା' ପାଇଁ ବାଧା ହୋଇଗଲା ।

ଧୀର ପୁରୁଷ ଦୃଶ୍ୟକୁ ସତ୍ୟ ବୋଲି ମାନନ୍ତି ନାହିଁ, ସିଏ ଦ୍ରଷ୍ଟା ଆତ୍ମାକୁ ହିଁ ସତ୍ୟ ବୋଲି ଜାଣନ୍ତି, ସେ ଦ୍ରଷ୍ଟାକୁ ହିଁ ଦେଖିଥାନ୍ତି, ଦୃଶ୍ୟକୁ ଦେଖନ୍ତି ନାହିଁ । ଯିଏ ଏଇ ଅବିନାଶୀ, ଅବ୍ୟୟ ଆତ୍ମାକୁ ଜାଣିନେଲା, ସିଏ ପାଇବା ଯୋଗ୍ୟ ଯାହା ଥିଲା, ତାକୁ ପାଇଗଲା, ଯାହା ସାର ଥିଲା,

ତାକୁ ଗ୍ରହଣ କରିନେଲା । ଅସାର ଦୃଶ୍ୟ ଜଗତକୁ ଛାଡ଼ିଦେଲା । ଜ୍ଞାନୀ ସବୁ କରିଥାନ୍ତି ଏବଂ ତଥାପି ସୁଦ୍ଧା କିଛି କରନ୍ତି ନାହିଁ । ସେ ଚାଲିଥାନ୍ତି ଏବଂ ଚାଲନ୍ତି ନାହିଁ । ସେ କହିଥାନ୍ତି ଏବଂ କହନ୍ତି ନାହିଁ ।

ଯେପରି ବୃକ୍ଷରୁ ପାଚିଲା ଫଳ, ଶୁଖିଲା ପତ୍ର ଏବେ ପଡ଼ିଲା କି କେବେ ପଡ଼ିଲା ସେଥିରେ କ'ଣ ଫରକ ପଡୁଛି, ସେହିପରି ଜୀବନ ହେଉଛି ଜ୍ଞାନୀଙ୍କର । ଯାହାଙ୍କୁ ଏହି କଥା ବୁଝାପଡ଼ିଗଲା, ସିଏ କାହାକୁ ଦୁଃଖ ଦେବେ କାହିଁକି, ପୀଡ଼ା ଦେବେ କାହିଁକି । ଜ୍ଞାନୀ ନା' ଅଧିକ ଜୀଇଁବା ପାଇଁ ଇଚ୍ଛା କରିଥାନ୍ତି, ନା ଜ୍ଞାନୀ ଜୀବନକୁ ଶୀଘ୍ର ସମାପ୍ତ କରିବା ପାଇଁ ଇଚ୍ଛା କରିଥାନ୍ତି । ସିଏ ନିଜ ଜୀବନକୁ ପ୍ରାରବ୍ଧ ଉପରେ ଛାଡ଼ିଦେଇ ସୁଖରେ ଜୀଇଁଥାନ୍ତି ।



## ।। ଦେହ, ବିଚାର ଏବଂ ଭାବ ଶୂନ୍ୟତା ।।

ଦେହ ହେଉଛି ପରିଧି, ମୁଁ ପରମାତ୍ମା ହେଉଛି କେନ୍ଦ୍ର, ସିଏ ହେଉଛି ଆମର ସ୍ୱରୂପ । ଶରୀର, ବିଚାର ଓ ଭାବ ଏଇ ତିନୋଟି ଶୁଦ୍ଧ ହୋଇଗଲେ, ଆମେ ପରମାତ୍ମାଙ୍କ ସମ୍ମୁଖ ହେବାର ଅଧିକାରୀ ହୋଇଯାନ୍ତି । ଅଲୌକିକ ସହିତ ସମ୍ବନ୍ଧିତ ହୋଇଯାନ୍ତି । କିନ୍ତୁ ଶରୀର, ବିଚାର ଏବଂ ଭାବର ଶୁଦ୍ଧି ପରମାତ୍ମାଙ୍କ ସହିତ ମିଳନ ନୁହେଁ । ଏକ ହୋଇଯିବା ନୁହେଁ । ତାହା ହେଉଛି ପରମାତ୍ମାଙ୍କୁ ଜାଣିବା କିନ୍ତୁ ପରମାତ୍ମାଙ୍କ ସହିତ ମିଶିଯିବା ନୁହେଁ । ଶୁଦ୍ଧିର ଭୂମିକା ତ ଆମର ଦୃଷ୍ଟିକୁ ପରମାତ୍ମାଙ୍କ ଆଡ଼କୁ ଆକର୍ଷିତ କରିଥାଏ, ପରମାତ୍ମାଙ୍କ ଆଡ଼କୁ ଉନ୍ମୁଖ କରିଥାଏ । ତା'ପରେ ଶୂନ୍ୟର ଦୃଷ୍ଟି ପରମାତ୍ମାଙ୍କ ସହିତ ଏକତ୍ୱ କରାଇଥାଏ ଯେମିତି ନଦୀ ଚାଲିଯାଇ ସାଗରରେ ମିଶି ଯାଏ ।

ତେଣୁ ଶରୀର, ବିଚାର ଏବଂ ଭାବକୁ ପ୍ରଥମେ ଶୁଦ୍ଧ କରିବାକୁ ହେବ । ଏହାପରେ ଶରୀର, ବିଚାର ଏବଂ ଭାବ ପ୍ରତି ଶୂନ୍ୟତା ଆଣିବାକୁ ହେବ ।

ଶରୀରର ଶୂନ୍ୟତା, ଶରୀର ତାଦାତ୍ମ୍ୟତା ଭିତରେ ବିରୋଧ ଅଛି । ଶରୀର ସହିତ ଆମର ଭ୍ରାନ୍ତ ସମ୍ବନ୍ଧ ରହିଛି । ଆମେ ଏପରି କହନ୍ତି ନାହିଁ ଯେ ଆମର ଶରୀର ବରଂ ଆମେ ଏମିତି ମାନିନେଇଥାନ୍ତି ଯେ ଆମେ ହେଉଛୁ ଶରୀର, ମୁଁ ହେଉଛି ଶରୀର । ଯଦି ମୁଁ ଶରୀର ନୁହେଁ ଏଇ ଭାବ ଜାଗିଯିବ ତେବେ ଶରୀରର ଶୂନ୍ୟତା ଘଟିତ ହୋଇଯିବ । ଶରୀର ସହିତ ଆମର ତାଦାତ୍ମ୍ୟ ତୁଟିଯିବ ଯଦି ଶରୀର ଶୂନ୍ୟତା ଘଟିତ ହେବ ।

ଆତ୍ମନିଷ୍ଠ ଜ୍ଞାନୀଙ୍କୁ କେହି ମାରିପାରିବେ ନାହିଁ । ପରୀକ୍ଷିତକୁ ସର୍ପ ଦଂଶନ କରିବା ପାଇଁ ଆସି ବସିଗଲା । ଶୁକଦେବ କହିଲେ ଯେ ବର୍ତ୍ତମାନ ଇଏ ତତେ ଦଂଶନ କରିବ, ତୁ ମରିବୁ । କିନ୍ତୁ

ଜ୍ଞାନାମୃତ ପାନ କରିବା ଫଳରେ ପରୀକ୍ଷିତ ଦେହଭାବ ଛାଡ଼ି ସାରିଥିଲେ । ପରୀକ୍ଷିତ କହୁଛନ୍ତି – ଯାହାକୁ ଆପଣ ପରୀକ୍ଷିତ ବୋଲି କହୁଛନ୍ତି, ସର୍ପ ତାକୁ ଦଂଶନ କରିବ ଓ ଆପଣ ତାକୁ ଦେଖିବେ, ସେହିପରି ମୁଁ ବି ତାକୁ ଦେଖିବି । ମତେ ସିଏ ଛୁଇଁ ବି ପାରିବ ନାହିଁ । ମୋର କିଛି ହେଲେ କ୍ଷତି କରିପାରିବ ନାହିଁ । **ଯେପର୍ଯ୍ୟନ୍ତ କେହି କିଛି ହାନି ପହଞ୍ଚାଇ ପାରିବ, ସେପର୍ଯ୍ୟନ୍ତ ଆମର ହେବାର ନାହିଁ** । ଯାହାକୁ କୃଷ୍ଣ କହିଲେ – **''ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି''**, ସେଇ ଅମର ଆତ୍ମା ହେଉଛି ମୁଁ । ସେଇ ସତ୍ତାର ବୋଧ ହେଲା ଏବଂ ଶରୀର ସହିତ ତାଦାତ୍ମ୍ୟ ତୁଟିଯିବାର ଅଛି । ଏଇ ଭାବ ତୁଟିଯିବ ଯେ ମୁଁ ହେଉଛି ଦେହ, ଶରୀରର ଶୂନ୍ୟତା ଅଛି । ଏଇ ତାଦାତ୍ମ୍ୟକୁ ଭାଙ୍ଗିବା ପାଇଁ ଆମକୁ ନିରନ୍ତର ବିଚାର କରିବାକୁ ହେବ । ସେଥିପାଇଁ ଶରୀର ଯେତିକି ଶୁଦ୍ଧାହାରୀ ହେବ, ତା'ର ବୁଦ୍ଧି ସାତ୍ତ୍ୱିକ ହୋଇଥିବାରୁ, ସେତିକି ଶୀଘ୍ର ଶରୀର ଠାରୁ ଏକତ୍ୱ ଭାବ ଭାଙ୍ଗିପାରିବ । ଶୀଘ୍ର ହିଁ ଜାଣିପାରିବ ଯେ ମୁଁ ଶରୀର ନୁହେଁ, ଏହା ହେଉଛି ଦୃଶ୍ୟ ଏବଂ ମୁଁ ହେଉଛି ଏହାଠାରୁ ପୃଥକ୍, ଏହାର ଦ୍ରଷ୍ଟା । ଏଇ ଶରୀର ଭାବକୁ ଭାଙ୍ଗିଦେବା ପାଇଁ କ'ଣ କରିବା ଯେ ଦେହ ଭାବ ଚାଲିଯିବ ?

ଉଠିବା–ବସିବା, ଶୋଇବା–ଜାଗିବା, ଖାଇବା–ପିଇବା ସମୟରେ ଧ୍ୟାନ ପୂର୍ବକ ଦେଖ ଯେ ଭିତରେ କେହି ଏମିତି ବି ଅଛି ଯିଏ ଉଠୁନାହିଁ କି ବସୁନାହିଁ, ଖାଉନାହିଁ କି ପିଉନାହିଁ, ଶୋଉନାହିଁ କି ଉଠୁନାହିଁ, ଆସୁନାହିଁ କି ଯାଉନାହିଁ କେବଳ ଦ୍ରଷ୍ଟା ହୋଇରହିଛି, କେବଳ ସବୁ କ୍ରିୟାର ସାକ୍ଷୀ ହୋଇରହିଛି । ତୁମର ଶରୀର, ପାଦ, ହାତ, ପ୍ରାଣ ଚଳୁଛି କିନ୍ତୁ ଶରୀର ଭିତରେ କୌଣସି ଏକ ତତ୍ତ୍ୱ ଏମିତି ବି ଅଛି, ଯିଏ ଆରାମରେ ଦେଖୁଛି, ସିଏ ଗୋଟିଏ ପାଦ ବି ଚାଲୁନାହିଁ । ଯେମିତି ରଥ, ମୋଟର, ଉଡ଼ାଜାହାଜ, ଟ୍ରେନ୍‌ରେ ବସିଥିବା ଯାତ୍ରୀଟିର ଗୋଟିଏ ପାଦ ବି ଚାଲିନଥାଏ କିନ୍ତୁ ସେ ଲକ୍ଷ୍ୟସ୍ଥଳରେ ପହଞ୍ଚି ଯାଇଥାଏ, ସେହିପରି କେବଳ ତୁମ ଶରୀରର ସମସ୍ତ କ୍ରିୟାଗୁଡ଼ିକୁ ସିଏ ଦେଖୁଛି ।

ଯେତେବେଳେ ହାତ ପାଦରେ ଯନ୍ତ୍ରଣା ହୁଏ, ପାଦକୁ ଆଘାତ ଲାଗିଯାଏ, ସେତେବେଳେ ଭିତରେ ସଜାଗ ହୋଇ ଦେଖ ଯେ ଯନ୍ତ୍ରଣା ମୋତେ ହେଉଛି ନା ମୋର ମନକୁ । ଆଘାତ ମୋତେ ଲାଗିଛି ନା ମୋର ପାଦକୁ । ତୁମେ ତ ତା'ଠାରୁ ଅଲଗା, ତାକୁ ଜାଣିବାବାଲା ଏବଂ ତୁମେ ବି କହୁଛ ଯେ ମୋର ପାଦରେ, ହାତରେ, କମରରେ, ମୋର ମୁଣ୍ଡରେ ଯନ୍ତ୍ରଣା ହେଉଛି । ମୋ' ପାଦରେ ଆଘାତ ଲାଗିଯାଇଛି । ମୋର ହାତ କଟିଯାଇଛି ମୋର ହାର୍ଟର ଅପରେଶନ ହୋଇଛି, ମୁଁ ଦେଖୁଥିଲି, ମୁଁ ହେଉଛି କେବଳ ତା'ର ସାକ୍ଷୀ । ମୁଁ ପୀଡ଼ା ହେବାର ବି ଦର୍ଶକ ଥିଲି,

ଦ୍ରଷ୍ଟା ହିଁ ଥିଲି । ମୋତେ ଯନ୍ତ୍ରଣା ହେଉ ନଥିଲା, ନଚେତ୍ ମୁଁ କିପରି ଜାଣିପାରିଥାନ୍ତି ଯେ ଯନ୍ତ୍ରଣା ହେଉଛି ବୋଲି ।

ଯେତେବେଳେ ଭୋକ ଲାଗୁଛି, ଶୋଷ ଲାଗୁଛି ସେତେବେଳେ ଦେଖ ଯେ ଭୋକ ତୁମକୁ ଲାଗୁଛି ନା ତୁମେ ହେଉଛ କେବଳ ତାହାର ଲାଗିବା, ମରିଯିବାର ଦର୍ଶକ, ସାକ୍ଷୀ । ଏବଂ ଯେତେବେଳେ କେହି ଖୁସି ହୁଏ, ଦୁଃଖୀ ହୁଏ ସେତେବେଳେ ତାକୁ ବି ଦେଖ ଯେ ସେଇ ଖୁସି ଏବଂ ଦୁଃଖ ତୁମକୁ ହୋଇଛି ନା ତୁମ ମନକୁ । ତୁମେ ତ ହେଉଛ ସେଇ ସୁଖ, ଦୁଃଖର ବି ଦ୍ରଷ୍ଟା । ଏମିତି ବି କୁହାଯାଇଥାଏ ଯେ ଆଜି ମୋର ମନ ଖୁସିରେ ଫୁଲି ଉଠୁଛି, ଆଜି ମୋର ମନ ଦୁଃଖରେ କାନ୍ଦିଉଠୁଛି । ମୁଁ' ତ କେବଳ ଜାଣୁଛି, ଦେଖୁଛି ।

ଆମେ ପ୍ରତ୍ୟେକ କ୍ରିୟାରେ ନିରନ୍ତର ଏଇ କଥାକୁ ଦେଖିବାକୁ ଚେଷ୍ଟା କରିଚାଲିବା ଯେ ଘଟଣାଗୁଡ଼ିକ କେଉଁଠି ଘଟୁଛି ? ମୋ ଉପରେ ଘଟୁଛି ନା ମୋ'ର ଶରୀର, ଇନ୍ଦ୍ରିୟ, ମନ ଉପରେ ଘଟୁଛି ? ମୁଁ ତ କେବଳ ଦେଖୁଛି । ଆମର ଅଭ୍ୟାସ ହୋଇଯାଇଛି ଯେ ଦୃଶ୍ୟ ସହିତ ଦେହ, ଇନ୍ଦ୍ରିୟ, ଅବସ୍ଥା, ଘଟଣା ଏବଂ କ୍ରିୟାଗୁଡ଼ିକ ସହିତ ନିଜର ଏକତ୍ୱ କରିନେବା । ଖେଳ, ନାଟକର ଦୃଶ୍ୟଗୁଡ଼ିକ ସହିତ ବି ଆମେ ଏକତ୍ୱ ରକ୍ଷା କରି ହସିବା, କାନ୍ଦିବା, ଚିତ୍କାର କରିବାରେ ଲାଗିଯାଇଥାଉ । ସେହିପରି ଶରୀର, ମନ ଉପରେ ଘଟିବାକୁ ଥିବା କ୍ରିୟାଗୁଡ଼ିକ ସହିତ ବି ଏକତ୍ୱ କରି କାନ୍ଦିବାରେ, ହସିବାରେ ଲାଗିଯାଇଥାଉ । ସମସ୍ତ ଦୁଃଖର ଏକମାତ୍ର କାରଣ ହେଉଛି ଯେ ଆମେ ଦେହ ସଂଘାତ ସହିତ ଏକତା ଅଛି ବୋଲି ବୁଝିଯାଇଛୁ ଏବଂ ସମସ୍ତ ଦୁଃଖରୁ ରକ୍ଷା ପାଇବାର ବି ଏକମାତ୍ର ଉପାୟ ହେଉଛି ଯେ ଆମର ଶରୀର ସହିତ ଏକତ୍ୱ ରହିଛି ବୋଲି ମାନିନେଇଥିବା ସମ୍ବନ୍ଧ ତୁଟିଯାଉ । ବାସ୍, ଆମକୁ ଏଇ ସ୍ମରଣ ଆସିଯାଉ ଯେ ଆମେ ଏଇ ଦେହ ନୁହଁନ୍ତି । ତେଣୁ ତା'ପାଇଁ ଆମକୁ ସମ୍ୟକ୍ ସ୍ମୃତି ଦେହର କ୍ରିୟାଗୁଡ଼ିକ ପ୍ରତି ରଖିବାକୁ ହେବ ଯେ ଏହା ମୋ'ଠାରେ ନାହିଁ, ମୁଁ ଏହାଠାରୁ ସର୍ବଦା ପୃଥକ୍ । ଦେହ ପ୍ରତି ଶୂନ୍ୟତା ଆସିଯିବ, ଦେହର କ୍ରିୟାଗୁଡ଼ିକୁ ନିରୀକ୍ଷଣ କଲେ । ଏଇ ନିରୀକ୍ଷଣ କରିବା ଜରୁରୀ ।

ଯେତେବେଳେ ରାତିରେ ବିଛଣା ଉପରକୁ ଯାଉଛ ସେତେବେଳେ ଦେଖ ଯେ ନିଦ ମୋତେ ଆସୁଛି ନା ମନକୁ । ଦେହ ବିଛଣା ଉପରେ ପଡୁଛି ନା ମୁଁ ପଡ଼ିଯାଉଛି । ଉଠିଲାବେଳେ ବି ବିଚାର କର ଯେ ଦେହ ଉଠିଲା ନା ମୁଁ ? ମନ ଜାଗିଲା ନା ମୁଁ ଜାଗିଲି ? ନିଦ ମୁଁ ନେଇନାହିଁ, ନିଦ କେବଳ ମନ ନେଇଛି । ବିଶ୍ରାମ ମୁଁ କରିନାହିଁ, ବିଶ୍ରାମ ଦେହ ଏବଂ ଇନ୍ଦ୍ରିୟମାନେ ନେଇଛନ୍ତି । ଏବଂ ଯେତେବେଳେ ଭୋଜନ କରୁଛ ସେତେବେଳେ ଜାଣ ଯେ ଭୋଜନ ପ୍ରାଣ କରିଛି ।

ଯେତେବେଳେ ସ୍ନାନ କରୁଛ, ବସ୍ତ୍ର ପିନ୍ଧୁଛ ସେତେବେଳେ ଜାଣ ଯେ ଏହା ଦେହ ସହିତ ହେଉଛି । ଯେତେବେଳେ କେହି ଆଘାତ କରୁଛି, ଗାଳି ଦେଉଛି ସେତେବେଳେ ଜାଣ ଯେ ଆଘାତ ଦେହ ଉପରେ କରାଯାଇଛି, ଗାଳି ମନକୁ ଛୁଇଁ ଯାଉଛି, ମୋତେ ନୁହେଁ । ଏହିଭଳି ସର୍ବଦା ବୋଧକୁ ଜଗାଉ ଜଗାଉ କୌଣସି ମୁହୂର୍ତ୍ତରେ ବିସ୍ଫୋଟ ହୋଇଯିବ ଏବଂ ଦେହ ସହିତ ମାନି ନେଇଥିବା ତାଦାତ୍ମ୍ୟ ନଷ୍ଟ ହୋଇଯିବ । ତୁମେ ନିଜ ଭିତରକୁ ଯେତିକି ପ୍ରବେଶ କରି ଚାଲିଥାଅ, ସେତିକି ଦେହ ଭୁଲି ହୋଇ ଚାଲିଥାଏ । ଜାଗ୍ରତରୁ ସ୍ୱପ୍ନକୁ ଚାଲିଗଲା ପରେ ଏଇ ଦେହ ସମ୍ବନ୍ଧ, ସଂସାର ଭୁଲି ଯାଇଥାଏ । ସ୍ୱପ୍ନରୁ ସୁଷୁପ୍ତିକୁ ଗଲାପରେ ସେଇଠି କିଛି ହେଲେ ଦେହ ଓ ଦେହ ସମ୍ବନ୍ଧୀୟ, ସଂସାରର ହୋଶ୍ ରହେ ନାହିଁ । ଯେତେବେଳେ ଜାଗ୍ରତକୁ ଫେରିଆସୁ ସେତେବେଳେ ଦେହ ସହିତ ତାଦାତ୍ମ୍ୟ ଯୋଡ଼ି ହୋଇଯାଏ । ଯେତେବେଳେ ନିଦ ଭାଙ୍ଗିଯିବ, ସେତେବେଳେ ଭିତରେ ଦେଖ ଯେ ତୁମେ ହେଉଛ ଦେହ, ନା ଦେହର ତାଦାତ୍ମ୍ୟ ଜାଗି ଯାଉଛି । ଏଇ ଦେହର ତାଦମ୍ୟକୁ ଭାଙ୍ଗିବା ପାଇଁ ଏଇ ପ୍ରୟୋଗକୁ ପ୍ରତି ରାତିରେ ନିଶ୍ଚିତ ଭାବରେ କର । ତେବେ ଯାଇ ଦେହ ସହିତ ତାଦାତ୍ମ୍ୟ ଭାଙ୍ଗିବା ପାଇଁ ସହଯୋଗ ମିଳିବ ।

ତୁମେ ବିଛଣା ଉପରେ ଶୋଇଯାଅ । ସମଗ୍ର ଶରୀର, ଇନ୍ଦ୍ରିୟ, ମନକୁ ଆଦେଶ ଦିଅ ଯେ ଶାନ୍ତ ହୋଇଯାଅ, ଶାନ୍ତ ହୋଇଯାଅ । ସେମାନେ ଶାନ୍ତ ହୋଇଯିବେ । ତୁମେ ପଚାରିବ – ଆମର କହିବା ଅନୁସାରେ ସେମାନେ କିପରି ଶାନ୍ତ ହୋଇଯିବେ ? ଆରେ ଭାଇ ! ତୁମର କହିବା ଅନୁସାରେ ହାତ ଉଠିଯାଉଛି, ଶରୀର ଉଠିଯାଉଛି, ଶରୀର ବସିଯାଉଛି, ହାତ ତଳକୁ ଖସି ପଡୁଛି ତେବେ ସେହିଭଳି ସଂକଳ୍ପ ଦ୍ୱାରା ସବୁକୁ ଶାନ୍ତ କରାଯାଇପାରେ । ପ୍ରତ୍ୟେକ ଚକ୍ରଗୁଡ଼ିକୁ ଉପଦେଶ ଦେଇ ଶରୀରକୁ ଶିଥିଳ ଛାଡ଼ିଦିଅ । କୋଠରୀକୁ ଅନ୍ଧକାର କରିଦିଅ ଓ ଧ୍ୟାନ ଭିତରେ ପ୍ରବେଶ କର । ଯେତେବେଳେ ଶରୀର ଶିଥିଳ ହୋଇଯିବ, ଶ୍ୱାସ ଶିଥିଳ ହୋଇଯିବ, ଯେତେବେଳେ ଚିତ୍ତ ଶାନ୍ତ ହୋଇଯିବ, ସେତେବେଳେ ଏଇ ଭାବନା କର ଯେ ତୁମେ ମରିଗଲ ଏବଂ ସ୍ମରଣ କର ଯେ ମୁଁ ମରିଯାଇଛି, ତେଣୁ କେଉଁ କେଉଁ ବ୍ୟକ୍ତି ମୋ'ପାଇଁ କେତେ ଦୁଃଖୀ, ଚିନ୍ତିତ ଏବଂ ଆନନ୍ଦିତ ହେବେ, ସେଇ ମୃତାବସ୍ଥାରେ ଯିଏ ଯିଏ ପାଖକୁ ଆସିଯିବେ ତାଙ୍କୁ ବି ଧ୍ୟାନ କରିନିଅ । ସେମାନେ ଯାହା କରିବେ ତାକୁ ବି ଦେଖ । ପୁଣି ସବୁ ଲୋକ ପାଖ–ଆଖର ବି ଆସିଯାଇଛନ୍ତି ଏବଂ ସେମାନେ ତୁମକୁ ନେଇଯାଇ ଚିତା ଉପରେ ରଖିଦେଲେ । ନିଆଁର ସ୍ଫୁଲିଙ୍ଗ ଉଠିଲା ଓ ତୁମର ଶବକୁ ପାଉଁଶ କରିଦେଲା । ସେତେବେଳେ ତୁମେ ଏକୁଟିଆ ରହିଯିବ, ଦେହର ମୃତ୍ୟୁ ପାଇଁ ସାକ୍ଷୀ ହୋଇ । ସେତେବେଳେ ଯାଇ ବୋଧହେବ ଯେ ତୁମେ ଦେହ ନୁହେଁ । ସେହି ସମୟରେ ଦେହ ସହିତ ରହିଥିବା ତାଦାତ୍ମ୍ୟ ଭାଙ୍ଗିଯିବ । ପୁନଶ୍ଚ ତୁମେ ସେଇ ଧ୍ୟାନ ପରେ ଯେତେବେଳେ

ଉଠିବ ସେତେବେଳେ କିଛି ସମୟ ପାଇଁ ତୁମର ଏଇ ହୋଶ୍ ରହିବ ଯେ ତୁମେ ଦେହ ନୁହେଁ । ଏଇ ଅବସ୍ଥାକୁ ବିଦେହ କୁହାଯାଏ । ଏହିଭଳି ଦେହରେ ରହିଥାଇ ଦେହର କ୍ରିୟାଗୁଡ଼ିକ ହେଉଥିଲେ ବି ତୁମେ ଦେହଭାବରୁ ମୁକ୍ତ ହୋଇଗଲ । ଦେହ ଶୂନ୍ୟତା ଘଟିଗଲା । ଦେହ ସହିତ ତାଦାତ୍ମ୍ୟ ଭାଙ୍ଗିଯିବା ହିଁ ହେଉଛି ସବୁଠାରୁ ବଡ଼ ତପସ୍ୟା । ତୁମର ସବୁ ଭୁଲ ଓ ପାପ ଏଇ ଦେହ ସହିତ ବନ୍ଧା ହୋଇଛି । ତୁମେ ଜୀବନରେ ଗୋଟିଏ ହେଲେ ବି ପାପ, ଭୁଲ ଦେହର ତାଦାତ୍ମ୍ୟରେ ବିନା କରିନାହଁ । ସେତେବେଳେ ତୁମେ କଞ୍ଚା ନଡ଼ିଆରୁ ଶୁଖିଲା ନଡ଼ିଆ ହୋଇଯାଇଥାଅ । ସେତେବେଳେ ଦେଖିବ ଯେ ସବୁ ଆଘାତ, ଯନ୍ତ୍ରଣା, ପୀଡ଼ା, ଦୁଃଖ ଦେହ ସହିତ ଘଟିଚାଲିଛି, ମନ ସହିତ ଘଟିଚାଲିଛି, ତୁମକୁ କେହି ବି ସ୍ପର୍ଶ କରିପାରୁନାହାନ୍ତି । ଏହି କେନ୍ଦ୍ରୀୟ ସାଧନାର ପ୍ରଥମ ପାହାଚ ହେଉଛି ଯେ ଦେହ ଶୂନ୍ୟତାକୁ ସାଧନ କରିବା । ଯିଏ ଏଥିପାଇଁ ପ୍ରୟାସ କରିଥାନ୍ତି ସେ ନିଶ୍ଚିତ ଭାବରେ ସଫଳ ହୋଇଯାଇଥାନ୍ତି ।

ଦ୍ୱିତୀୟ ଚରଣ ହେଉଛି ଆନ୍ତରିକ ସାଧନାର ବିଚାର ଶୂନ୍ୟତା । ଯେମିତି ସମ୍ୟକ୍ ନିରୀକ୍ଷଣ କରିବା ଦ୍ୱାରା ଦେହ ଶୂନ୍ୟତା ଘଟି ଯାଇଥାଏ, ସେହିପରି ସମ୍ୟକ୍ ମନର ନିରୀକ୍ଷଣ ଦ୍ୱାରା ବିଚାର ଶୂନ୍ୟତା ଘଟିତ ହୋଇଥାଏ ।

ବିଚାରର ଧାରାଗୁଡ଼ିକ, ଯାହା ଆମ ମସ୍ତିଷ୍କରେ ଦୌଡୁଥାଏ, କେବଳ ସେମାନଙ୍କର ନିରୀକ୍ଷକ ହୋଇଯାଅ । ଯେମିତି କେହି ଜଣେ ନଦୀ କୂଳରେ ବସିଛି ଏବଂ ନଦୀର ଧାରାକୁ ଦେଖ, କେବଳ ଦେଖ, ଆକାଶର ପକ୍ଷୀମାନଙ୍କୁ କିଛି ନ ବିଚାରି ଦେଖ ବା ବାଦଲର ଦଉଡୁଥିବା ମେଘ ଖଣ୍ଡକୁ ଦେଖ । ସେହିପରି ତୁମ ମନ ଆକାଶରେ ବିଚାରର ଦଉଡୁଥିବା ପକ୍ଷୀମାନଙ୍କୁ, ମେଘଗୁଡ଼ିକୁ, ବିଚାରର ନଦୀକୁ ଚୁପ୍‌ଚାପ ଦେଖି ଚାଲ । ବିଚାରଗୁଡ଼ିକ ଦ୍ୱାରା ବାନ୍ଧି ହୋଇଯାଅନାହିଁ କି ବିଚାରଗୁଡ଼ିକୁ ବାନ୍ଧି ଦିଅନାହିଁ । ବିଚାରଗୁଡ଼ିକୁ ଖୋଲା ଛାଡ଼ିଦିଅ । ଚୁପ୍ ହୋଇ ବସ, ଦେଖିଚାଲ । ଭଲ ମନ୍ଦ ବିଚାରଗୁଡ଼ିକ ପ୍ରତି କୌଣସି ପ୍ରକାର ପାତର ଅନ୍ତର କରନାହିଁ । ଖରାପ ବିଚାର ଆସୁଛି ତ ବାଧାଦିଅ ନାହିଁ, ଭଲ ବିଚାର ଆସୁଛି ତ ତାକୁ ଆସିବାକୁ ଦିଅ । ନ ଆସୁଛି ତ ଆଣିବାକୁ ଚେଷ୍ଟା କରନାହିଁ । ତୁମେ ନିରୀକ୍ଷକ ହୋଇ ରୁହ । ସେଇ ନିରୀକ୍ଷଣ ଦ୍ୱାରା ମାଲୁମ ହେବ ଯେ ଆସୁଥିବା-ଯାଉଥିବା ବିଚାର ଅଲଗା ଏବଂ ତୁମେ ହେଉଛ ଅଲଗା । କାରଣ ବୋଧ ହୋଇଥାଏ ଯେ ଯିଏ ବିଚାରଗୁଡ଼ିକୁ ଦେଖୁଛି, ମନର ଚଞ୍ଚଳତାକୁ ଦେଖୁଛି, ମନର ସୁଖ-ଦୁଃଖ ଅବସ୍ଥାକୁ ଦେଖୁଛି, ସିଏ ବିଚାରଗୁଡ଼ିକ ଠାରୁ, ମନର ସୁଖ-ଦୁଃଖ ଠାରୁ, ମନର ଚଞ୍ଚଳତା, ସମାଧି ଠାରୁ ପୃଥକ୍ ହେବ । ଏବଂ ଯେତେବେଳେ ଏଇ ଭଳି ବୋଧ ହୋଇଥାଏ, ସେତେବେଳେ ବିଚାର ଶୂନ୍ୟତା ଘଟିଯାଇଥାଏ । ସେତେବେଳେ କୌଣସି ଚିନ୍ତା,

କୌଣସି ବିଚାର ତୁମର ହୋଇପାରିବ ନାହିଁ । ତୁମେ ବିଚାରର ଭିଡ଼ ଭିତରେ ରହିଥିବ କିନ୍ତୁ ବିଚାରଗୁଡ଼ିକ ଠାରୁ ଭିନ୍ନ ରହିଥିବ । ତୁମେ ଚିନ୍ତାଗୁଡ଼ିକ ମଝିରେ ଥାଇପାର କିନ୍ତୁ ଚିନ୍ତା ତୁମର ହୋଇପାରିବ ନାହିଁ । ଏବଂ ଏହା ଧ୍ୟାନରେ ଆସିଯାଉ ଯେ ମୁଁ ବିଚାର ନୁହେଁ, ସେତେବେଳେ ବିଚାରର ପ୍ରାଣ ଛିଡ଼ିବାକୁ ଆରମ୍ଭ କରିଥାଏ । ବିଚାର ନିର୍ଜୀବ ହେବାରେ ଲାଗିଥାଏ । ବିଚାର ଗୁଡ଼ିକର ଜୀବନ ଏଇଥିରେ ରହିଥାଏ ଯେତେବେଳେ ଆମେ ଏୟା ବୁଝିଥାଉ ଯେ ବିଚାର ହେଉଛି ମୋର । କୌଣସି ବିଚାର ତୁମର ନୁହେଁ, ସବୁ ବିଚାର ହେଉଛି ତୁମ ଠାରୁ ଅଲଗା, ଦୃଶ୍ୟ କେବଳ । ତାକୁ ନିରୀକ୍ଷଣ କରିବା ହିଁ ତା'ର ମୃତ୍ୟୁ ହେବ । ବିଚାରଗୁଡ଼ିକୁ ସଜାଗ ହୋଇ ଦେଖିଦେଲେ ବିଚାର ବନ୍ଦ ହୋଇଯାଇଥାଏ । ସେତେବେଳେ ଏୟା ଜଣା ପଡ଼ିଥାଏ ଯେ କର୍ତ୍ତା ହେଉଛି ଅଲଗା ଏବଂ ଦ୍ରଷ୍ଟା ହେଉଛି ଅଲଗା । ବିଚାରଗୁଡ଼ିକର ଦ୍ରଷ୍ଟା ରହିବାକୁ ହେବ । ଆମେ ବିଚାରକ ନୁହନ୍ତି, ବିଚାରର ଦ୍ରଷ୍ଟା; ସେଥିପାଇଁ ଆମେ ଆମ ଋଷିମାନଙ୍କୁ ମନ୍ତ୍ରଗୁଡ଼ିକର ଦ୍ରଷ୍ଟା ବୋଲି କହିଥାନ୍ତି, ସ୍ରଷ୍ଟା କହିନଥାନ୍ତି । ଆମେ ବିଚାରଗୁଡ଼ିକର ଭାବାଭାବକୁ ଦେଖିବା । ତୁମ ଭିତରେ ଦୁଇଟି ଧାରା ହେବା ଉଚିତ୍ । ଗୋଟିଏ ହେଉଛି ବିଚାରର ଓ ଅନ୍ୟଟି ହେଉଛି ଦର୍ଶନର, ଦେଖିବାର । ସାଧାରଣ ଲୋକ ଭିତରେ ଦ୍ରଷ୍ଟାର ଭାବ ରହିନଥାଏ । ସେଇଠି ବିଚାରର ଧାରା ହିଁ ରହିଥାଏ । ସେଇଠି ଦର୍ଶନ ଶୋଇଲା ଭଳି ରହିଥାଏ । ସାଧକ ଭିତରେ ଦୁଇଟି ଧାରା ଥାଏ, ବିଚାରର ଓ ଦର୍ଶନର । ଏକା ସାଙ୍ଗରେ ସାଧନା ଅର୍ଥାତ୍ ଧ୍ୟାନ କରିବାକୁ ହେବ । ଏହାକୁ ସମ୍ୟକ୍ ନିରୀକ୍ଷଣ କୁହାଯାଏ, ସ୍ମରଣ ପୂର୍ବକ ବିଚାରକୁ ଦେଖିଦେଲେ ବିଚାର ଶୂନ୍ୟ ହୋଇଯିବ । ଶରୀରର କ୍ରିୟାଗୁଡ଼ିକୁ ଦେଖବା ତ ଶରୀର ଶୂନ୍ୟ ହୋଇଯିବ ଏବଂ ଭାବଗୁଡ଼ିକୁ ନିରୀକ୍ଷଣ କରିବା ତ ଭାବ ଶୂନ୍ୟତା ଘଟିଯିବ ।

କଠୋରତା ସ୍ଥାନରେ କରୁଣା, ଘୃଣା ସ୍ଥାନରେ ପ୍ରେମକୁ ଆସିବାକୁ ଦିଅ ଏବଂ ଦ୍ୱେଷ ସ୍ଥାନରେ ମୈତ୍ରୀକୁ ଆସିବାକୁ ଦିଅ, ଭାବ ଶୁଦ୍ଧି କରିବା ପାଇଁ ।

**ବର୍ତ୍ତମାନ ଏଇ ସତ୍ୟକୁ ବି ଜାଣ ଯେ ଯିଏ ପ୍ରେମ କରୁଛି, ବା ଯିଏ ଘୃଣା କରୁଛି ତା' ପଛରେ ବି ଗୋଟିଏ ତତ୍ତ୍ୱ ରହିଛି, ଯିଏ 'ସର୍ବଧୀ ସାକ୍ଷୀ ଭୂତମ୍', ଯିଏ ପ୍ରେମ ଓ ଘୃଣାକୁ ବି ଦେଖୁଛି, ସିଏ କେବଳ ଜାଣୁଛି, ସିଏ ନା ଘୃଣା କରିଥାଏ ନା ପ୍ରେମ କରିଥାଏ, ସିଏ ହେଉଛି କେବଳ ସାକ୍ଷୀ, ସିଏ ହିଁ ତୁମେ । ତତ୍ତ୍ୱମସି । ସିଏ ଦେଖିଥିଲା ଯେ କେବେ ସିଏ ଘୃଣା କରିଥିଲା, କେବେ ସିଏ ପ୍ରେମ କରିଥିଲା କିନ୍ତୁ ସିଏ, ଯିଏ ସବୁ ଭିତରେ ଅଛି, ସବୁ ପଛରେ ଅଛି, ସିଏ ହେଉଛି କେବଳ ସାକ୍ଷୀ, ସିଏ କେବଳ ଦେଖୁଛି । ସିଏ ହିଁ ତୁମେ ।**

ଯେତେବେଳେ ମନ କାହାକୁ ଘୃଣା କରିଥାଏ, ସେତେବେଳେ କ'ଣ ମନ ଭିତରେ କାହାକୁ ଏୟା ଜଣାପଡ଼ିଥାଏ ଯେ ଇଏ ଘୃଣା କରୁଛି । ଏବଂ ଯେତେବେଳେ କାହା ସହିତ ପ୍ରେମ କରାଯାଏ ସେତେବେଳେ ତାର ଏଇ ଜ୍ଞାନ ହୋଇ ଚାଲିଥାଏ ଯେ ମନ ଏହା ସହିତ ପ୍ରେମ ପାଇଁ ବାହାରି ପଡ଼ିଛି । ଯାହାକୁ ଜଣା ପଡ଼ିଥାଏ ଯେ ମନ ରାଗ-ଦ୍ୱେଷ, ପ୍ରେମ-ଘୃଣା, ସୁଖ-ଦୁଃଖ କରୁଛି, ସିଏ ସେସବୁର ପଛରେ ଅଛି । ସିଏ ହିଁ ଆମେ, ସିଏ ହିଁ ଆତ୍ମା । ଶରୀର, ବିଚାର ଏବଂ ଭାବ ପଛରେ ଯିଏ ଅଛି, ସିଏ ହେଉଛି ଆତ୍ମା, ସିଏ ହିଁ ମୁଁ । ପରମାତ୍ମାଙ୍କୁ ସେଥିପାଇଁ ନେତି-ନେତି କୁହାଯାଏ, କାରଣ ନାଁ ସିଏ ହେଉଛନ୍ତି ବିଚାର, ନାଁ ସିଏ ଭାବ, ନାଁ ସିଏ ଦେହ । ବରଂ ସିଏ ହେଉଛନ୍ତି ଏସବୁର ସାକ୍ଷୀ, ପ୍ରକାଶକ । ଯେଉଁଠି କିଛି ହେଲେ ବି ବାକୀ ରହିଯାଏ ନାହିଁ । ମନା କରୁ କରୁ ଯାଇ ଯିଏ ଶେଷରେ ରହିଯାନ୍ତି, ସିଏ ହେଉଛନ୍ତି ଦ୍ରଷ୍ଟା, ସିଏ ସାକ୍ଷୀ, ସିଏ ଆତ୍ମା, ସିଏ ହେଉଛ ତୁମେ ।

ତେଣୁ ଭାବର ଧାରା ପ୍ରତି ବି ଦ୍ରଷ୍ଟାର ବୋଧ ରଖିବାକୁ ହେବ, ଏହାଦ୍ୱାରା ଭାବର ଶୂନ୍ୟତା ଘଟିଯିବ ।

ଦେହର ଶୂନ୍ୟତା, ବିଚାରର ଶୂନ୍ୟତା, ଭାବର ଶୂନ୍ୟତାକୁ ଯିଏ ଅତିକ୍ରମ କରିଯାଇଥାଏ ତାକୁ ସାକ୍ଷୀ ମିଳିଯାଇଥାଏ, ତାକୁ ଲକ୍ଷ୍ୟ ମିଳିଗଲା ଏବଂ ଯିଏ ଏଇ ତିନୋଟି ଭିତରୁ କୌଣସି ଗୋଟିଏ ଭିତରେ ବନ୍ଧା ହୋଇ ରହିଯାଏ, ସିଏ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରେ ନାହିଁ, ଯେମିତି ବନ୍ଧା ହୋଇଥିବା ନଉକା, ବନ୍ଧା ହୋଇଥିବା ପଶୁ, ବନ୍ଧା ହୋଇଥିବା ପକ୍ଷୀ, ବନ୍ଧା ହୋଇଥିବା ମନୁଷ୍ୟ ।

ନାଆକୁ ଖୋଲି ଦେବା ଯଦି ପବନ ଓ ଲହରୀ ବି ତାକୁ ଆଗକୁ ବଢ଼ାଇ ନେବେ, କିନ୍ତୁ ବନ୍ଧା ହୋଇଥିବା ନାଆ ସେଇଠି କୂଳରେ ଧକ୍‌କା ଖାଇ ଖାଇ ଦିନେ ଭାଙ୍ଗିଯିବ ।

ତୁମ ମନର ଦଶା ବି ସେହିପରି । ସିଏ ବିଚାର ସହିତ ବନ୍ଧା ହୋଇଛି, ଶରୀର ସହିତ ବନ୍ଧା ହୋଇଛି, ଭାବ ସହିତ ବନ୍ଧା ହୋଇଛି । ଗୋଟିଏ ନୁହେଁ ଅନନ୍ତ ଜନ୍ମ ଧରି ଚଲାଉ ଥାଅ, ବନ୍ଧା ହୋଇଥିବା ନଉକା ସେଇଠି ଧକ୍କା ଖାଇ ଚୂର୍ଣ୍ଣ-ବିଚୂର୍ଣ୍ଣ ହେବ, ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବ ନାହିଁ । ଆମେ ସେଇଠି ବନ୍ଧା ହୋଇଛନ୍ତି, ଯେଉଁଠୁ ଆରମ୍ଭ କରିଥିଲେ । ଏହିଭଳି ହୋଶ୍ କୌଣସି ସଦ୍‌ଗୁରୁଙ୍କ କୃପା ଯୋଗୁ ହିଁ ଆସିପାରିବ । ନଉକାକୁ ଖୋଲି ଶିଖିବା ଜରୁରୀ, ଅନ୍ୟଥା ବନ୍ଧା ହୋଇଥିବା ନଉକା ସାଙ୍ଗରେ ଯେତେ ପରିଶ୍ରମ କରନା କାହିଁକି ତାହା କେବଳ ପରିଶ୍ରମ ମାତ୍ର ହୋଇ ରହିଯିବ ।

ନାମ, ଜାତି, ଆଶ୍ରମର ବନ୍ଧନକୁ ସ୍ୱୀକାର କରିନେବା ବହୁତ ସହଜ କିନ୍ତୁ ଏମାନଙ୍କୁ ଛାଡ଼ିବା ବହୁତ କଠିନ । ତୁମେ ନଉକା ଖୋଲିଦିଅ, ତା'ପରେ ପରମାତ୍ମାଙ୍କ ପବନ ତୁମକୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେବ । ପରମାତ୍ମାଙ୍କ ପବନ ହେଉଛନ୍ତି ସଦ୍‌ଗୁରୁ । ସିଏ ପରମାତ୍ମାଙ୍କ ବାଣୀ ମହାବାକ୍ୟ ଶୁଣାଇ, ସ୍ୱରୂପରେ ପହଞ୍ଚାଇ ଦେବେ, ପୁନଶ୍ଚ ତୁମକୁ ଆଉ ସାଧନଗୁଡ଼ିକର ନଉକା ଚଲାଇବାକୁ ପଡ଼ିବ ନାହିଁ ।

ଦେହ ଶୁଦ୍ଧି, ବିଚାର ଶୁଦ୍ଧି ଏବଂ ଭାବ ଶୁଦ୍ଧି ହୋଇଗଲେ ଦେହ ଶୂନ୍ୟତା, ବିଚାର ଶୂନ୍ୟତା, ତଥା ଭାବ ଶୂନ୍ୟତା ଘଟିଯାଇଥାଏ । ଏଇ ତିନୋଟିର ଶୁଦ୍ଧି ଏବଂ ଶୂନ୍ୟତା ହେବାର ପରିଣାମ ହେଉଛି ସମାଧି ।

ଯିଏ ଗଭୀରତା ଭିତରେ ପ୍ରବେଶ କରିବ, ସିଏ ମୋତି ନେଇ ଉପରକୁ ଉଠିବ । ଯିଏ ଖାଦାନକୁ ଖୋଳିବ, ସିଏ ହୀରା, ନିଲମ୍, ପାନ୍ନା, ପୁଖରାଜ, ଲାଲ୍‌କୁ ପାଇବ । ଯିଏ ନିଜ ଭିତରେ ଖୋଜିବ ସିଏ ପରମାତ୍ମାଙ୍କୁ ପାଇବ ।

ଯାହାଙ୍କ ଭିତରେ ଚୈତ୍ୟନତା ଅଛି, ବିବେକ ଅଛି, ସିଏ ସତ୍ୟକୁ ନଜାଣିବା ଆଗରୁ ଯଦି ପ୍ରାଣ ଛାଡ଼ି ଦିଅନ୍ତି, ତେବେ ଏହା ହେଉଛି ତାଙ୍କର ନିଜ ପ୍ରତି ବ୍ୟକ୍ତିଗତ ଅପମାନ ଯେ ସିଏ ସ୍ୱୟଂକୁ ନଜାଣି ଶେଷ ହୋଇଗଲେ । ତେଣୁ ପ୍ରତ୍ୟେକଙ୍କ ଭିତରେ ଏଇ ସଂକଳ୍ପ ଭରି ହେଇଯିବା ଉଚିତ୍ ଯେ ମୁଁ ସତ୍ୟକୁ ଜାଣିଲା ପରେ ବିଶ୍ରାମ ନେବି, ସ୍ୱୟଂକୁ ଜାଣିକରି ନିଶ୍ଚିନ୍ତ ରହିବି । ସହଜ ସମାଧିକୁ ପ୍ରାପ୍ତ କରି ରହିବି । ସିଏ ଖୋଜିବାରେ ନାହାଁନ୍ତି, ସିଏ ଖୋଜୁଥିବା ଲୋକ ଭିତରେ ଅଛନ୍ତି ।

ପାତ୍ରତା, ଅଧିକାରର ବିଚାରକୁ ଛାଡ଼ିଦିଅ । ପରମାତ୍ମା କୌଣସି ସାଂସାରିକ ବସ୍ତୁ ନୁହଁନ୍ତି ଯେ ତୁମେ ଦାମ୍ ଦେଇ ତାକୁ ନେଇ ଆସିବ । ପରମାତ୍ମା କୌଣସି ଡବାରେ ରଖିବା ଭଳି ବସ୍ତୁ ନୁହଁନ୍ତି ଯେ ତୁମେ ତା'ର ମୂଲ୍ୟ ଦେଇଦେବ ଏବଂ ନେଇ ଆସିବ ।



## ।। କେବେ ହେଲେ ଭୁଲ ନାହିଁ ।।

ରାତିରେ ଶୋଇବା ପୂର୍ବରୁ ପ୍ରତ୍ୟେକଙ୍କ ଠାରୁ କ୍ଷମା ମାଗିନିଅ । କିଏ ଜାଣିଛି କାଲି ସକାଳେ ଶରୀର ରହିବ ନା ନାହିଁ । ପ୍ରଭୁଙ୍କୁ ସ୍ମରଣ କରି ଶୁଅ । ଯାହାଙ୍କ ପ୍ରତି ବୈରଭାବ, ବିରୋଧ ରହିଛି ତାଙ୍କ ଠାରୁ କ୍ଷମା ମାଗିନିଅ । ନିଜର ସୋଽହଂ ମନ୍ତ୍ର ଜପ କରି ଶୁଅ ।

ଯଦି ଆମକୁ ଆଜି ଜଣାପଡ଼ିଯାଏ ଯେ ଆଜି ହିଁ ହେଉଛି ମୋର ଏଇ ଶରୀରର, ଜୀବନର ଅନ୍ତିମ ଦିନ, ତେବେ କ'ଣ ତୁମେ ଚୋରୀ କରିବା ପାଇଁ ଚିନ୍ତା କରିବ ? କୌଣସି ପ୍ରକାର ପାପ କର୍ମ କରିବା ପାଇଁ ଭାବିବ ? କଦାପି ନୁହେଁ । ସେଇ ଦିନ ତ ଧର୍ମ କାର୍ଯ୍ୟ କରିବା ପାଇଁ ଇଚ୍ଛା ହେବ । ମୃତ୍ୟୁକୁ ଦେଖି ଧର୍ମ ବଢ଼ିଥାଏ ।

ସେଥିପାଇଁ ଏଇ ପ୍ରାର୍ଥନା କରି ଶୋଇଯାଅ ଯେ ହେ ପ୍ରଭୁ ! ଯଦି ତୁମେ ମୋତେ କାଲିର ସୂର୍ଯ୍ୟ ଆଲୋକ ଦେଖାଇଦେଲ ତେବେ ମୁଁ ତୁମକୁ ନମସ୍କାର କରିବାକୁ ଯିବି । ଏବଂ ଯଦି କାଲିର ସୂର୍ଯ୍ୟ ଦେଖିବା ପାଇଁ ମୋତେ ଯୋଗ୍ୟ ମଣିଲ ନାହିଁ ଏବଂ ମୃତ୍ୟୁ ହୋଇଗଲା ତେବେ ମୋର ଏଇ ଅନ୍ତିମ ପ୍ରଣାମ ସ୍ୱୀକାର କର । ଏହି ଭଳି ଯଦି ପ୍ରତିଦିନ ମୃତ୍ୟୁକୁ ଜିତିବାର ପ୍ରସ୍ତୁତି ହୋଇଚାଲିଥିବ, ତେବେ ଦିନେ ଏଇ ମୃତ୍ୟୁ ମହାମୃତ୍ୟୁ, ମହୋତ୍ସବ ପାଲଟିଯିବ । ମୃତ୍ୟୁ ଭୟ ଉପରେ ବିଜୟ ପ୍ରାପ୍ତ ହେବ ।

ଯଦି କାଲି ସକାଳର ସୂର୍ଯ୍ୟ ଦେଖିବାକୁ ମିଳୁଥାଏ ତେବେ ପରମାତ୍ମାଙ୍କୁ ନମସ୍କାର କରି ଧନ୍ୟବାଦ ଦିଅ ଯେ, "ହେ ପ୍ରଭୁ ! ତୁମେ ମୋତେ ଆଜି ଗୋଟିଏ ସକାଳକୁ ଦର୍ଶନ କରାଇଦେଲ, ସେଥିପାଇଁ ମୁଁ ସଂକଳ୍ପ କରୁଛି ଯେ ଆଜିର ଦିନରେ ମୁଁ ସମ୍ପୂର୍ଣ୍ଣ ସଚ୍ଚୋଟତା ସହିତ କାର୍ଯ୍ୟ କରିବି ।

କାହାକୁ ମନ, ବଚନ, କର୍ମରେ ଦୁଃଖୀ କରିବି ନାହିଁ । ଜନ କଲ୍ୟାଣ ପାଇଁ କର୍ମ କରିବି । ଦୀନ ଦୁଃଖୀମାନଙ୍କର ସେବା କରିବି ।''

ମୃତ୍ୟୁ ହେଉଛି ପରମାତ୍ମାଙ୍କ ଘରକୁ ଯାଇ ଜୀବନ ସାରାର ହିସାବ ଦେବାର ଦିନ । ହିସାବ ଠିକ୍ ଥିଲେ ଇନକମ୍ ଟ୍ୟାକ୍ସ ବିଭାଗକୁ ଡରିବାର ନଥାଏ । ହିସାବ ଠିକ୍ ନଥିଲେ ତ ଡର ରହିଥାଏ । ଯିଏ ମୃତ୍ୟୁ ଆସିବା ପୂର୍ବରୁ ଅମୃତକୁ ଜାଣିନେଲା, ତା'ର ମୃତ୍ୟୁ ପାଇଁ ଭୟ ରହିନଥାଏ । ଦୋକାନକୁ ଗ୍ରାହକ କେତେବେଳେ ହେଲେ ବି ଆସିପାରିବ, ତା'ର କୌଣସି ଭରସା ନାହିଁ । ସେହିପରି ସବୁ ସମୟରେ ପ୍ରସ୍ତୁତ ରୁହ, ମୃତ୍ୟୁ ଆସିବା ଉପରେ ବି କୌଣସି ଭରସା ନାହିଁ । ଅନ୍ୟର କୋକେଇ ବାହାରୁଥିବାର ଦେଖି ଭିତରେ ନିଜ ମୃତ୍ୟୁର ବୋଧ ଜାଗ୍ରତ କର ଯେ ଦିନେ ମୋର ବି କୋକେଇ ବାହାରିବ । ତାକୁ ମରିଥିବାର ଦେଖି କାନ୍ଦି ପକାଅ ନାହିଁ ।

ମୃତ୍ୟୁବୋଧ ଦ୍ୱାରା ଜୀବନକୁ ସମ୍ଭାଳି ହୁଏ, ପାପ ଗୁଡ଼ିକ ଠାରୁ ବଞ୍ଚି ହୋଇଥାଏ । ମୃତ୍ୟୁକୁ ବିସ୍ମରଣ କରୁଥିବା ଲୋକଙ୍କ ଦ୍ୱାରା ହିଁ ଅଧିକ ପାପ କର୍ମ ହୋଇଯାଇଥାଏ । ଯେଉଁ ଜମି, ଘର, ନୋଟ୍ ଉପରେ ଆଜି ତୁମର ଅଧିକାର ଅଛି, ତୁମ ଆଗରୁ ସେଇ ଜମି, ଘର, ଟଙ୍କା ଉପରେ ହଜାର ହଜାର ଲୋକ ଅଧିକାର ଦେଖାଇଥିଲେ । ହଜାର ହଜାର ଲୋକ ତାକୁ ନିଜର ପକେଟ୍, ଲକର୍, ଟ୍ରେଜେରୀ, ଆଟାଚୀରେ ରଖିଥିଲେ କିନ୍ତୁ ଜମି, ଘର, ଟଙ୍କା କେବେହେଲେ କାହାର ହୋଇନଥାଏ, ସମସ୍ତେ ଏଇଠି ମଲା ପରେ ତାକୁ ଛାଡ଼ି ଚାଲିଯାନ୍ତି । ଆସବାବପତ୍ର ଏଇଠି ପଡ଼ି ରହିଥାଏ । ଆଖି ବନ୍ଦ କରୁ କରୁ ସବୁର ଲୁଟ୍ ହୋଇଯାଏ ।

ଘର ହେଉଛି ଧର୍ମଶାଳା ଏବଂ ତୁମେ ହେଉଛ ଜଣେ ଯାତ୍ରୀ, ସେଇଠି ବିଶ୍ରାମ ନେଇ ନିଜର କାମ କରନିଅ ଏବଂ ଆଗକୁ ବଢ଼ିଚାଲ ।

ଦୋକାନୀ ଧନ କମାଇବା ପାଇଁ ପାଞ୍ଚ ଇନ୍ଦ୍ରିୟର ବିଷୟକୁ ତ୍ୟାଗ କରି ଦେଇଥାଏ । ତା'ପରେ ନା ତାକୁ ନିଦ ଆସିଥାଏ, ନା ଭୋକ-ଶୋଷ ଲାଗିଥାଏ, ନା ନାଚ, ଗୀତ ଭଲ ଲାଗିଥାଏ । ସିଏ ଗ୍ରାହକକୁ ଛାଡ଼ିନଥାଏ । ସେହିପରି ତୁମେ ବି ସ୍ୱଧର୍ମ କମାଇବା ପାଇଁ, ପାଞ୍ଚ ଇନ୍ଦ୍ରିୟର ବିଷୟକୁ ଛାଡ଼ିଦେଇ ପ୍ରାପ୍ତ କରିନିଅ ।

ଶରୀର ହେଉଛି ଘର, ମାଲିକ ହେଉଛି ଜୀବ । ଶରୀର, ଘର ଠାରୁ ମୂଲ୍ୟବାନ ଜୀବ ହେଉଛି ମାଲିକ । ମାଲିକର ଅଭାବରେ ଶରୀର ମୁର୍ଦ୍ଦାର ଭଳି ପଡ଼ି ରହିଥାଏ । ତାକୁ କେହି ଇଜ୍ଜତ, ସମ୍ମାନ ଦେଇନଥାନ୍ତି । ଜଡ଼ ଠାରୁ ମମତା ହଟାଇ ନେଇ, ସଚ୍ଚିଦାନନ୍ଦ ଚେତନ ଆତ୍ମାରେ ସୋଽହମ୍ ଭାବ ଜଗାଅ । ଯେଉଁ ଚୈତନ୍ୟ ଅଛି ଏଇ ମୃତ ଶରୀରରେ, ସିଏ ହିଁ ହେଉଛି ଆମର ନିଜ ସ୍ୱରୂପ ।

ମୃତ୍ୟୁରୁ ରକ୍ଷା ପାଇବା ପାଇଁ ଚାରୋଟି କଥା ସର୍ବଦା ମନେରଖ :

(୧) ମୁଁ ହେଉଛି ମରଣଧର୍ମା ଶରୀର । ମୋର ମରିବା ସୁନିଶ୍ଚିତ, ତେଣୁ ମୋହ କାହିଁକି କରିବି ?

(୨) ମୁଁ ହେଉଛି ବିୟୋଗଧର୍ମା ଶରୀର, ଧନ, ପରିବାର, ଯାହା ସହିତ ବି ସଂଯୋଗ ହେଉଅଛି, ସେସବୁ ଚାଲିଯିବ, ତେଣୁ ମୋହ କାହିଁକି ?

(୩) ମୁଁ ହେଉଛି ରୋଗଧର୍ମା ଶରୀର । ମୋ' ଠାରେ ଭୟଙ୍କର ରୋଗ ପ୍ରକଟ ହୋଇପାରେ । ହସ୍‌ପିଟାଲ୍‌ରେ ଦେଖ ମୁଣ୍ଡ, କାନ, ପେଟ, ଗୋଡ଼ ଭାଙ୍ଗିରୁଜି ପଡ଼ିରହିଛି ।

(୪) ମୁଁ ହେଉଛି ଜରାଧର୍ମୀ ଶରୀର । ଏଇ ରୂପ ସବୁବେଳେ ରହିବ ନାହିଁ ।

ଏଇ ଚାରିଟି ଚିନ୍ତନ ଜୀବନରେ ଆସକ୍ତିର ଡୋରକୁ ଛିଣ୍ଡାଇ ଦେଇଥାଏ ।

ଯଦି ଆମେ ବାସନାର ଦଉଡ଼ିକୁ ଛିଣ୍ଡାଇ ଦିଅନ୍ତି, ତେବେ ମନ ଆମର ସ୍ୱାମୀ ହୋଇଯିବ ନାହିଁ, ଆମେ ମନର ସ୍ୱାମୀ ହୋଇ ରହିବା ।

ଆଖିନଥିବା ଅନ୍ଧ ସୁଖୀ ହୋଇପାରେ କିନ୍ତୁ ବିଚାରର ଅନ୍ଧ କେବେ ହେଲେ ବି ସୁଖୀ ହୋଇପାରିବ ନାହିଁ । ବିବେକ ବିଚାର ନଥିବା ଅନ୍ଧକୁ ସାକ୍ଷାତ୍ ବ୍ରହ୍ମା ବି ସୁଖୀ କରିପାରିବେ ନାହିଁ ।

ମନୁଷ୍ୟ ହେଉଛି ବିନା ଜ୍ଞାନରେ ଅନ୍ଧ ଏବଂ ଜ୍ଞାନ ହେଉଛି ବିନା କ୍ରିୟାରେ ପଙ୍ଗୁ । ବସ୍ତୁକୁ ଯଥାର୍ଥ ଭାବରେ ଦେଖିବାକୁ ସମ୍ୟକ ଦର୍ଶନ କୁହାଯାଏ । ତତ୍ତ୍ୱଜ୍ଞାନ ଉପରେ ଶ୍ରଦ୍ଧା ରଖିବା, ଆତ୍ମାର ନିରୀକ୍ଷଣ କରିବା, ଅନାତ୍ମ ବୁଦ୍ଧିକୁ ଦୂର କରିବାକୁ ସମ୍ୟଗ୍ ଚରିତ୍ର କୁହାଯାଏ । ଏହା ହେଉଛି ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ସାଧନା ।

ମନ ଅଶାନ୍ତି, ଚିନ୍ତିତ, କ୍ରୋଧିତ ଦେଖା ଯାଉଥିଲେ ସିଧା ହୋଇ ବସି ଆଖି ବନ୍ଦ କରିଦିଅ ଶରୀରର ସ୍ଥିତିକୁ ଚିନ୍ତାଶୂନ୍ୟ କରି ରଖ, ମନ ତତ୍‌କ୍ଷଣାତ୍ ଶାନ୍ତି ପାଇବ । ୧୦ ମିନିଟ୍ ଏମିତି କର, କେବଳ ଶ୍ୱାସକୁ ଭିତର-ବାହାର ହେଉଥିବାର ଜାଣ । ପୁନଶ୍ଚ ୧୦ ମିନିଟ୍ ସ୍ୱୀକାର କରିନେବା ପାଇଁ ବସିଯାଅ ଯାହା ହେଉଛି ଆବାଜ୍, ଚିତ୍କାର, କାନ୍ଦିବା, ଲାଭ-ହାନି ଇତ୍ୟାଦିକୁ ସ୍ୱୀକାର କରିନିଅ । ପୁଣି ୧୦ ମିନିଟ୍ ପାଇଁ 'ମୁଁ ଅଛି' ଏହି ଭାବ ବି ନଷ୍ଟ ହୋଇଯାଉ, ଏହିଭଳି ଭାବରେ ବସି ରହିବ ତ ସାକ୍ଷୀ ପ୍ରକଟ ହୋଇଯିବ ।

ଯେଉଁଦିନ ମୃତ୍ୟୁ ଆସିବ ସେଦିନ ସିଏ ତୁମଠାରୁ ସବୁ ଛଡ଼େଇନେବ । ତେଣୁ ଏବେଠୁ ଦାନ ଦେବାର ମଜା କାହିଁକି ନେଉନାହଁ ?

ଯିଏ ଧନକୁ ପରମାର୍ଥରେ ଲଗାଇ ପାରେ, ସିଏ ତା'ର ମାଲିକ ବୋଲି ସିଦ୍ଧ ହୋଇଥାଏ । ଯିଏ ଧନକୁ ଖର୍ଚ୍ଚ କରି ନପାରିଲା, ସିଏ ହେଉଛି ସେଇ ଧନର ଚୌକିଦାର ଭଳି, ଯେମିତି ବ୍ୟାଙ୍କ ସମ୍ପତ୍ତିକୁ ଜଗି ପହରାବାଲା ବନ୍ଧୁକ ଧରି ଛିଡ଼ା ହୋଇଥାଏ । ମାଲିକ ତ ହେଉଛି ସିଏ, ଯିଏ ଦେବା ଜାଣିଥାଏ, ଯିଏ ଦେବାପାଇଁ ସମର୍ଥ । ଦିଆଯାଇଥିବା ଜିନିଷ ହିଁ ବଞ୍ଚିରହିଥାଏ । ଯିଏ ବଞ୍ଚାଇ ରଖିଲା ସିଏ ହରାଇଲା ଏବଂ ଯିଏ ଏଇଠି ଦେଇଦେଲା, ସିଏ ଆଗକୁ ପାଇଲା, ସିଏ ବଞ୍ଚିଗଲା ।

ଯାହାଙ୍କ ଜୀବନରେ ଧନର ବାସନା ରହିଲା ନାହିଁ, ସିଏ କ'ଣ ଗରିବ ହୋଇପାରେ ।

ପ୍ରତ୍ୟେକ ସନ୍ଥଙ୍କର ଅତୀତ ଅଛି ଏବଂ ପ୍ରତ୍ୟେକ ପାପୀର ଭବିଷ୍ୟତ ଅଛି । ସନ୍ଥଙ୍କର ଅତୀତ ପାପପୂର୍ଣ୍ଣ ଥିଲା ଓ ପାପୀଙ୍କ ଭବିଷ୍ୟତ ଅଛି, ସିଏ ସନ୍ଥ ହୋଇପାରିବେ । ତୁମେ ଯାହାଙ୍କର ବି ସମ୍ମାନ କରୁଥାଅ ତାହା ତୁମେ ହେବାକୁ ଚାହୁଁଥାଅ, ସେଥିପାଇଁ ତୁମେ ମହାତ୍ମାଙ୍କୁ ସମ୍ମାନ କରିଥାଅ । ଯାହାର ତୁମେ ନିନ୍ଦା କରିଥାଅ, ତାହାର ଅର୍ଥ ହେଉଛି ଏୟା ଯେ, ତୁମେ ସେମିତି ହେବାକୁ ଚାହିଁନଥାଅ ।

ଯଦି ସଂସାର ୧୦୦ ପ୍ରତିଶତ ଦେଖାଯାଉଛି, ତେବେ ଆତ୍ମା ଶୂନ୍ୟ ହୋଇଗଲା । ଯଦି ସଂସାର ୫୦ ପ୍ରତିଶତ, ତେବେ ଆତ୍ମା ୫୦ ପ୍ରତିଶତ ହୋଇଗଲା । ଯଦି ଆତ୍ମା ୯୦ ପ୍ରତିଶତ ଅଛି, ତେବେ ସଂସାର ୧୦ ପ୍ରତିଶତ ରହିଗଲା କାମ ଚଳାଇବା ପାଇଁ । କାରଣ ବର୍ତ୍ତମାନ ସଂସାର ସ୍ୱପ୍ନ ହୋଇଗଲା, ଆତ୍ମା ସତ୍ୟ ଭଳି ପ୍ରତୀୟମାନ ହେବାକୁ ଲାଗିଲା । ଯେଉଁଦିନ ୯୯ ପ୍ରତିଶତ ଆତ୍ମା ଓ ୧ ପ୍ରତିଶତ ସଂସାର ରହିଗଲା, ସେଇଦିନ ତୁମେ ଆତ୍ମବାନ ହୋଇଗଲ, ପୁଣି ଆତ୍ମା ୧୦୦ପ୍ରତିଶତ ଓ ସଂସାର ଶୂନ୍ୟ ହୋଇଗଲା ।

ବାହାରୁ ଯାହା ମିଳେ, ତାହା ଦୁଃଖ ହିଁ ହେବ, ହୁଏତ ତୁମେ ତାକୁ ସୁଖବୋଲି ସ୍ୱୀକାର କରୁଥାଅ ପଛକେ, ମାତ୍ର ଯାହା ଭିତରୁ ମିଳିଥାଏ ତାହା ହେଉଛି ଆନନ୍ଦ, ସିଏ ହେଉଛି ସାକ୍ଷୀ, ସିଏ ହିଁ ଆତ୍ମା । ଆନନ୍ଦ ମିଳଥାଏ ତାଙ୍କୁ, ଯିଏ ଭିତରକୁ ଫେରନ୍ତି, ସାକ୍ଷୀ ଭିତରକୁ ଆସନ୍ତି, ଦ୍ରଷ୍ଟାରେ ଅଟକି ରହନ୍ତି । ଆନନ୍ଦର କୌଣସି ସମ୍ବନ୍ଧ ହିଁ ନାହିଁ ବାହାର ଜଗତ ସହିତ ।

ବୈରଭାବ ହେଉଛି ନରକ । ଆଉ କେଉଁଠି ନରକ ନାହିଁ । ଶତ୍ରୁତା ଭିତରେ ଜୀଇଁ ରହିବା ହିଁ ନରକ । ଯେତିକି ଶତ୍ରୁତା ତୁମେ ତୁମ ଚାରିପାଖରେ ବଢ଼ାଇ ଥାଅ, ସେତିକି ତୁମର ନରକ ବଡ଼

ହୋଇ ଯାଇଥାଏ । ଯେତିକି ଅଧିକ ମିତ୍ରତା ତୁମ ନିଜ ଚାରିପାଖରେ ବନାଇଥାଅ, ସେତିକି ସ୍ୱର୍ଗୀୟ ଆନନ୍ଦ ତୁମ ଜୀବନର ଚତୁର୍ଦ୍ଦିଗରୁ ବରଷିବାରେ ଲାଗିଥାଏ । ମିତ୍ରମାନଙ୍କ ଗହଣରେ ବଞ୍ଚି ରହିବାର ନାମ ହେଉଛି ସ୍ୱର୍ଗ ଏବଂ ଶତ୍ରୁତା ଭାବ ରଖି ଜୀଇଁବାର ନାମ ହେଉଛି ନରକ । ଏବଂ ଏହା ତୁମ ଉପରେ ନିର୍ଭର କରୁଛି ଯେ ତୁମେ କେଉଁ ବାତାବରଣରେ ବଞ୍ଚିବାକୁ ଚାହୁଁଛ । ନରକ ଓ ସ୍ୱର୍ଗ କୌଣସି ଭୌଗୋଳିକ ଜାଗା ନୁହେଁ ।

ଯେତେବେଳେ ତୁମେ ସମଗ୍ର ସଂସାରକୁ ମିତ୍ର ଭଳି ଦେଖିଥାଅ, ସେତେବେଳେ ତୁମ ପାଇଁ ଜଗତ ମିତ୍ର ହୋଇଗଲା । ସିଏ ହୁଏତ ତୁମକୁ ମିତ୍ର ଭଳି ମାନନ୍ତୁ ବା ନମାନନ୍ତୁ, ଏହା ହେଉଛି ତାଙ୍କର ମନର ଅବସ୍ଥା, ତାଙ୍କ ପାଇଁ ଏହା ଦୁଃଖ ଅଥବା ସୁଖ ଭଳି ହେବ, କିନ୍ତୁ ତୁମକୁ କେହି ପୀଡ଼ା ଦେଇପାରିବେ ନାହିଁ । ବୈର ଭାବ ଦ୍ୱାରା ବୈରତା କେବେ ହେଲେ ଶାନ୍ତ ହୋଇପାରିବ ନାହିଁ । ନିର୍ବୈର ଭାବ ଦ୍ୱାରା ବୈରଭାବ ଶାନ୍ତ ହୋଇଥାଏ । ମନର ଏଇ ଭଳି ନିର୍ବୈର ଅବସ୍ଥା ଜ୍ଞାନୀଙ୍କର ରହିଥାଏ । ଯାହାଙ୍କ ମନରେ ବୈରଭାବ ଅଛି, ତାଙ୍କର ଅଶାନ୍ତି ବିଷୟରେ ସିଏ ଜାଣନ୍ତି ।

ଦାନ କରୁଣା ଭାବ ଦ୍ୱାରା ହେବା ଉଚିତ୍, ନିଜକୁ ଦାନୀ ବୋଲାଇବା, ନିଜର ପ୍ରଶଂସା ପାଇଁ ହେବା ଉଚିତ୍ ନୁହେଁ । ଅହଂକାର ପାଇଁ, ଯଶ ପାଇଁ ଦାନ କରିଦେଲ ଯଦି ତେବେ ତାହା ପାପ ହୋଇଗଲା, ବନ୍ଧନର କାରଣ ହୋଇଗଲା । ଯଦି ସକାମ ଭାବ [illegible] କଲ, ଯଦି ଫଳର ଇଚ୍ଛା ରଖି କଲ ତେବେ ତାହା ବନ୍ଧନ ଭଳି ହୋଇଗଲା ।

ବର୍ତ୍ତମାନରେ ଯିଏ ଜୀଇଁ ରହୁନାହିଁ, ସିଏ କେବେହେଲେ ଆନନ୍ଦମୟ ଜୀବନ ଯାପନ କରିପାରିବ ନାହିଁ । ଯିଏ ବର୍ତ୍ତମାନରେ ଥାଇ ବି ଅତୀତ ଏବଂ ଭବିଷ୍ୟତର ଚିନ୍ତନ କରୁଛି, ସିଏ ବର୍ତ୍ତମାନକୁ ଦୁଃଖରେ ପରିଣତ କରିଦେଉଛି ।

ବୁଦ୍ଧ କହନ୍ତି – ତୁମେ କେବଳ ନିଜର ଚିନ୍ତା କର । ତୁମ ଉପରେ ତୁମ ବ୍ୟତୀତ ଅନ୍ୟ କାହାର ଦାୟିତ୍ୱ ନାହିଁ । ଯଦି ତୁମେ ଉତ୍ତରଦାୟୀ ହୁଅ, ତେବେ ହେବ ନିଜ ପାଇଁ । ତୁମେ ଏଠାରୁ ଫେରିଗଲା ପରେ ପରମାତ୍ମା ପଚାରିବେ ତ କେବଳ ତୁମକୁ ପଚାରିବେ ଯେ, ତୁମକୁ ଜୀବନ ପାଇଁ ଯେଉଁ ଅବସର ଦେଇଥିଲି, ସେଇ ଅବସରରେ ତୁମେ କ'ଣ କଲ, କ'ଣ କମାଇଲ, କ'ଣ ହରାଇଲ ? ତୁମେ ଜୀବନକୁ ଖାଲି ନଷ୍ଟ କରିଦେଲ ପଶୁମାନଙ୍କ ଭଳି, ନା ସେଥିରେ ଅମୃତ ଭରିଦେଲ ? ଅନ୍ୟମାନଙ୍କ ପାଇଁ କେବେ ହେଲେ ଭାବ ନାହିଁ ଯେ ସିଏ କ'ଣ ଉଚିତ୍, କ'ଣ ଅନୁଚିତ କର୍ମ କଲେ । ତୁମେ କେବଳ ନିଜର କୃତ୍ୟ–ଅକୃତ୍ୟକୁ ଅବଲୋକନ କର ।

କଠୋର ବଚନ କୁହ ନାହିଁ, କହିଲେ ଅନ୍ୟମାନେ ବି ତୁମକୁ ସେହିପରି କଟୁବଚନ କହିବେ । କଟୁବଚନ ହେଉଛି ଦୁଃଖଦାୟକ, ତା' ବଦଳରେ ତୁମକୁ ବି ଦୁଃଖ ମିଳିବ ।

ଆମେ ଦେବା ପାଇଁ ହିଁ ଭୁଲିଗଲେ । ଯେତେବେଳେ କି ପୁଣ୍ୟକୁ ବାଣ୍ଟିଦେଲେ ହିଁ ତାହା ବଢ଼ିଥାଏ, ତାକୁ ଦବାଇ ରଖିଲେ ତାହା କମିଯାଏ । ଯଦି ଚିତ୍ତକୁ ପୁଣ୍ୟ ଦିଗରେ ନଲଗାଇଲ, ତେବେ ସିଏ ପାପ ଦିଗରେ ଲାଗିଯିବ । ଚିତ୍ତକୁ କିଛି ନା କିଛି ସାହାରା ଆବଶ୍ୟକ । ବିନା ଡାଳରେ ମାଙ୍କଡ଼ ରହିନଥାଏ, ସେହିପରି ହେଉଛି ଚିତ୍ତର ଅବସ୍ଥା, କେଉଁଠି ହେଲେ ଯାଇ ସେ ଲାଗିଯିବ ।

ଯଦି ମୃତ୍ୟୁ ନହୁଅନ୍ତା ତେବେ ଜୀବନ କୁରୂପ ହୋଇଯାଇଥାନ୍ତା । ମୃତ୍ୟୁ ନୂଆ ଉତ୍ସାହ, ନୂଆ ଶରୀର, ନୂଆ ବିଚାର ସୃଷ୍ଟି କରିଥାଏ । ମୃତ୍ୟୁ ତ ନିଶ୍ଚିତ । ତାକୁ ଭୟ କରନାହିଁ । ଜୀବନରେ ଯାହା ପାଇଁ ଆସିଛ, ଯାହା କରିବାର ଅଛି, ସେଇ ଆତ୍ମକଲ୍ୟାଣକୁ ଅବିଳମ୍ବେ କରିପକାଅ । ଏଇ ଶରୀର ତ ହେଉଛି ଦୁର୍ଗନ୍ଧ ପଦାର୍ଥ ଓ ବେମାରୀଗୁଡ଼ିକର ଘର ।

ଯିଏ ଜୀବନରେ ଧ୍ୟାନ ଓ ସମାଧିର ସାଧନା କରିଛନ୍ତି, ତାଙ୍କ ପାଇଁ ମୃତ୍ୟୁ ସହଜରେ ବସ୍ତ୍ର ପରିବର୍ତ୍ତନ କରିବା ବ୍ୟତୀତ ଆଉ ଅଧିକ କିଛି ନୁହେଁ ।

ପାପରୁ ବଞ୍ଚି ରହିବା ପାଇଁ ସର୍ବଦା ମୃତ୍ୟୁର ସ୍ମରଣ ରଖ । ସେଥିପାଇଁ ସଂସାର ପ୍ରତି ଆସକ୍ତି, ମୋହକୁ ଦୂର କରିବା ପାଇଁ ଶ୍ମଶାନ ଠାରୁ ବଡ଼ ଆଉ କିଛି ସ୍ଥାନ ନାହିଁ । ସମସ୍ତେ ମୃତ୍ୟୁ ଆସିବା ପାଇଁ 'କ୍ୟୁ'ରେ ଛିଡ଼ା ହୋଇଛନ୍ତି ।

ପ୍ରତ୍ୟେକ ଘରକୁ ଶ୍ମଶାନ ବୋଲି ଜାଣ, କାରଣ ଘରର ପ୍ରତ୍ୟେକ ବ୍ୟକ୍ତିର ପ୍ରାଣ ଘର ଭିତରେ ଥାଇ ସୁଦ୍ଧା ପ୍ରତି–ଶ୍ୱାସରେ କମି କମି ଯାଉଛି ଏବଂ କେହି କେହି ମରି ବି ଗଲେଣି । ସେଥିପାଇଁ ଘରର ନାମ ରଖୁଛ ଯଦି ତେବେ ଶ୍ମଶାନ ଠାରୁ ସୁନ୍ଦର, ଉପଯୁକ୍ତ ଆଉ କିଛି ନାମ ନାହିଁ କିମ୍ବା ଅନ୍ୟ ନାମଟି ହେଉଛି ଭୂତବଙ୍ଗଳା, ପଞ୍ଚଭୂତରେ ତିଆରି ହୋଇଥିବା ଏଇ ଶରୀର ହେଉଛି ବଙ୍ଗଳା । ତୁମରି ବାପା, ଅଜା ସମସ୍ତେ ଏଇଠି ମରିଛନ୍ତି ଏବଂ ତୁମେ ବି ଏଇଠି ମରିବ । ଏଭଳି କୌଣସି ଘର ନାହିଁ, ଯେଉଁଠୁ ମୁଠାଏ ଚାଉଳ ଆଣି ପାରିବ, ଯେଉଁଠି କେହି ମରିନାହାନ୍ତି ।

ମୃତ୍ୟୁ ହେଉଛି ଏଇ ଭବର ଅନ୍ତ ଏବଂ ଅନ୍ୟ ଭବର ଆରମ୍ଭ ଅଥବା ଏଇ ଶରୀରରେ ଶୋଇ ଅନ୍ୟ ଶରୀରରେ ଉଠିପଡ଼ିବା ହିଁ ମୃତ୍ୟୁ । ପ୍ରତିଦିନର ରାତି ହିଁ ହେଉଛି ଅଳ୍ପ ମୃତ୍ୟୁ । ଶରୀର ମୃତ ହୋଇଯିବା ହିଁ ଦୀର୍ଘ ମୃତ୍ୟୁ । ଆତ୍ମଜ୍ଞାନ ହୋଇଥିବା ବ୍ୟକ୍ତିର ମହାମୃତ୍ୟୁ ହୋଇଯାଇଥାଏ, କାରଣ ତାଙ୍କୁ ପୁଣି ଥରେ ମରିବାକୁ ପଡ଼ିବ ନାହିଁ ।

ଧର୍ମରାଜ ପୁରୁଣା ବସ୍ତ୍ର ନେଇ ନୂଆ ବସ୍ତ୍ର ପିନ୍ଧାଇଥାନ୍ତି, ଏହା ତ ଖୁସି ହେବାର କଥା, ଦୁଃଖ ତ ଅଜ୍ଞାନୀ ପାଳନ କରିଥାଏ । ମୃତ୍ୟୁ ହେଉଛି ଶାଶ୍ୱତ । ପକ୍ଷୀ ପିଞ୍ଜରା ଛାଡ଼ିଦେଲା ଭଳି ହିଁ ଶରୀର ପିଞ୍ଜରାକୁ ଛାଡ଼ି ଜୀବ ଚାଲିଯାଇଥାଏ ।

ଯେଉଁ ବ୍ୟକ୍ତିଙ୍କ ଜୀବନରୁ ମୃତ୍ୟୁର ଭୟ ଚାଲିଯାଏ, ତାଙ୍କର ସବୁ ଭୟ ଚାଲିଯାଇଥାଏ, କାରଣ ସବୁ ଭୟର ମୂଳ ହେଉଛି ମୃତ୍ୟୁ ।

ଯଦି ପାଇଗଲ ତ ଦିନେ ହଜିଯିବ, ମିଳିଗଲା ତ ପୁଣି ସିଏ ଦିନେ ଅଲଗା ହୋଇଯିବ । ଜନ୍ମନେଲ ତ ଦିନେ ମରିଯିବ । ଚଢ଼ିଗଲ ତ ଓହ୍ଲାଇବାକୁ ହେବ । ତାକୁ ପାଇଯାଅ, ଯାହାକୁ ପାଇହୁଏ ନାହିଁ, ଯିଏ ସର୍ବଦା ଅଛି ।

ମନେରଖ ! ଯଦି ତୁମେ ଅନ୍ୟକୁ ଚାକର ବନାଇବାକୁ ଚାହୁଁଛ ତେବେ ତା'ପୂର୍ବରୁ ତୁମକୁ ତା'ର ଦାସତ୍ୱକୁ ସ୍ୱୀକାର କରିବାକୁ ପଡ଼ିବ । କୁକୁର, ଚାକର, ଗାଈ, ଶୁଆକୁ ବାନ୍ଧି ରଖୁଥିବା ବ୍ୟକ୍ତି ନିଜେ ବି ସେମାନଙ୍କ ଦ୍ୱାରା ବନ୍ଧା ହୋଇଯାଇଥାଏ ।



# ।। ପ୍ରତିଦିନ ଚିନ୍ତନ କର ।।

(୧) ମୁଁ ହେଉଛି ଜରାଧର୍ମୀ (୨) ମୁଁ ହେଉଛି ବିୟୋଗଧର୍ମୀ (୩) ମୁଁ ହେଉଛି ରୋଗଧର୍ମୀ (୪) ମୁଁ ହେଉଛି ମରଣଧର୍ମୀ ।

**(୧) ମୁଁ ହେଉଛି ଜରା ଧର୍ମୀ** – ଅର୍ଥାତ୍ ମୋର ଶରୀର ଷଡବିକାରୀ ହୋଇଥିବାରୁ ଶୈଶବ, ଯୌବନ ପରେ ବାର୍ଦ୍ଧକ୍ୟ ନିଶ୍ଚୟ ଆସିବ । ସିଏ ରାଜା, ପ୍ରଜା, ସାଧୁ, ରୋଗୀ, ଭୋଗୀ ସିଦ୍ଧ କାହାକୁ ଛାଡ଼ିନଥାଏ । ମହା ଶକ୍ତିଶାଳୀ ସତ୍ତାଧାରୀ ବି ଅପାର ଧନ ଖର୍ଚ୍ଚ କରି ସୁଦ୍ଧା ଏଇ ଜରା ବ୍ୟାଧିରୁ ବଞ୍ଚିଯାଇ ପାରିବ ନାହିଁ । ବୃଦ୍ଧାବସ୍ଥାର ଚିନ୍ତନ ଶରୀରର ସୌନ୍ଦର୍ଯ୍ୟ, ଶକ୍ତିର ଅହଂକାର ଠାରୁ ରକ୍ଷା କରିଥାଏ । ଆସିକି ନଯାଏ ଏଇ ବାର୍ଦ୍ଧକ୍ୟ, ଯାଇକି ନଆସେ ସେଇ ଯୌବନ ।

**(୨) ମୁଁ ହେଉଛି ବିୟୋଗ ଧର୍ମୀ** – ଅର୍ଥାତ୍ ଯାହାର ସଂଯୋଗ ହୋଇଛି, ଯାହା ସାଧନ ଦ୍ୱାରା ମିଳିଛି, ସିଏ ନିଶ୍ଚିତ ଭାବରେ ଦିନେ ବଦଳି ଯିବ, ଚାଲିଯିବ, ନଷ୍ଟ ହୋଇଯିବ । ଶରୀରର ପ୍ରତ୍ୟେକ ଶ୍ୱାସ ନିଜର ପୂର୍ବ ରୂପକୁ ଛାଡ଼ିଦେଇ ନୂତନ ରୂପ ଧାରଣ କରୁଛି । ଧନ ସମ୍ପତ୍ତି, ପଦ, ପ୍ରତିଷ୍ଠା, ରୂପ, ବଳ, ସୌନ୍ଦର୍ଯ୍ୟ କାହାର ସବୁଦିନ ପାଇଁ ଏକାଭଳି ରହିଛି ? ପତ୍ନୀ, ପତି, ପୁତ୍ର ଜ୍ଞାତି କୁଟୁମ୍ବ ବି ଅମର ନୁହଁନ୍ତି, ତୁମେ ସେମାନଙ୍କୁ ନଛାଡ଼ିଲେ ବି ସେମାନେ ତୁମକୁ ଛାଡ଼ି ଚାଲିଯିବେ । ଦେଖ ଦାନ୍ତ, ଆଖି, କାନ, ଯୌବନ, ମୁଣ୍ଡର ବାଳ, ରୂପ ଇତ୍ୟାଦି ସର୍ବଦା କେବେହେଲେ ସାଙ୍ଗରେ ରହିଥାନ୍ତି ?

**(୩) ମୁଁ ହେଉଛି ରୋଗଧର୍ମୀ** – ଦେହ ପ୍ରତି ଆସକ୍ତିକୁ କମାଇବା ପାଇଁ ଏଇ ଚିନ୍ତନ କର ଯେ ମୋର ଶରୀର ହେଉଛି ରୋଗଗୁଡ଼ିକର ଘର, ଦେଖାଯାଉଥିବା ପ୍ରତ୍ୟେକ ଶରୀର ବି

ହେଉଛି ରୋଗର ଭଣ୍ଡାର । ସିଏ କେବଳ ପରିସ୍ଥିତିର ପ୍ରତୀକ୍ଷାରେ ରହିଛି । ମିଳିଯାଉଯାଉ ଫୁଟି ପଡ଼ିବ । ଯେମିତି ଗ୍ରୀଷ୍ମ କାଳରେ ସର୍ବତ୍ର ଶୁଖିଲା ଦେଖାଯାଉଥିବା ଭୂମି ହେଉଛି ଅନନ୍ତ ବୀଜର ଭଣ୍ଡାର, ବର୍ଷା ହେଉ ହେଉ ତାହା ପ୍ରକଟ ହୋଇଯାଏ । ଡାକ୍ତରଖାନାରେ ଯାଇ ରୋଗୀମାନଙ୍କର ବିଭିନ୍ନ ସ୍ଥିତିକୁ ଦେଖିଲେ ଅନୁମାନ କରିପାରିବ ଯେ, କେତେ ପ୍ରକାର ରୋଗରେ ଗ୍ରସ୍ତ ହୋଇ ସେମାନେ ଦୁଃଖ ଭୋଗ କରୁଛନ୍ତି । ଏଭଳି ଚିନ୍ତନ କାହା ରୂପର ଓ ନିଜ ରୂପ ଓ ବଳର ଆସକ୍ତିକୁ ଦୂର କରିଥାଏ । ଡାକ୍ତରଖାନାରେ କାହାର ମୂତ୍ରକୁ, ମଳକୁ, ପେଟରେ ଛିଦ୍ର କରି ନଳୀ ଦ୍ୱାରା ବାହାର କରାଯାଉଥାଏ । କାହା ମୁହଁରେ ପାଇପ ଲଗାଇ ଭୋଜନ, ପାଣି, ପବନ ଦିଆଯାଉଥାଏ, କାହାକୁ ରକ୍ତ ଓ କାହାକୁ ସେଲାଇନ୍ ଚଢାଇ ଦିଆଯାଉଥାଏ ।

**(୪) ମୁଁ ହେଉଛି ମରଣଧର୍ମୀ** – ଅର୍ଥାତ୍ ଦିନେ ମୋର ଏଇ ଶରୀରର ମୃତ୍ୟୁ ହୋଇଯିବ । ସିଏ ଜନ୍ମ ହେବାଠାରୁ ହିଁ ମରି ଆସୁଅଛି । ଦିନକୁ ଦିନ ମୃତ୍ୟୁ ନିକଟତର ହୋଇଯାଉଛି । ଶରୀର ଦୃଷ୍ଟିରୁ ଆମେ ସମସ୍ତେ ମୃତ୍ୟୁର ଲାଇନ୍‌ରେ ଛିଡ଼ା ହୋଇଚେ, ଆଗରେ ଥିବା ଲୋକଟି ହଟିଯାଉଛି, ଆମେ ସେଇ ଆଡ଼କୁ ଘୋଷାରି ହୋଇ ଚାଲିଛନ୍ତି, ରେଲୱେ ଟିକେଟ, ବସ୍ ଟିକଟ୍, କଣ୍ଟ୍ରୋଲ ପାଇଁ ଲାଗିଥିବା ଲାଇନ୍ ଭଳି ।

ଏଇ ସଂସାର, ଆମର ଘର ହେଉଛି ଶବାଗାର, ଶ୍ମଶାନ, ଭୂତ ବଙ୍ଗଳା । ସମସ୍ତେ ଏଠାକୁ ଆସି ମରିଯାନ୍ତି । ଆମ ଘରେ ଆମର ଜେଜେ, ବୁଢ଼ା ବାପା ମରି ଚାଲିଗଲେ । ଦିନେ ଆମର ଏଇ ଶରୀର ବି ଚାଲିଯିବ ।

ମୃତ୍ୟୁର ସ୍ମୃତି ପାପ ଠାରୁ, ଭୋଗାସକ୍ତି ଠାରୁ, ଅହଂକାର ଠାରୁ ବଞ୍ଚାଇଥାଏ, ଧର୍ମ ସହିତ ଯୋଡ଼ି ଦେଇଥାଏ । ମୃତ୍ୟୁର ଚିନ୍ତନ ଲୋଭ ଠାରୁ, ସଂଗ୍ରହ ବୃତ୍ତି ଠାରୁ ଦୂରକୁ ନେଇଯାଇଥାଏ ।

ମୃତ୍ୟୁ ହେଉଛି ପ୍ରକୃତ ମିତ୍ର, ଯିଏ ପୁରୁଣାକୁ ନେଇ ନୂଆ ଦେଇଥାଏ । ଜନ୍ମ ଦିବସ ଏଇ କଥାର ସଂକେତ ଦିଏ ଯେ ଏତେଗୁଡ଼ିଏ ମୂଲ୍ୟବାନ ବର୍ଷ ଜୀବନରେ ବିତିଗଲା, କେତେ ଆଉ ବାକି ରହିଲା କେହି ଜାଣେ ନାହିଁ । ତେଣୁ ମୃତ୍ୟୁ ଉପରେ ଭବିଷ୍ୟତ ପାଇଁ ଭରସା ନକରି ଆଜି ହିଁ ନିଜର ମୋକ୍ଷ, କଲ୍ୟାଣ କରିନେବା ।

ସମ୍ଭବ ହେଉଛି ତ ଆଜି ନେଇଥିବା କରଜ ତାଙ୍କୁ ଆଜି ଯାଇ ଶୁଝି ଦିଅ । କାହା ସହିତ ବୈରଭାବ–ବିରୋଧ ହୋଇଯାଇଛି ତ ତାଙ୍କ ଠାରୁ କ୍ଷମା ମାଗିନିଅ । ଯାହା ସହିତ ରୁକ୍ଷ ଭାବରେ ବ୍ୟବହାର କରୁଥିଲ, ତା' ପ୍ରତି ସ୍ନେହପୂର୍ଣ୍ଣ ସମ୍ବନ୍ଧ, ବ୍ୟବହାର କର । ରାତିରେ ନିଦ୍ରା ଯିବା ପୂର୍ବରୁ ହିଁ ସଚ୍ଚା ମନରେ ରାଗ–ଦ୍ୱେଷକୁ ମନରୁ ପୋଛି ପକାଅ ।

ଦିନ ଭିତରେ ଥରେ ନିଶ୍ଚୟ ଶ୍ମଶାନର ପରିକ୍ରମା କର । ସେଇଠି ଯାଇ କିଛି ସମୟ ପାଇଁ ବସ, ଦେହର ନଶ୍ୱରତାର ବୋଧ ଜାଗିଉଠିବ । ଏକ କ୍ରାନ୍ତି ଜନ୍ମନେବ । ଜୀବନରେ ଅସାରତାର ବୋଧ ଜାଗ୍ରତ ହେବ । ଜୀବନରେ ଯେଉଁ ଧନ ସମ୍ପତ୍ତି, ପରିବାର ପାଇଁ ଅହଂକାର ଥିଲା, ମୃତ୍ୟୁ ହେଲା ପରେ ତାହା ମୁଠାଏ ପାଉଁଶ ଏବଂ ହାଡ଼ର କିଛି ଅଂଶ ବ୍ୟତୀତ ଅଧିକ ଆଉ କିଛି ଦେଖାଯିବ ନାହିଁ । ବୈରାଗ୍ୟ ପାଇଁ ଶ୍ମଶାନ ଠାରୁ ଉତ୍ତମ ସ୍ଥାନ ଏବଂ ମନର ପବିତ୍ରତା ପାଇଁ ଶୌଚାଳୟ ଠାରୁ ଅଧିକ ଯୋଗ୍ୟ ସ୍ଥାନ ଦୁନିଆରେ ମିଳିବ ନାହିଁ । ତୁମର ପ୍ରାଣ ତ ଏଇ କୋଠୀ ଭିତରୁ, ଘରୁ ବାହାରିବ । ସେଇ କୋଠୀ, ବଙ୍ଗଳା, ଘରଗୁଡ଼ିକରେ ସମସ୍ତେ ତ ମରିବା ପାଇଁ ଲାଇନ୍ (ଧାଡ଼ିବାନ୍ଧି)ରେ ଛିଡ଼ା ହୋଇଛନ୍ତି । ପ୍ଲାଟ୍‌ଫର୍ମରେ ଟ୍ରେନ୍ ଉପରେ ଚଢ଼ିଯିବା ପାଇଁ ଯେମିତି ଯାତ୍ରୀ ଛିଡ଼ା ହୋଇଥାନ୍ତି, ଘରେ ସେହିପରି ମୃତ୍ୟୁ ସମୟରେ ନେବାକୁ ଆସିଥିବା ଯମଦୂତମାନଙ୍କ ସହିତ ବାନ୍ଧି ହୋଇଯିବା ପାଇଁ ମନୁଷ୍ୟ ଛିଡ଼ା ହୋଇଛି ବା କଂସାଇ ଘରେ ଗାଈ, ଛେଳି, କକୁଡ଼ା, ଘୁଷୁରୀ ଇତ୍ୟାଦି ମୃତ୍ୟୁ ପାଇଁ ଧାଡ଼ି ବାନ୍ଧି ଛିଡ଼ା ହୋଇଛନ୍ତି । ସେହିପରି ଆମର ହେଉ, ତୁମର ହେଉ ଏଇ ଶରୀର ମୃତ୍ୟୁର ଘଡ଼ିକୁ ଦେଖୁଛି । ଏଭଳି କୌଣସି ଘର, ନଗର, ଲୋକ ମିଳିବେ ନାହିଁ, ଯେଉଁଠି ମୃତ୍ୟୁ ପହଞ୍ଚି ନାହିଁ ।

ହେ ପରମାତ୍ମା ! ଯଦି ତୁମେ ମୋତେ କାଲିର ସୂର୍ଯ୍ୟ ଦେଖାଇଦେଲ ତେବେ ତୁମକୁ ମୁଁ ନମନ କରିବି, ପ୍ରଣାମ, ଧନ୍ୟବାଦ ଦେବି ଏବଂ ଯଦି କାଲିର ସୂର୍ଯ୍ୟ ନଦେଖିପାରେ ତେବେ ପ୍ରଭୁ ! ମୋର ଆଜିର ଏଇ ଅନ୍ତିମ ପ୍ରଣାମକୁ ସ୍ୱୀକାର କର ।

ଯଦି ସକାଳେ ଉଠି ସୂର୍ଯ୍ୟଙ୍କୁ ଦେଖିବାର ସୌଭାଗ୍ୟ ମିଳୁଛି, ତେବେ ପରମାତ୍ମାଙ୍କୁ ପୁନଶ୍ଚ ଧନ୍ୟବାଦ ଦିଅ ଯେ ପ୍ରଭୋ ! ତୁମେ ଦୟାକରି ମୋତେ ଗୋଟିଏ ଦିନ ଆହୁରି ଦେଇଛ, ତେଣୁ ମୁଁ ଆଜି ମନ, ବଚନ, କର୍ମରେ ଅନ୍ୟମାନଙ୍କ ପାଇଁ ଭଲ କର୍ମ କରିବି । ଜନ କଲ୍ୟାଣ, ଦୀନ ଦୁଃଖୀମାନଙ୍କର ସେବା, ପରୋପକାର, ଧର୍ମ ସାଧନା ନିଶ୍ଚୟ କରିବି । ମୃତ୍ୟୁର ସ୍ମରଣ ବ୍ୟକ୍ତିକୁ ଧର୍ମ ସହିତ ଯୋଡ଼ି ଦେଇଥାଏ ।

ଜନକଙ୍କ ରାଜମହଲରେ ଶୁକଦେବଙ୍କର ଭୋଗ ଆଡ଼କୁ ଦୃଷ୍ଟି ଗଲାନାହିଁ କାରଣ ମୁକୁଳା ଖଣ୍ଡାଟିଏ ସୂତାରେ ବନ୍ଧା ହୋଇ ତାଙ୍କ ଉପରେ ଝୁଲୁଥିଲା, ସେଥିପାଇଁ ନା ସେ ଭୋଗ କରିପାରିଲେ ଏବଂ ନା ଶୋଇପାରିଲେ ।

ଭରତ ବିପ୍ରଦେବଙ୍କୁ କହୁଛନ୍ତି ଯେ ମୋତେ ରାଣୀ,ଭୋଗ, ମହଲ ଭିତରେ ତୁମେ ପଚାରୁଛ ଯେ ତୁମର ଜ୍ଞାନ ହେଲା ତ ଏସବୁ ବିଳାସିତା କିପରି ଭଲ ଲାଗୁଛି । ସେତେବେଳେ ଭରତ କହିଲେ

ଏହାର ଉତ୍ତର ପରେ ଦେବି । ପ୍ରଥମେ ଗୋଟିଏ କାମ କର, ଏଇ ତେଲଭରା ଗିନାକୁ ହାତରେ ରଖ ଏବଂ ମୋର ରାଣୀମାନଙ୍କ ଭିତରେ ସବୁଠାରୁ ସୁନ୍ଦରୀ କିଏ, ତାକୁ ସାଙ୍ଗରେ ନେଇଆସ କିନ୍ତୁ ତେଲର ଗୋଟିଏ ବିନ୍ଦୁ ଯେମିତି ତଳେ ପଡ଼ିନଯାଏ । ତୁମ ପଛରେ ଖୋଲା ଖଣ୍ଡାଟିଏ ନେଇ ସୈନିକ ଯିବେ, ତେଲର ଗୋଟିଏ ବୁନ୍ଦା ତଳେ ପଡ଼ିଗଲା ଯଦି ତତ୍‌କ୍ଷଣାତ୍ ମୁଣ୍ଡରୁ ଗଣ୍ଡିକୁ ଅଲଗା କରି ଦେବେ । ବିପ୍ରଦେବ ମହଲ ଭିତରେ ବୁଲି ଆସିଲେ । ରାଜା ପଚାରିଲେ – "କୁହ, କେଉଁ ରାଣୀ ସବୁଠୁ ସୁନ୍ଦର, ସିଏ କେଉଁଠି ଅଛନ୍ତି ? ସିଏ କହିଲେ – କେଉଁ ରାଣୀ, କେମିତିକା ସୁନ୍ଦର ? ମୋତେ ତ ପ୍ରତ୍ୟେକ ମୁହୂର୍ତ୍ତରେ ମୃତ୍ୟୁ ଦେଖାଯାଉଥିଲା ଯେ ତେଲରୁ ବିନ୍ଦୁଏ ଯେମିତି ତଳେ ପଡ଼ିନଯାଉ । ତା'ପରେ ରାଜା ଭରତ କହିଲେ – ବାସ୍, ବିପ୍ରଦେବ ! ମୁଁ ବି ରାଜ ମହଲ, ରାଣୀମାନଙ୍କ ଭିତରେ ପ୍ରତ୍ୟେକ ମୁହୂର୍ତ୍ତରେ ମୃତ୍ୟୁକୁ ଦେଖିଚାଲିଥାଏ ।

ଧର୍ମ ହେଉଛି କଳ୍ପବୃକ୍ଷ, ଏହା ମନୋବାଞ୍ଛିତ ଫଳ ଦେଇଥାଏ । ଧନ ଦ୍ୱାରା ଧାର୍ମିକ ପୁସ୍ତକ କିଣି ପାରିବା କିନ୍ତୁ ଧର୍ମ ନୁହେଁ । ଧନ ଦ୍ୱାରା ଭୋଜନ ଖରିଦ କରିପାରିବା କିନ୍ତୁ ଭୋକ ନୁହେଁ, ଧନ ଦ୍ୱାରା ପୁସ୍ତକଗୁଡ଼ିକୁ କିଣି ପାରିବା କିନ୍ତୁ ବିଦ୍ୟା ନୁହେଁ । ଧନ ଦ୍ୱାରା ଚାକର–ଚାକରାଣୀ ରଖିପାରନ୍ତି କିନ୍ତୁ ପ୍ରେମ ନୁହେଁ । ଧନ ଦ୍ୱାରା ସୌନ୍ଦର୍ଯ୍ୟ ସାମଗ୍ରୀ, ଅଳଂକାର, ଲୁଗା କିଣିପାରିବା କିନ୍ତୁ ରୂପ ନୁହେଁ । ଧନ ଦ୍ୱାରା ଔଷଧ କିଣିପାରିବା କିନ୍ତୁ ସ୍ୱାସ୍ଥ୍ୟ ନୁହେଁ । ଧନ ଦ୍ୱାରା ମୂର୍ତ୍ତି କିଣିପାରିବା କିନ୍ତୁ ଭଗବାନ ନୁହେଁ ।

ସବୁ କିଛି ଶିଖିଗଲେ କିନ୍ତୁ ନିଜେ ଆତ୍ମଭାବରେ ରହିବା ଆସିଲା ନାହିଁ ଅର୍ଥାତ୍ କିଛି ବି ଶିଖିଲେ ନାହିଁ । ସମ୍ପ୍ରଦାୟ ଭିତରେ ରହିବା ସନ୍ଥର ଲକ୍ଷଣ ନୁହେଁ, ଯିଏ ନିଜ ଆତ୍ମଭାବରେ ରହିଥାଏ, ସିଏ ହିଁ ସନ୍ଥ । ଆଶ୍ରମ ବା କୁଡ଼ିଆରେ ରହିବା ସନ୍ଥର ଲକ୍ଷଣ ନୁହେଁ, ଯିଏ ନିଜ ଭିତରେ ସ୍ଥିର ରହିଥାନ୍ତି, ସିଏ ହିଁ ପ୍ରକୃତ ସନ୍ଥ ।

କାହାଠାରୁ ସୁଖର ଆଶା ରଖନାହିଁ କି, କାହାଠାରୁ ଦୁଃଖର ଭୟ କରନାହିଁ । ସୁଖ ବା ଦୁଃଖ ନିଜ କର୍ମଗୁଡ଼ିକ ଦ୍ୱାରା ଆସିଥାଏ, ନିମିତ୍ତ ହୋଇବି କେହି ଆସିଯାଇଥାଏ । ନିମିତ୍ତକୁ କର୍ତ୍ତା ବୋଲି ମାନିନେବା ହିଁ ଭୁଲ୍ ଯେମିତି ପୋଷ୍ଟମ୍ୟାନ୍ ଖୁସିର ଖବର ବା ଦୁଃଖର ଖବର ଦେବାରେ ନିମିତ୍ତ ହୋଇଥାଏ । ତୁମେ ଯାହା ବୁଣିଛ ତାକୁ ହିଁ ତୁମେ କାଟିଥାଅ । ତୁମେ ଯାହା ଦେଇଥିଲ, ତାହା ହିଁ ତୁମକୁ ମିଳିଥାଏ । ବ୍ୟାଙ୍କରେ ତୁମର ଯେତେ ଟଙ୍କା ଜମା ହୋଇଛି, ତାକୁ ଦେଉଥିବା କିରାଣୀ ସହିତ ତୁମର ଶତ୍ରୁତା ହୋଇଗଲେ ବି ସେ ଦେବା ପାଇଁ ମନା କରିପାରିବ ନାହିଁ କି ତା' ସହିତ ମିତ୍ରତା ହୋଇଗଲେ ବି ସେ ଜମାଟଙ୍କା ଠାରୁ ଅଧିକ ଦେଇପାରିବ ନାହିଁ ।

ହଜାର ହଜାର ପୁସ୍ତକ ଲେଖିବା, ପଢ଼ିବା ବା ପ୍ରବଚନ ଦେବା ଜ୍ଞାନୀର ପରିଚୟ ନୁହେଁ । ନିଜକୁ ଆତ୍ମା ବୋଲି ଜାଣୁଥିବା, ଦେହାଭିମାନ ରହିତ ବ୍ୟକ୍ତି ହିଁ ଜ୍ଞାନୀ ହୋଇଥାନ୍ତି । ମନ୍ଦିର, ମସଜିଦ୍, ଗୁରୁଦ୍ୱାରା, ଗୀର୍ଜା, ପୂଜା, ପାଠ, କରିବାରେ ଧର୍ମ ନଥାଏ, ଧର୍ମ ନିଜକୁ ଆତ୍ମା ବୋଲି ଜାଣିବାରେ, ଚିହ୍ନିବାରେ ଏବଂ ଅନୁଭବ କରିବାରେ ଥାଏ । ଧର୍ମକୁ ବାହାରେ କେବଳ ଖୋଜ ନାହିଁ, ନିଜକୁ ଖୋଜ ଧର୍ମ ମିଳିଯିବ । ଆତ୍ମା ହିଁ ହେଉଛି ଧର୍ମ ।

ସୁଖୀ ଜୀବନ ପାଇଁ, ଦେଖାଇହେବା ଠାରୁ ବଞ୍ଚ, ଦୃଶ୍ୟ ହେବା ଠାରୁ ବଞ୍ଚ, ଦ୍ରଷ୍ଟା ମାତ୍ର ହୋଇ ରୁହ, ଯାହା ମିଳୁଛି ସେଥିରେ ସନ୍ତୁଷ୍ଟ ହୋଇରୁହ, ଅନ୍ୟକୁ ଦେଖି ତା' ପଛରେ ଦଉଡ଼ ନାହିଁ । ଅସନ୍ତୋଷ ହେଉଛି ସାକ୍ଷାତ୍ ନର୍କ ଏବଂ ସନ୍ତୋଷ ହେଉଛି ସ୍ୱର୍ଗ ଏବଂ ଦୁଃଖ ଓ ଚିନ୍ତାଗୁଡ଼ିକରୁ ସିଏ ମୁକ୍ତି ଦେଇଥାଏ ।

ଅହଂକୁ ପରିତ୍ୟାଗ କର । ସହଜ ହୋଇ ବଞ୍ଚିବା ଶିଖ । ଜଗତରେ ସାକ୍ଷୀ ମାତ୍ର ବନିଯାଇ ରୁହ, ଦ୍ରଷ୍ଟା ବନିଯାଇ ରୁହ ।

'ମୁଁ'ର ଭୋଜନ ହେଉଛି 'ମୋର ପଣିଆ' । ଯେ ପର୍ଯ୍ୟନ୍ତ 'ମୋର' ଚାଲି ନଯାଇଛି, ସେପର୍ଯ୍ୟନ୍ତ 'ମୁଁ' ଚାଲିଯିବ ନାହିଁ । ଅହଂକାରର ଭୋଜନ ହେଉଛି 'ମୋରପଣିଆ', କାରଣ 'ମୋର' ହିଁ 'ମୁଁ'କୁ ଅହଂକାର ଦେଇଥାଏ ।

I want Peace (ମୁଁ ଶାନ୍ତି ଚାହେଁ) ପ୍ରତ୍ୟେକ ଲୋକ ଏୟା କହିଥାନ୍ତି, ଯଦି ସେଥିରୁ ଆଇ ଏବଂ ୱାଣ୍ଟକୁ ବାହାର କରିଦିଆଯାଏ ତେବେ କେବଳ ଶାନ୍ତି ହିଁ ବଞ୍ଚିବ । ଅହଂକାର ଏବଂ ଇଚ୍ଛା (ତୃଷ୍ଣା) ଦୁହେଁ ଯଦି ଅଛନ୍ତି, ତେବେ ଶାନ୍ତି (Peace) କାହିଁ ?

ଜୀବ ଯେମିତି, ସେମିତି ତ ସିଏ କାହାକୁ ଦେଖାଇନଥାଏ, କିନ୍ତୁ ଯେମିତି ନୁହେଁ ସେମିତି ନିଜକୁ ଦେଖାଇହେବାକୁ ଚେଷ୍ଟା କରି ଚାଲିଥାଏ ।

ଧ୍ୟାନ ରଖ ! ପ୍ରତ୍ୟେକ ବ୍ୟକ୍ତି ଦୁଇଟି ଚେହେରା ରଖିଥାଏ । ଗୋଟିଏ ହେଉଛି ଘରର, ଅନ୍ୟଟି ବାହାରର । ପତ୍ନୀ, ପିଲାଙ୍କ ତରଫରୁ ଗୋଟିଏ ଚେହେରା ଏବଂ ମିତ୍ର, ଚାକର, ଗ୍ରାହକ, ଜ୍ଞାତି କୁଟୁମ୍ବ ଏମାନଙ୍କ ତରଫରୁ ଆଉ ଗୋଟିଏ ଚେହେରା ।

ତେଣୁ ସୁଖୀ ଜୀବନ ପାଇବାର ରହସ୍ୟ ହେଉଛି, ଯାହା ନିଜ ପାଖରେ ଅଛି ସେଥିରେ ନିଜର ଜୀବନକୁ ଚଳାଇ ନିଅ, ଯାହା ନାହିଁ, ସେଇ ଚିନ୍ତାରେ ନିଜର ପାଇଥିବା ସୁଖ ସୁବିଧାକୁ ଦୁଃଖରେ ବଦଳାଇ ଦିଅନାହିଁ । ତା' ପଛରେ ଧାଇଁଧାଇଁ ବର୍ତ୍ତମାନର ସୁଖକୁ ନଷ୍ଟ କରନାହିଁ । ୯୯ର

ଚକ୍କର ଭିତରେ ପଡ଼ନାହିଁ । ଯାହା ମିଳିଲା ଖାଇଦେଲ, କାଲି ପାଇଁ ଚିନ୍ତା, ଭାବନା କରନାହିଁ ନଚେତ ଯାହା ଅଛି, ସେଇ ସୁଖ ଠାରୁ ବି ବଞ୍ଚିତ ହୋଇ ରହିଯିବ ।

ଦୁଃଖର ପ୍ରଥମ କାରଣ ହେଉଛି ଆକାଂକ୍ଷା, ଇଚ୍ଛା, ତୃଷ୍ଣା । ଦୁଃଖ କେଉଁଠି ବାହାରୁ ଏବଂ ସୁଖ ଅନ୍ୟ କାହାଠାରୁ କେବେହେଲେ ଆସିନଥାଏ, ସିଏ ନିଜ ଦ୍ୱାରା କରାଯାଇଥିବା ବାସନା ଯୋଗୁ ହିଁ ଆସିଥାଏ । ଚାହିଁବା ଚାଲିଗଲା ତ ଚିନ୍ତା ଗଲା ।

ତ୍ୟାଗ କଲା ପରେ ତ୍ୟାଗର ସ୍ମୃତିକୁ, ଅହଂକାରକୁ ମନରେ ଧରି ରଖିବା, ପ୍ରକଟ କରିବା, ଲୁଚାଇ କରି ନରଖି, ଛାପା କାଗଜରେ ତ୍ୟାଗକୁ ପ୍ରଚାର କରିବା ତ ତ୍ୟାଗ କରିବା ଠାରୁ ବି ୧୦୦ ଗୁଣ ଅଧିକ ଖରାପ ।

ଯାହାଙ୍କୁ ପ୍ରାପ୍ତ ଧନ ସମ୍ପତ୍ତି, ପଦ, ପ୍ରତିଷ୍ଠା, ଯଶ, ନିକୃଷ୍ଟ, ଦୁଃଖ ଓ ବନ୍ଧନ ଭଳି ଲାଗିଥାଏ, ସିଏ ହେଉଛନ୍ତି ପ୍ରକୃତରେ ବୈରାଗ୍ୟବାନ ।

ଜିଭ ଅବଶ୍ୟ ବିନା ହାଡ଼ରେ ତିନି ଇଞ୍ଚ ଲମ୍ବା କିନ୍ତୁ ସିଏ ଛଅ ଫୁଟ ଲମ୍ବର ହାଡ଼ ଥିବା ପ୍ରାଣୀକୁ ଖାଇ ଦେଇ ଭସ୍ମ କରିଦିଏ ।

ଏଇ ବାଣୀ ଦ୍ୱାରା ହିଁ ଅମୃତ ବର୍ଷା କରି ବିଶ୍ୱକୁ ନିଜର କରାଯାଇପାରେ ।

ପେଚାକୁ ଦିନରେ, କାଉକୁ ରାତିରେ ତଥା କାମାନ୍ଧ ପୁରୁଷକୁ ଦିନ ଓ ରାତିରେ ଦେଖା ଯାଇନଥାଏ ।

ପ୍ରତିଦିନ ରାତିରେ ଶୋଇବା ପୂର୍ବରୁ, ନିଜ ଦ୍ୱାରା କରାଯାଇଥିବା ସମ୍ପୂର୍ଣ୍ଣ ଭୁଲ୍‌ଗୁଡ଼ିକୁ ସ୍ମରଣ କର, ଆସନ୍ତା କାଲି ପୁନଶ୍ଚ ତାକୁ ନଦୋହରାଇବା ପାଇଁ ପ୍ରତିଜ୍ଞା କର । କରାଯାଇଥିବା ଭୁଲ ପାଇଁ ପ୍ରାୟଶ୍ଚିତ କର, ଉପବାସ କର, ଯଦ୍ଦ୍ୱାରା ପାଞ୍ଚଟି ଇନ୍ଦ୍ରିୟ ଶିଥିଳ ଏବଂ ଦୁଷ୍ଟ ମନ ପବିତ୍ର ହୋଇଥାଏ, ଏହାର ନାମ ହେଉଛି ବ୍ରହ୍ମଚର୍ଯ୍ୟ ଏବଂ ଆତ୍ମାରେ ମନକୁ ଲୀନ ରଖିଥିବା ବ୍ୟକ୍ତି ହିଁ ସଚ୍ଚା ବ୍ରହ୍ମଚାରୀ । ବ୍ରହ୍ମଚର୍ଯ୍ୟ ରକ୍ଷା ପାଇଁ ଆସନ, ପ୍ରାଣାୟାମ, କିଛି ବ୍ୟାୟାମ କରିବା ଆବଶ୍ୟକ ।

ଜନନେନ୍ଦ୍ରିୟ ଯେଉଁଥିରେ ଶରୀରର ଯାବତୀୟ ଇନ୍ଦ୍ରିୟଗୁଡ଼ିକର ଶିରା ଯୋଡ଼ି ହୋଇଛି, ମଳତ୍ୟାଗ ପରେ ତା' ଉପରେ ଥଣ୍ଡା ପାଣି ପକାଇଦେଲେ, ସମ୍ପୂର୍ଣ୍ଣ ଶରୀରରେ ଶୀତଳତା ଛାଇ ହୋଇ ଯାଇଥାଏ । ମଣି ଉପରେ ପାଣିର ଧାର ବନାଇ ଢାଳ, ଏହା ଦ୍ୱାରା ସ୍ୱପ୍ନ ଦୋଷ ବି ହୋଇପାରିବ ନାହିଁ । ଶୀଘ୍ର ଶୋଇବା ଏବଂ ଶୀଘ୍ର ଉଠିବା ଆବଶ୍ୟକ । ପ୍ରତିଦିନ ଦୁଇଥର ସକାଳ ସନ୍ଧ୍ୟାରେ ଶୌଚ ହେବାର ଅଭ୍ୟାସ କର (ଏକାଶନୀଙ୍କ ପାଇଁ ଥରେ) । ବ୍ରହ୍ମଚାରୀଙ୍କ ପାଇଁ ଲିଙ୍ଗ

ମଣି ଉପରେ ପାଣି ପକାଇବା ବର୍ଜନୀୟ । ସ୍ନାନ ଘର୍ଷଣ ପୂର୍ବକ କର, ଶୁଖିଲା ତଉଲିଆ ଦ୍ୱାରା ଭଲ ଭାବରେ ରଗଡ଼ି ସ୍ନାନ କର ତଦ୍ୱାରା ଶରୀର ଶୁଦ୍ଧ ଓ ବଳିଷ୍ଠ ହୋଇଥାଏ । ଶରୀର ନିରୋଗ ରହିବ ତ ସିଏ ବ୍ରହ୍ମଚର୍ଯ୍ୟ ପାଇଁ ସହାୟକ ହେବ । ସରଳ ଜୀବନ ଓ ଉଚ୍ଚ ବିଚାର ରଖ । ଶୁଦ୍ଧ ବିଚାର ରଖ । ମନ ହିଁ ମନୁଷ୍ୟକୁ ଗୋଲାମ ବା ସ୍ୱାମୀ ବନାଇଥାଏ । ପାପମୟ ବିଚାରଗୁଡ଼ିକ ଦ୍ୱାରା ପାପାତ୍ମା ତିଆରି ହୋଇଥାଏ, ସେଥିପାଇଁ ସର୍ବଦା ସ୍ତ୍ରୀଲୋକମାନଙ୍କ ସହିତ ଏକାନ୍ତରେ କଥା କହିବାକୁ ତ୍ୟାଗ କରିବ ।

ବ୍ରହ୍ମଚର୍ଯ୍ୟ – ବ୍ରହ୍ମର ଅର୍ଥ ହେଉଛି ଆତ୍ମା । ଆତ୍ମାରେ ତନ୍ମୟ ହୋଇଯିବା ଅର୍ଥାତ୍ ନିଜର ଦେହଭାବକୁ ତ୍ୟାଗ କରି ମୁଁ ହେଉଛି ଦ୍ରଷ୍ଟା, ସାକ୍ଷୀ, ଆତ୍ମା ଏଇ ନିଷ୍ଠାରେ ମଗ୍ନ ରହିବା, ତଲ୍ଲୀନ ରହିବା, ଓତଃପ୍ରୋତ ରହିବା ହିଁ ବ୍ରହ୍ମଚର୍ଯ୍ୟ ।

ବ୍ରହ୍ମଚର୍ଯ୍ୟ ହିଁ ହେଉଛି ଜୀବନ, ବୀର୍ଯ୍ୟ ନାଶ ହିଁ ମୃତ୍ୟୁ । ବ୍ରହ୍ମଚର୍ଯ୍ୟକୁ କୌଣସି ରୋଗ ବିବ୍ରତ କରିପାରିବ ନାହିଁ । ଦୁଧରୁ ଲହୁଣୀ ବାହାର କରାଯାଏ, ସେହିପରି ମୈଥୁନ ଦ୍ୱାରା ଶରୀରର ସମସ୍ତ ଅଙ୍ଗରୁ ବୀର୍ଯ୍ୟକୁ ଟାଣିନିଆଯାଇଥାଏ । ଲହୁଣୀ ବାହାର କରିନେଲେ ଯେପରି ଦୁଧ ଅସାର ହୋଇ ରହିଯାଏ, ସେହିପରି ମୈଥୁନ ପରେ ଶରୀର ବି ଅସାର, ନିସ୍ତେଜ ହୋଇଯାଇଥାଏ ।

ନିଜର ଦୁଃଖ ବେଳେ ସମସ୍ତେ କାନ୍ଦିଥାନ୍ତି କିନ୍ତୁ ଅନ୍ୟର ଦୁଃଖରେ ଯାହାଙ୍କ ଆଖି ଛଳଛଳ ହୋଇଯାଏ, ସିଏ ହେଉଛନ୍ତି ପ୍ରକୃତ ଦୟାଳୁ, ପରୋପକାରୀ ସନ୍ଥ, ହୁଏତ ସିଏ ଗୃହସ୍ଥ ବି ହୋଇଥାନ୍ତୁ ।

ବିଡ଼ି, ସିଗାରେଟ୍, ତମାଖୁ ସେବନ ଦ୍ୱାରା ବୀର୍ଯ୍ୟ ଦୁର୍ବଳ ହୋଇଥାଏ । ଇନ୍ଦ୍ରିୟର ଉତ୍ତେଜନା ବଢ଼ିଥାଏ ଏବଂ ମନୁଷ୍ୟ ଶୀଘ୍ର ପତନର ଭୋଗୀ ପାଲଟିଯାଇ ନପୁଂସକ ହୋଇଯାଇଥାଏ । ସିଗାରେଟ୍‌ରେ ନିକୋଟିନ୍ ଓ ଟାର ନାମକ ଧୀମା ଜହର ରହିଥାଏ ।

ଯେମିତି ଚଳଚିତ୍ରର କୌଣସି ପ୍ରକାର ଦୃଶ୍ୟ, ଘଟଣା ପର୍ଦ୍ଦା ଉପରେ ଅଥବା ଦର୍ପଣ ଉପରେ ପ୍ରତିବିମ୍ବିତ କୌଣସି ବି ଭଲ ଖରାପ ଦୃଶ୍ୟ ନିଜ ଉପରେ କୌଣସି ପ୍ରକାରର ପ୍ରଭାବ ପକାଏ ନାହିଁ, ଦର୍ପଣ ଓ ପର୍ଦ୍ଦା ଦୃଶ୍ୟ ପ୍ରତିବିମ୍ବିତ ଛାୟା ଚିତ୍ରଗୁଡ଼ିକ ଠାରୁ ଅଛୁଆଁ ରହିଥାଏ, ସେହିପରି ଆତ୍ମା ବି ଦେହ, ପ୍ରାଣ, ଇନ୍ଦ୍ରିୟ ଏବଂ ମନର କୌଣସି ବି ଶୁଭାଶୁଭ କ୍ରିୟା ଠାରୁ ଅପ୍ରଭାବିତ ରହିଥାଏ, ମାତ୍ର ଦ୍ରଷ୍ଟା ସାକ୍ଷୀ ହୋଇ ହିଁ ରହିଥାଏ ।

ଦେହ, ଇନ୍ଦ୍ରିୟ, ପ୍ରାଣ ଏବଂ ମନ ବୁଦ୍ଧି ଦ୍ୱାରା ଯାହା ବି ପଦାର୍ଥ, ପଦ, ବିଦ୍ୟା, ନାମ ଇତ୍ୟାଦି ମିଶିଛି, ସେସବୁ ମୋର ନୁହେଁ, ତା'ଠାରୁ ମୋତେ ମମତା ତୁଟାଇବାକୁ ହେବ ଏବଂ ଯାହା ହେଉଛି

ମୋର ନିତ୍ୟପ୍ରାପ୍ତ, ସ୍ୱୟଂସିଦ୍ଧ ସ୍ୱରୂପ, ତା' ସହିତ ଭାବ ସ୍ଥାପନ କରିବାକୁ ହେବ । ମୁଁ ହେଉଛି କେବଳ ଆତ୍ମା, ଦ୍ରଷ୍ଟା, ସାକ୍ଷୀ ।

ସବୁ ଲୋକ କୁଆଡ଼େ ଯାଉଛନ୍ତି ? କ'ଣ କରୁଛନ୍ତି ? କ'ଣ କହିବେ ? ଏଇ ଭଳି ଚିନ୍ତା ଛାଡ଼ ଏବଂ ସଦ୍‌ଗୁରୁଙ୍କ ଶରଣ ଯାଇ ଆତ୍ମୋଦ୍ଧାର ପାଇଁ ଚେଷ୍ଟା କର । ସଂସାର ତ ଚାଲିଯାଉଛି, ତାକୁ ଧରି ରଖିବା ପାଇଁ ଜୀବନ ନଷ୍ଟ କରନାହିଁ । ଆତ୍ମାରେ ସ୍ଥିର ରହିଯାଅ ।

ମୁଁ କେଉଁଠୁ ଆସିଛି ? ମୁଁ ମଲାପରେ କୁଆଡ଼େ ଯିବି ? ମୁଁ କ'ଣ କରୁଛି ? ମୋର ଏଇଠି କ'ଣ ଅଛି ? ମୁଁ କିଏ ଏଭଳି ବିଚାର ପ୍ରତିଦିନ କରୁଥାଅ ।

(୧) ମୁଁ କିଏ ? ଏଇ ଯାହାକୁ ମୋର ଭ୍ରମ ଯୋଗୁ ଶରୀର ବୋଲି କୁହାଯାଉଛି, ସିଏ ମୁଁ ନୁହେଁ । ନାମ ହେଉଛି ଶରୀରର, ଜାତି ହେଉଛି ପିତାମାତାଙ୍କର, ଭାଷା ବି ପିତାମାତାଙ୍କର, ସମ୍ବନ୍ଧ ବି ପିତାମାତାଙ୍କର ଏବଂ ଶରୀରର ଜନ୍ମ-ମୃତ୍ୟୁ ବି ଶରୀରର । ମୁଁ ତ କେବଳ ସବୁକୁ ଜାଣିବାବାଲା ଚିନ୍ତାଶୂନ୍ୟ ଆତ୍ମା ।

(୨) ମୋର କ'ଣ ଅଛି ? ଇନ୍ଦ୍ରିୟଗୁଡ଼ିକ ଦ୍ୱାରା ଅନୁଭୂତ କୌଣସି ପଦାର୍ଥ ମୋର ନୁହେଁ । ଇନ୍ଦ୍ରିୟମାନଙ୍କର ଜାଣିବା ସଂସାର ପର୍ଯ୍ୟନ୍ତ ସୀମିତ ଥାଏ । ଅଜ୍ଞାନରୁ ମୁଁ ସେହି ପଦାର୍ଥଗୁଡ଼ିକୁ ନିଜର ବୋଲି ମାନିନେଇଛି । ଘର, ଦୋକାନ, ସ୍ୱଜନ, ପରିଜନ, ବୈଭବ, ସମ୍ପତ୍ତି ଏବଂ ଶରୀର ମୋ' ସହିତ ସର୍ବଦା ନଥାନ୍ତି । ସେଥିପାଇଁ ସେସବୁ ମୋର ନୁହେଁ, ମୋର ତ ହେଉଛି କେବଳ ଜ୍ଞାନ ସ୍ୱରୂପ, ସଚ୍ଚିଦାନନ୍ଦ ସ୍ୱରୂପ ।

(୩) ମୁଁ କେଉଁଠୁ ଆସିଛି ?

ଅବଶ୍ୟ ଏଇ ଜନ୍ମ ପୂର୍ବରୁ କୌଣସି ଅନ୍ୟ ପରିବାର, ଘର, ଜାତି, ସହିତ ମୁଁ ରହିଥିବି, ସେଇଠି କରିଥିବା ଶୁଭାଶୁଭ କର୍ମଗୁଡ଼ିକ ଅନୁସାରେ ବର୍ତ୍ତମାନ ଦେହ ଭୋଗ, ରୋଗ, ସମ୍ପର୍କ, ପରିସ୍ଥିତି, ସଂଯୋଗ-ବିୟୋଗ, ଲାଭ-ହାନି, ମାନାପମାନ ପ୍ରାପ୍ତ ହେଉଛି, ଯାହାକୁ ସୁଖ-ଦୁଃଖ ଭାବରେ ଭୋଗ କରୁଛି ଏବଂ ବର୍ତ୍ତମାନ ଯାହା କରିବି, ତାହା ଆଗାମୀ ଜନ୍ମ ପାଇଁ ହେବ । ପ୍ରଥମ ଜନ୍ମରେ ମୁଁ କିଛି ଧର୍ମ କାର୍ଯ୍ୟ କରିଥିବି, ସେଥିପାଇଁ ତ ଏଇ ଦେବଦୁର୍ଲଭ ମାନବ ଜୀବନ ପାଇଛି । ଅହିଂସକ, ସଦାଚାରୀ ଉଚ୍ଚ ପରିବାରରେ ଧାର୍ମିକ ବିଚାରବାନ ଗୃହରେ ଅକସ୍ମାତ୍ ଜୀବ ପ୍ରବେଶ ପାଇ ପାରିବ ନାହିଁ ।

## (୪) ମଲା ପରେ ମୁଁ କୁଆଡ଼େ ଯିବି ?

ଯଦି ଆତ୍ମଜ୍ଞାନ ପ୍ରାପ୍ତ କରିନେଲ, ତେବେ ଏଇଠି କୈବଲ୍ୟ ମୁକ୍ତି, ସମାଧି, ମୃତ୍ୟୁକୁ ପ୍ରାପ୍ତ ହୋଇଯିବ । ଅନ୍ୟଥା ଜ୍ଞାନୋଦୟ ନହେବାରୁ କୌଣସି ଶ୍ରୀମନ୍ତ ଘରେ ସଦାଚାରୀ ପିତାମାତାଙ୍କ ସନ୍ତାନ ରୂପରେ ପୁଣି ଜନ୍ମହେବ । ଯଦି ଏଇ ଜୀବନକୁ ପାପକର୍ମରେ ବ୍ୟୟ କରିଦେଲ, ତେବେ ପଶୁ-ପକ୍ଷୀ ତୀର୍ଯ୍ୟକ୍ ଯୋନିରେ ଜନ୍ମଧାରଣ କରିବ ।

ଦ୍ରଷ୍ଟା, ସାକ୍ଷୀ ଭାବର ଦୃଢ଼ତା ଅଚାନକ ହୋଇନଥାଏ, ସେଥିପାଇଁ ପ୍ରତ୍ୟେକ କାର୍ଯ୍ୟରେ ସର୍ବଦା ପ୍ରୟାସ କରି ଚାଲିବା ଉଚିତ୍ । ବ୍ୟାବହାରିକ ଜୀବନରେ କିଛି ସମୟ ଆତ୍ମ ଚିନ୍ତନରେ ନିଶ୍ଚୟ ଲଗାଅ । ଯାହା ବି ହେଉଛି, ତାକୁ ଅନାସକ୍ତ ଭାବରେ ଦେଖ, ତା'ଠାରୁ ନିରପେକ୍ଷ ରହି ସେଥିରେ ଲିପ୍ତ ହୁଅନାହିଁ ।

ଜୀବନରେ କ୍ରୋଧ ଆସୁଛି ତ ଆଜ୍ଞା ମାନିନେଇ, ଅନୁମତି ନେଇ ଚାକର ଭଳି ଆସୁ, ମାଲିକ ଭଳି କେବେ ବି ଅଚାନକ ଆସି ଧମକ ନଦେଉ ।

ମନେରଖ ! କ୍ରୋଧକୁ ପ୍ରତ୍ୟେକ ସମୟରେ ନିଜର ମୁଣ୍ଡ, ନାକ ଉପରେ ଚଢ଼ାଇ ରଖିବା ଠିକ୍ ନୁହେଁ । ଯଦି ଆମେ ଟିକିଏ ବି ନଇଁ ଗଲେ, ତେବେ ହୋଇପାରେ ଆଗରେ ଥିବା ଲୋକଟି ସମ୍ପୂର୍ଣ୍ଣ ନଇଁଯିବ ।

ହିନ୍ଦୁ, ମୁସଲମାନ ସମସ୍ତେ ନିଜ ନିଜର ଅର୍ଜିତ ଧନକୁ ଖାଉଛନ୍ତି ତଥାପି ଯଦି ଭେଦଭାବ ଛିଡ଼ା ହେଉଛି ତେବେ ତାହା ହେଉଛି ଅହଂକାରର । ଅହଂକାରର କାରଣ ହେଉଛି ଦେହାଭିମାନ, ଜାତି ଅଭିମାନ ।

ପ୍ରଭୁଙ୍କୁ ମାଗିବାର ଅଛି ତ ସତ୍‌ସଙ୍ଗ ମାଗ, ଜ୍ଞାନ ମାଗ, ସଦ୍‌ଗୁରୁ ମାଗ, ଜାଗରଣ ମାଗ । ପ୍ରଭୁଙ୍କ ଚରଣରେ ଚଢ଼ାଇବାର ଅଛି ତ ନିଜର ଅହଂକାରକୁ, ନିଜକୁ ଚଢ଼ାଇଦେଇ, ନିଜର ଅହଂକୁ ନଷ୍ଟ କରିଦିଅ । ଜଣଙ୍କର ଅନ୍ୟ ଠାରେ, ଜଣ କର ଅନ୍ୟଜଣକ ପ୍ରତି ସମର୍ପଣ ଭାବ ହୋଇଥାଏ, ବାକୀ ତ ସମସ୍ତେ ହେଉଛନ୍ତି ବେପାରୀ, ସେମାନେ ନେବା ଦେବାର ହିସାବ ମାଗିଥାନ୍ତି ଯେ – ତୁ ମୋ' ପାଇଁ କ'ଣ କଲୁ ? ମୁଁ ତୋ' ପାଇଁ ଏୟା ଏୟା କଲି ।

ଯେତେବେଳେ କେହି ଜଣେ ନିଆଁ ହୋଇଯାଉଛି ସେତେବେଳେ ଜଣେ ପାଣି ହୋଇଯାଉ, ଝଗଡ଼ା ଶେଷ । ପୁଣ୍ୟ ଓ ଦାନ ଏକାନ୍ତ ଏବଂ ପରମ ଗୋପନୀୟ ହେବା ଉଚିତ୍ । ପତ୍ରିକା ଛାପି

କରି ପ୍ରଚାର କରିବା ଉଚିତ୍ ନୁହେଁ ବରଂ ଲୁଚାଇ କରିବା ଉଚିତ୍ । ଯାହା ହେଉଛି ଶୁଭ, ଧର୍ମ, ତାକୁ ଆଜି, ଏବେ କରିଦିଅ, ନହେଲେ ମୃତ୍ୟୁ ସମୟରେ ଆମକୁ ପସ୍ତାଇବାକୁ ପଡ଼ିବ ।

ବର୍ତ୍ତମାନ ବେଦାନ୍ତକୁ କିଛି ସନ୍ୟାସୀମାନଙ୍କର ପରମ୍ପରା ନବନାଇ, ମାନବ ଜାତି ପାଇଁ ସୁଲଭ ବନାଇ ଦେବାର ଆବଶ୍ୟକତା ଅଛି, ଯଦ୍ଦ୍ୱାରା ସେଥିରେ ସମତା, ପ୍ରେମ, ଦୟା, କ୍ଷମା, ସହିଷ୍ଣୁତା, ନିର୍ଭୟତା, ନିର୍ବୈରତା ପ୍ରକଟ ହୋଇପାରିବ । ମହାପୁରୁଷମାନେ ସମସ୍ତ ମାନବ ଜାତିର ପ୍ରାଣ ହୋଇଥାନ୍ତି । ଯିଏ ମୁକ୍ତିଦୂତ ହୋଇ ସମାଜକୁ ସୁଧାରିବା ପାଇଁ ଏଇ ପୃଥିବୀ ଉପରକୁ ଆସିଥିଲେ, ଆମେ ସେମାନଙ୍କୁ ସମ୍ପ୍ରଦାୟର କାରାଗାର ଭିତରକୁ ଫିଙ୍ଗିଦେଲେ । ଆମର ମନ୍ଦିର, ମସ୍‌ଜିଦ୍, ଗୁରୁଦ୍ୱାର, ଗୀର୍ଜା କ'ଣ କାରାଗାର ନୁହେଁ ? ଜନଗଣର ସେବା, ଦୀନ ଦୁଃଖୀଙ୍କର ସେବା ହିଁ ହେଉଛି ପରମାତ୍ମାଙ୍କ ପୂଜା । ଯେଉଁ ବ୍ୟବହାର ଆମକୁ ଭଲ ଲାଗେ ନାହିଁ, ସେପରି ବ୍ୟବହାର ଆମେ ଅନ୍ୟମାନଙ୍କ ସହିତ କେବେ ହେଲେ କରିବା ନାହିଁ ।

ସଂସାରରେ ଭଲ ମନ୍ଦ ବୋଲି କିଛି ନାହିଁ । ଆମର ଯେମିତି ଦୃଷ୍ଟି ହୋଇଥାଏ, ଆମକୁ ସଂସାର ସେହିପରି ମନେହୋଇଥାଏ । ଆମେ ମଇଳା ବସ୍ତୁ, ଖରାପ ବସ୍ତୁ ଘରକୁ ଆଣିବାକୁ ଚାହାନ୍ତି ନାହିଁ, ସେହିପରି ଖରାପ ବିଚାର, ଅନୀତିରେ କମାଇଥିବା ମଇଳା ଧନ ବି ଭିତରକୁ ଆସିବାକୁ ଦେବା ଉଚିତ୍ ନୁହେଁ ।

କ୍ରୋଧ ଆସିଗଲେ ଜିଭକୁ ଦାନ୍ତଗୁଡ଼ିକ ମଝିରେ ବଳପୂର୍ବକ ଦବାଇରଖ । ମୁଠା ଖୁବ୍ ଜୋର୍‌ରେ କଷି ନିଅ । ଯେତେ ପିଇ ପାରିବ ପାଣି ପିଅ । ୧୦୦ରୁ ଏକ ପର୍ଯ୍ୟନ୍ତ ଓଲଟା ଗଣନା କର । କ୍ରୋଧ ହେଉଛି ଡିଆସିଲିର ବାରୁଦ, ଯିଏ ନିଜେ ପ୍ରଥମେ ଜଳିଥାଏ ତା'ପରେ ଅନ୍ୟକୁ ଜଳାଇଥାଏ । କ୍ରୋଧ ହେଉଛି ଲୁଗା ଉପରେ ଆଇରନ୍ ପ୍ରେସ୍ କଲା ପରି, ଗରମ ହେଲା ଭଳି ସ୍ଥିତି, ଯିଏ ସ୍ୱୟଂ ପ୍ରଥମେ ଗରମ ହୋଇ ପରେ ଲୁଗାକୁ ଗରମ କରିଥାଏ । କ୍ରୋଧ ଆସିବା ସମୟରେ ନିଜର ସୁନ୍ଦର ଚେହେରାକୁ ଦର୍ପଣରେ ଦେଖ ଏବଂ ତତ୍‌କ୍ଷଣାତ୍ କୌଣସି ସାଙ୍ଗ ଦ୍ୱାରା ତା'ର ଫଟୋ ଉଠାଇ, ଆଲବମ୍‌ରେ ବା ଘରେ ତାକୁ ବଡ଼ କରାଇ ଘରର ମୁଖ୍ୟ ଦ୍ୱାର ଉପରେ ଟାଙ୍ଗିଦିଅ, ଘର ଭିତରେ ପ୍ରବେଶ କରୁଥିବା ଆଉ ଲୋକ ସାହସ କରିପାରିବ ନାହିଁ ପ୍ରବେଶ କରିବାକୁ ।

ଆମକୁ କ୍ରୋଧ ଆସିଥାଏ ଏଇଥିପାଇଁ ଯେ, ଆମେ ଆଗରେ ଥିବା ଲୋକ ଠାରୁ କିଛି ଅପେକ୍ଷା, ଆକାଂକ୍ଷା ମନ ଭିତରେ ଲୁଚାଇ ରଖିଥାଉ ଏବଂ ନିଜକୁ କିଛି ବୋଲି ବୁଝିଥାଉ । I am something, ମୁଁ ବି କିଛି, ତେଣୁ ଅପେକ୍ଷାର ଉପେକ୍ଷା କରିବା ହିଁ କ୍ରୋଧର ପ୍ରଶମନ କରିବା ।

ବୈଜ୍ଞାନିକ କହନ୍ତି କ୍ରୋଧ ସମୟରେ ଆମ ରକ୍ତରେ ଜହର ଖେଳି ହୋଇଯାଏ । କ୍ରୋଧ ଅବସ୍ଥାରେ ମା' ନିଜର ପିଲାମାନଙ୍କୁ ବି ସ୍ତନ୍ୟପାନ ନକରାନ୍ତୁ । କ୍ରୋଧୀ ବ୍ୟକ୍ତି ହେଉଛି ଭୟାନକ ଏବଂ ସେଇ ଲୋକ ଯଦି କାମୁଡ଼ି ଦିଏ ତେବେ ବଞ୍ଚିବାର ସମ୍ଭାବନା କମ୍ ହୋଇଥାଏ । ପାଗଳ କୁକୁର ଓ କଳାନାଗ କାମୁଡ଼ି ଦେବ ତ ୧୮ଟି ଇଞ୍ଜେକ୍ସନ ଲଗାଇ ବଞ୍ଚାଇ ଦିଆଯାଇପାରିବ । ଜଣେ କ୍ରୋଧୀତ ବ୍ୟକ୍ତିର ରକ୍ତକୁ ଗୋଟିଏ ଶାନ୍ତ ଠେକୁଆକୁ ଦିଆଯିବାରୁ ସିଏ ଘଣ୍ଟାକ ଭିତରେ ମରିଗଲା । କ୍ରୋଧ ଆସିଥାଏ ସେତେବେଳେ, ଯେତେବେଳେ ଆମ ମନ ଅନୁକୂଳ କାମ ନହୁଏ, ଅପେକ୍ଷାର ବିପରୀତ କାମ ହୋଇଥାଏ । ଯେଉଁଠି ଅଧିକାରର କଥା ଉଠିବ ଯେ' ମୁଁ ଯେହେତୁ ପତି, ତେଣୁ ପତ୍ନୀ କଥା ନ ମାନିଲେ କ୍ରୋଧ ନିଶ୍ଚିତ ଭାବରେ ଆସିବ । ଏହିଭଳି ଭାବରେ ବାପର ପୁଅ ଉପରେ, ମାଲିକର ଚାକର ଉପରେ, ଗୁରୁଙ୍କର ଶିଷ୍ୟ ଉପରେ କ୍ରୋଧ ହୋଇଯାଇଥାଏ ।

ପ୍ରତ୍ୟେକ ମାଆ ନିଜ ଝିଅକୁ ଶିକ୍ଷା ଦେଇଥାଏ ଯେ ପତି ହେଉଛନ୍ତି ପରମାତ୍ମା, ତାଙ୍କୁ ଓଲଟା କରି ଜବାବ୍ ଦେବୁ ନାହିଁ କିନ୍ତୁ କୌଣସି ବାପା ତାଙ୍କ ପୁଅକୁ ଏଇ ଶିକ୍ଷା ଦେଇନଥାଏ ଯେ ପତ୍ନୀ ହେଉଛନ୍ତି ପରମାତ୍ମା, ତାଙ୍କୁ ଅପମାନ, ଗାଳି, ତିରସ୍କାର, ମାରପିଟ୍ କେବେହେଲେ କରିବୁ ନାହିଁ । ବିଚାରୀ ପତ୍ନୀମାନେ ପ୍ରତି ମୁହୂର୍ତ୍ତରେ ମାଡ଼ ଖାଉଛନ୍ତି, ଜଳାଇ ଦିଆଯାଉଛନ୍ତି ।

ଜଙ୍ଗଲରେ କାମ ସାରି ସନ୍ଧ୍ୟାକୁ ମାଆ ଘରକୁ ଫେରୁଛି, ସିଏ ନିଜ ପିଲାକୁ କହିଲା – "ଆରେ ! ସନ୍ଧ୍ୟା ହୋଇଗଲା ଦୀପ ଜଳାଇଲୁ ନାହିଁ ।" ଏଇ ବାକ୍ୟକୁ ରାସ୍ତାରେ ଯାଉଥିବା କେହି ଜଣେ ସଜ୍ଜନ ଶୁଣିନେଲେ, ତେଣୁ ତାଙ୍କ ଭିତରେ ବି ବିଚାର ଜାଗ୍ରତ ହୋଇଗଲା ଯେ ମୋର ଜୀବନର ତ ସନ୍ଧ୍ୟା ହୋଇଚାଲିଛି ଓ ଏପର୍ଯ୍ୟନ୍ତ ଜ୍ଞାନର ଦୀପକୁ ତ ମୁଁ ପ୍ରକଟ କଲିନାହିଁ ।

ଜୀବନ ହେଉଛି ଏକ ସ୍ୱପ୍ନ ଏବଂ ମୃତ୍ୟୁ ଏଇ ସ୍ୱପ୍ନରୁ ଉଠାଇ ଦେଇଥାଏ, ସ୍ୱପ୍ନକୁ ଭାଙ୍ଗି ଦେଇଥାଏ । ମାତ୍ର ସ୍ୱପ୍ନକୁ ଆମେ ସତ୍ୟ ବୋଲି ମାନି ନେଇଥାନ୍ତି, ସେଥିପାଇଁ ମୃତ୍ୟୁ ଦୁଃଖଦାୟକ ମାଲୁମ୍ ପଡ଼ିଥାଏ । ରାତିର ସ୍ୱପ୍ନରେ ଦେଖିଥିବା ସୁଖର ନାଶ ହେଲାପରେ, ଲୋକ ଦୁଃଖୀ ହେଉଥିବାର ଦେଖାଯାଏ ନାହିଁ । ସେହିପରି ଜାଗ୍ରତ ଅବସ୍ଥାରେ ଶରୀର, ସମ୍ପତ୍ତି, ପୁତ୍ର, ପତ୍ନୀ, ପତିର ନାଶ ହୋଇଗଲା ପରେ ପଣ୍ଡିତମାନେ ଶୋକ କରିନଥାନ୍ତି କିନ୍ତୁ ମୂର୍ଖଲୋକ କାନ୍ଦି ଚାଲିଥାନ୍ତି ।

ଯାହାଙ୍କର ମରଣ ସୁଧୁରିଗଲା, ତାଙ୍କର ଜୀବନ ବି ସୁଧୁରି ଯିବା ଉଚିତ୍ । ମୃତ୍ୟୁ ହେଉଛି ସାରା ଜୀବନର ଶୁଭାଶୁଭ କର୍ମର ମାପଦଣ୍ଡ, ଯାହାଙ୍କର ମୃତ୍ୟୁ ବିଗିଡ଼ିଗଲା ବୁଝିବା ଉଚିତ୍ ଯେ ତାଙ୍କର ଜୀବନ ବି ବିଗିଡ଼ି ଗଲା ଭଳି ହେବା ଉଚିତ୍ । ସେଥିପାଇଁ ମୃତ୍ୟୁକୁ ସୁଧାରିବା ପାଇଁ ଜୀବନକୁ ଜୀଇଁବାର କଳା ଶିଖିବାକୁ ପଡ଼ିବ ।

କୌଣସି ବୁଢ଼ାକୁ କମର ନୂଆଇଁ କାଠବାଡ଼ି ଉପରେ ଭରସା କରି ଚାଲୁଥିବାର ଦେଖିଲେ କେବେ ହେଲେ ହସିବା ଉଚିତ୍ ନୁହେଁ । ବରଂ ଏହିଭଳି ଭାବ ଯେ, ଏଇ ବୃଦ୍ଧାବସ୍ଥା ମୋର ଜୀବନରେ ବି ଆସିବ । କାହାର ଗରୀବ ଅବସ୍ଥା ଦେଖି କେବେ ହେଲେ ହସ ନାହିଁ ବରଂ ଏମିତି ଭାବ ଯେ ଏଭଳି ଘଟଣା କାଲି ମୋର ଜୀବନରେ ବି ଘଟିବା ସମ୍ଭବ । ଯଦି ମୁଁ ବି ଦାନ ପୁଣ୍ୟ ନକରିବି, ତେବେ କାଲି ମୁଁ ବି ଭିକାରୀ ହୋଇଯାଇପାରେ ।

କୌଣସି ମୃତ ବ୍ୟକ୍ତିଙ୍କର କୋକେଇ ଦେଖି ନିଜ ମୃତ୍ୟୁକୁ ବି ବୋଧ କରିନେବା ଉଚିତ୍ ଯେ ଆଗାମୀ ସମୟରେ, ଇଏ ମୋର ବୋଲି କହୁଥିବା ଶରୀରର ବି ମୃତ୍ୟୁ ନିଶ୍ଚିତ ଭାବରେ ହେବ । ''ଜୀବନ ହେଉଛି ଏକ ଯାତ୍ରା, ଯାହାର ସମାପ୍ତି ହେଉଛି ମୃତ୍ୟୁ ।''

ଶରୀର ପ୍ରତି ରହିଥିବା ତୀବ୍ର ଅନୁରାଗ ଯୋଗୁ ହିଁ ବ୍ୟକ୍ତି ଜୀବନ ସାରାର ପରିଶ୍ରମ ଦ୍ୱାରା କରାଯାଇଥିବା ଉପାର୍ଜନକୁ ରୋଗ ଆସିଗଲେ ପାଣି ଭଳି ବୁହାଇବାକୁ ପ୍ରସ୍ତୁତ ହୋଇଯାଇଥାଏ । ଶରୀରର ରୋଗକୁ ନଷ୍ଟ କରିବା ପାଇଁ, ଶରୀରକୁ ବଞ୍ଚାଇ ରଖିବା ପାଇଁ, ଆମେ ସବୁ କିଛି କରିବାକୁ ପ୍ରସ୍ତୁତ ହୋଇ ଯାଇଥାଉ । ଶରୀର ରକ୍ଷା ପାଇଁ ଜୀବ ଅନେକ ପ୍ରକାରର ନିର୍ଦ୍ଦୋଷ ପ୍ରାଣୀମାନଙ୍କୁ ମାରିଦେଇ ଖାଇଛି । ଏଇ ଦେହ ପ୍ରତି ଥିବା ମମତା ତ ସାଧୁ ସନ୍ୟାସୀଙ୍କୁ ବି ବିବ୍ରତ କରିଥାଏ । ଯେଉଁ ବସ୍ତୁ ପ୍ରତି ଆମର ଅନୁରାଗ ନାହିଁ, ତାହା ନଷ୍ଟ ହୋଇଗଲେ ଆମକୁ କୌଣସି ଦୁଃଖର ଅନୁଭୂତି ହୋଇନଥାଏ । ତା'ର ନାଶ ହୋଇଗଲେ ଆମକୁ କୌଣସି ଚିନ୍ତା ହୁଏନାହିଁ । କାହାକୁ ନିଆଁରେ ଜଳୁଥିବାର ଦେଖୁଥିଲେ, ହତ୍ୟାର ଦୃଶ୍ୟ ଟି.ଭି. ଉପରେ ଦେଖୁଥିଲେ ବି ଆମେ ମଉଜରେ ଖାଇ ପିଇ ରହିଥାଉ । କିନ୍ତୁ ନିଜର ପତି, ପତ୍ନୀ, ପିଲା, ଘର ବିଷୟରେ କୌଣସି ପ୍ରତିକୂଳ ଖବର ମିଳୁ ମିଳୁ ଆମର ଖାଇବା ପିଇବା ଜହର ପାଲଟିଯାଏ ଏବଂ ଆମେ ଛାତି, ମୁଣ୍ଡକୁ ପିଟି ଚିତ୍କାର କରିବାରେ ଲାଗିଯାଉ ।

- ❖ ଶରୀରରେ ଡାଏବିଟିସ୍ ହୋଇଗଲେ ଡାକ୍ତରଙ୍କ ମତ ନେଇ ସବୁ ମିଠା ପଦାର୍ଥ ଛାଡ଼ି ଦେଇଥାଉ ।
- ❖ ହାର୍ଟ ବେମାରୀ ହୋଇଗଲେ ସବୁ ଗରିଷ୍ଠ ଭୋଜନ ଯଥା – ଘିଅ, ତେଲ, ତୈଳାକ୍ତ ବସ୍ତୁ ଛାଡ଼ି ଦିଆଯାଇଥାଏ ।
- ❖ ପାଚନ କ୍ରିୟା ଖରାପ ହୋଇଗଲେ ରୁଚିକର ନିମିକି, ତେଲ, ତୈଳାକ୍ତ ବସ୍ତୁ ଛାଡ଼ି ଦିଆଯାଇଥାଏ ।

❖ ଶରୀରର ରୋଗ ନିବାରଣ ପାଇଁ ପିତା ବଟିକାକୁ ବି ଗ୍ରହଣ କରିନେଇଥାଉ ।

❖ ଶରୀରର ରୋଗ ନିୟନ୍ତ୍ରଣ ପାଇଁ ଆସନ, ପ୍ରାଣାୟାମ ବି କରିବାକୁ ସ୍ୱୀକାର କରି ନେଇଥାଉ ।

❖ ଆମେ ଘରକୁ ଆଣିବାକୁ ଥିବା ପ୍ରତ୍ୟେକ ବସ୍ତୁକୁ ଭଲ ଭାବରେ ଦେଖି, ପରଖି କରି ଆଣିଥାଉ । କୌଣସି ଗନ୍ଧିଆ, ସଢ଼ା, ଭଙ୍ଗା ଭଙ୍ଗୀ ବସ୍ତୁକୁ ଘରକୁ ଆଣି ନଥାଉ । ଯେତେବେଳେ ଆମେ ଘରକୁ ଧନ ଉପାର୍ଜନ କରି ଆଣନ୍ତି, ପକେଟରେ ପଇସା ଜମାଇ ରଖିଦିଅନ୍ତି, ସେତେବେଳେ ଏୟା କାହିଁକି ଦେଖନ୍ତି ନାହିଁ ଯେ ଇଏ ଭଲ ଉପାର୍ଜନ କରି ନେଇଯାଉଛି ନା ଖରାପ ଉପାର୍ଜନ କରି ନେଇଯାଉଛି ।

❖ ଲୁଗା ଖରାପ ହୋଇଗଲା ତ କିଛି କଥା ନାହିଁ, ସ୍ୱାସ୍ଥ୍ୟ ବିଗିଡ଼ି ଗଲେ ତ ଭୋଜନର ସୁଆଦ ବିଗିଡ଼ିଯାଏ । ବେପାର ବିଗିଡ଼ି ଯାଉ, ରୂପ ବିଗିଡ଼ି ଯାଉ କୌଣସି ଚିନ୍ତା ନାହିଁ, ତା'ପାଇଁ ଏସବୁ ପୁଣି ଠିକ୍ ହୋଇଯିବ, କିନ୍ତୁ ନିଜ ଦ୍ୱାରା କାହାର ହୃଦୟ ବିଗିଡ଼ି ନଯାଉ, କାରଣ ସେଥିରେ ଆମର ପ୍ରିୟତମ ପ୍ରଭୁଙ୍କର ନିବାସ ରହିଛି ।

❖ ଯାହାକୁ ମହାବୀର, ରାମ, କୃଷ୍ଣ, ବୁଦ୍ଧ, ନାନକ, ମୀରା, କବୀର, ତୁଳସୀ ନିଜ ଭିତରେ ଚିହ୍ନିପାରିଲେ, ତେବେ ଆମ ଭିତରେ ଆମେ ତାଙ୍କୁ କାହିଁକି ଜାଣି ପାରିବା ନାହିଁ । ରାମ, କୃଷ୍ଣ, ମୀରା, ତୁଳସୀ ବି ତ ଆମଭଳି ହାଡ଼, ମାଂସ, ରକ୍ତ, ମଳ ଦ୍ୱାରା ତିଆରି ହୋଇଥିବା ମଣିଷ ଥିଲେ ଏବଂ ଆମ ଭଳି ସେମାନେ ବି ଏହିଭଳି ପରିସ୍ଥିତିରେ ବ୍ୟସ୍ତ ହୋଇପଡ଼ିଥିବା ମଣିଷ ଥିଲେ । ଯଦି ସେମାନେ ଜାଗ୍ରତ ହୋଇ ପାରିଲେ, ତେବେ ଆମେ କାହିଁକି ଜାଗ୍ରତ ହୋଇନପାରିବା ଏବଂ ଆମେ ଯଦି ଜାଗିଲେ ନାହିଁ ତେବେ ଏହା ହେଉଛି ଆମର ଅପମାନ । ଯଦି ଜଣେ ବି ମନୁଷ୍ୟ ଜାଗିଥାଏ ତେବେ ଅନ୍ୟ ଜଣେ ବି ଜାଗିପାରେ । କାହିଁକି ଆମେ ନିଜକୁ ସେଇ ଦ୍ୱିତୀୟ ମନୁଷ୍ୟ ବୋଲି ଜାଣିବା ନାହିଁ । ସେଇ ଦ୍ୱିତୀୟ ମନୁଷ୍ୟ ହେବା ପାଇଁ ପ୍ରତ୍ୟେକ ମନୁଷ୍ୟ ପ୍ରୟାସ କରୁ । ଲଟେରୀ ପୁରସ୍କାର ଜଣେ କାହାକୁ ମିଳିଥାଏ, କିନ୍ତୁ ଲକ୍ଷ ଲକ୍ଷ ଲୋକ ନିଜକୁ ସେଇ ଜଣକ ହେବା ପାଇଁ ଅପେକ୍ଷା ରଖି ଚେଷ୍ଟା କରିଥାନ୍ତି । ବାସ୍ ଶୋଷ ଜଗାଅ । ବସ୍ତୁ ତ ଘରେ ଅଛି, କେଉଁଠି ବାହାରେ ଖୋଜିବାର ନାହିଁ, କି ଡାକିବାର ନାହିଁ ।

❖ ଯାତ୍ରାରେ କେଉଁଠିକି ଯିବାକୁ ଥିଲେ ନିଜ ପାଇଁ ସ୍ଥାନ ଆରକ୍ଷଣ କରାଇ ନେଇଥାଉ ତଦ୍ୱାରା ଗାଡ଼ି ଆସିବା ପୂର୍ବରୁ କୌଣସି ଚିନ୍ତା ରହେନାହିଁ କିନ୍ତୁ ଆରକ୍ଷଣ ନ ହୋଇଥିଲେ ଚିନ୍ତା, ଭୟ

ଲାଗି ରହିଥାଏ । ସେହିପରି ମୃତ୍ୟୁ ଆସିବା ପୂର୍ବରୁ ନିଜ ମୋକ୍ଷ ପାଇଁ ଆରକ୍ଷଣ ନକରିଲେ, ଜନ୍ମ-ମୃତ୍ୟୁର ଭୟ ଲାଗି ରହିଥିବ, ଦୁର୍ଗତି ନିଶ୍ଚିତ ଭାବରେ ହେବ ।

ଶରୀର ଠାରୁ ଯେତେବେଳେ ମମତା ହଟିଯାଏ, ସେତେବେଳେ ପ୍ରକୃତ ମୁମୁକ୍ଷତା, ଆଧ୍ୟାତ୍ମିକତା ଜାଗ୍ରତ ହୋଇଥାଏ, ଅନ୍ୟଥା କେହି ଜଣେ ଲକ୍ଷେ ଥର ବୁଝାଉ ଥାଉ, ତଥାପି ସୁଦ୍ଧା ବିଷୟ ଠାରୁ, ଶରୀର ଠାରୁ ମମତ୍ୱ ଚାଲିଯାଏ ନାହିଁ।

ମୃତ୍ୟୁର ବୋଧ ହୋଇଗଲେ ଦୁଷ୍ଟ ଦୁରାଚାରୀ, ଚୋର ବି ଧର୍ମ କର୍ମ କରିବାରେ ଲାଗିଯାଏ । ଯାହାଠାରୁ କରଜ ନେଇଥିଲା ତାକୁ ଫେରାଇବା ପାଇଁ ବିଚାର ନଥିଲା, କିନ୍ତୁ ମୃତ୍ୟୁର ବୋଧ ହେଉ ହେଉ ସେ କରଜ ଶୁଝି ଆସିଥାଏ । ଯାହା ସହିତ ଶତ୍ରୁତା ଥିଲା, ତା' ଘରକୁ ଯାଇ କ୍ଷମା ମାଗି ଆସିଥାଏ । ଯାହା ପ୍ରତି ରୁକ୍ଷ କଥା କହୁଥିଲା ତା ସହିତ ପ୍ରେମ ସମ୍ବନ୍ଧ ପ୍ରତିଷ୍ଠା କରିଥାଏ । ପ୍ରଥମେ ଧର୍ମ ଓ ସନ୍ଥଙ୍କୁ ଘୃଣା କରୁଥିଲା, ତାଙ୍କୁ ଥଟ୍ଟା ପରିହାସ କରୁଥିଲା, ବର୍ତ୍ତମାନ ଶ୍ରଦ୍ଧା ଓ ପ୍ରେମ କରିବାରେ ଲାଗିଯାଏ । ସେଥିପାଇଁ **'ମୃତ୍ୟୁକୁ ସର୍ବଦା ସ୍ମରଣ ରଖ ।''**

**''ସର୍ବ ପରବଶଂ ଦୁଃଖଂ, ସର୍ବ ଆତ୍ମବଶଂ ସୁଖମ୍''**

ଯିଏ ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ ରହିଥାଏ, ସିଏ ଦୁଃଖୀ, ଭୟଭୀତ ରହିଥାଏ ।

ଯିଏ ଆତ୍ମନିର୍ଭର ହୋଇଥାଏ, ସିଏ ତ ସର୍ବଦା ସୁଖୀ ରହିଥାଏ ।

**ଓଁ ଶାନ୍ତି ଶାନ୍ତିଃ ଶାନ୍ତିଃ**



# ସ୍ୱାମୀ ନିରଂଞ୍ଜନ ଗ୍ରନ୍ଥାବଳୀ

**ହିନ୍ଦୀରେ ....**

୧) ଜ୍ଞାନୋଦୟ
୨) ଶାନ୍ତିପୁଷ୍ପ
୩) ଭୁଲି ବିସରୀ ସ୍ମୃତି
୪) ବେଦାନ୍ତ ପ୍ରଶ୍ନୋତ୍ତରୀ – ୧ ରୁ ୪
୮) ମେଁ ଅମୃତ କା ସାଗର
୯) ମେଁ ବ୍ରହ୍ମ ହୁଁ ଅ
୧୦) ପ୍ରାଣାୟାମ, ମୁଦ୍ରା, ଧ୍ୟାନ ଏବଂ ସଂକ୍ଷିପ୍ତ ବେଦାନ୍ତ ପରିଭାଷିକ ଶବ୍ଦକୋଷ
୧୧) ସୀତାଗୀତା
୧୨) ରାମଗୀତା
୧୩) ଗୁରୁଗୀତା
୧୪) ପଞ୍ଚଦଶୀ ପ୍ରଶ୍ନୋତ୍ତରୀ ଦୀପିକା
୧୫) ଭାଗବତ ରହସ୍ୟ
୧୬) ଆତ୍ମ ସାକ୍ଷାତ୍କାର
୧୭) ମନ କି ଜାନେ ରାମ
୧୮) ଯୋଗବଶିଷ୍ଠ ସାର
୧୯) ନିରଂଜନ ଭଜନାମୃତ ସରିତା
୨୦) ସ୍ୱରୂପ ଚିନ୍ତନ
୨୧) କର୍ମ ସେ ମୋକ୍ଷ ନହିଁ
୨୨) ଶ୍ରଦ୍ଧା କି ପ୍ରତିମା ସଦ୍‌ଗୁରୁ
୨୩) ଅମୃତ ବିନ୍ଦୁ
୨୪) ଉପନିଷଦ ସିଦ୍ଧାନ୍ତ ଏବଂ...
୨୫) ସହଜ ସମାଧୀ
୨୬) ଜ୍ଞାନ ଜ୍ୟୋତି
୨୭) କବୀର ସାଖୀ ସଂକଳନ
୨୮) ସହଜ ଧ୍ୟାନ
୨୯) ହେ ରାମ ଉଠକାଗୋ
୩୧) ସଦ୍‌ଗୁରୁ କୌନ
୩୨) ତତ୍ତ୍ୱମସି
୩୩) ସାକ୍ଷୀ କି ଖୋଜ
୩୪) ଆତ୍ମଜ୍ଞାନକୀ ହୀରେମୋତି
୩୫) ଅନମୋଲ୍ ବଚନାମୃତ
୩୬) ଲାଖ୍ ରୋଗୋଁ କୀ ଏକ ଦୱା
୩୭) ହଂସ ଗୀତା
୩୮) ଆତ୍ମଜ୍ଞାନ କେଲିୟେ ଉପୟୋଗୀ ଚିତ୍ରାବଳୀ
୩୯) ଅଷ୍ଟାବକ୍ର ଗୀତାସାର
୪୦) ଆତ୍ମ ଗୀତା

**ଓଡ଼ିଆରେ ...**

୧) ମୁଁ ହିଁ ବ୍ରହ୍ମ (ଚତୁର୍ଥ ସଂସ୍କରଣ)
୨) ମୁଁ ଅମୃତର ସାଗର
୩) ଆତ୍ମ ସାକ୍ଷାତ୍କାର
୪) ଶ୍ରଦ୍ଧାର ପ୍ରତିମା ସଦ୍‌ଗୁରୁ
୫) ପ୍ରାର୍ଥନା ଏବଂ ଲଘୁ ବେଦାନ୍ତ ଶବ୍ଦକୋଷ
୬) ଲଘୁ ବେଦାନ୍ତ ପ୍ରଶ୍ନୋତ୍ତରୀ
୭) ନିରଞ୍ଜନ ବଚନାମୃତ
୮) ସୀତାଗୀତା
୯) ସହଜ ସମାଧି
୧୦) ସହଜ ଧ୍ୟାନ
୧୧) ଲକ୍ଷେ ରୋଗର ଗୋଟିଏ ଔଷଧ
୧୨) ଆତ୍ମ ଗୀତା (ଭଗବଦ୍‌ଗୀତା ସାର)

**'ହଂସଗୀତା'** ଆତ୍ମାନୁଭୂତିର ପରଶ ମଣି । ଏହାର ପ୍ରତିଟି ଶବ୍ଦ ମୁମୁକ୍ଷୁକୁ ଏକ ଅନିର୍ବଚନୀୟ ଆନନ୍ଦ ରାଜ୍ୟକୁ ବାଟ କଢ଼ାଇ ନେଇଥାଏ, ଭାବରାଜ୍ୟକୁ ପ୍ରଶସ୍ତ କରିଥାଏ । ଅନୁଭୂତିରେ ଉଜ୍ଜ୍ୱଳ ଅଦ୍ୱୈତ ବୋଧ ପାଇଁ ଏହି ଅମୀୟ ଗ୍ରନ୍ଥର ତୁଳନା ନାହିଁ ।

ଧ୍ୟାନ କ'ଣ', 'ପରମାତ୍ମାଙ୍କ ସ୍ୱରୂପ', 'ପରମାତ୍ମାଙ୍କ ସ୍ୱଭାବ', 'ସାକ୍ଷୀର ସ୍ୱରୂପ', 'ଆତ୍ମଦର୍ଶନ', 'ସଦ୍‌ଗୁରୁ ମୃତ୍ୟୁ', 'ପ୍ରେମ ଦାସତ୍ୱ ନୁହେଁ', 'ପହୁଅର ପରିଚୟ' ଭଳି ଅବ୍ୟକ୍ତ ମୌଳିକ ପ୍ରସଙ୍ଗକୁ ସ୍ୱାମୀଜୀ ଏପରି ସାବଲୀଳ ଢଙ୍ଗରେ ପରିପ୍ରକାଶ କରିଛନ୍ତି ଯେ ଏହା ଏକ ଶାଶ୍ୱତ ଜୀବନ ସଙ୍ଗୀତରେ ପରିଣତ ହୋଇଯାଇଛି ।

ଏଇ ପୁସ୍ତକର ଅନୁବାଦ କର୍ମ ମୋତେ ଅକ୍ଷୟ ଆନନ୍ଦ ଦେଇପାରିଛି ଏବଂ ସ୍ୱାଧ୍ୟାୟୀ ପାଠକମାନଙ୍କୁ ବି ଏହା ଅଭିଭୂତ କରିଦେବ ।

ରମେଶ ଦାସ



ଜୀବନ ହେଉଛି ପରମାତ୍ମାଙ୍କର ଖୋଲା ପୁସ୍ତକ, ଯାହା ପରମାତ୍ମାଙ୍କ ହାତରେ ଲେଖା ହୋଇ ଆଖି ସାମ୍ନାରେ ପଡ଼ିଛି । ଗୋଲାପ ଫୁଟିଛି, ସେଥିରେ ତୁମକୁ ପରମାତ୍ମା ଦେଖାଯାଉ ନାହାନ୍ତି । ତୁମେ ମୁର୍ଦ୍ଧାର ପୁସ୍ତକଗୁଡ଼ିକରୁ କ'ଣ ଖୋଜି ଚାଲିଛ ? ସିଏ ହେଉଛି ଶବ୍ଦଜାଲ, ଏକ ଜଙ୍ଗଲ । ତା' ଭିତରକୁ ଯିବ ତ ଫାନ୍ଦରେ ପଡ଼ିଯିବ ।



ସତ୍ୟ ହେଉଛି ତୁମର ସ୍ୱଭାବ, ତୁମେ ତା'ଠାରୁ ଦୂରକୁ ଯାଇପାରିବ ନାହିଁ । ତୁମେ ତାକୁ ଛାଡ଼ିପାରିବ ନାହିଁ, କାରଣ ସିଏ ତୁମ ଠାରୁ ପୃଥକ ନୁହେଁ । ଯେଉଁଠିକି ବି ତୁମେ ଯାଅ, ସତ୍ୟ ତୁମ ଠାରୁ ଅଲଗା ହେବ ନାହିଁ । ସତ୍ୟ ତୁମ ସାଙ୍ଗରେ ଥିବ । 'ତତ୍ତ୍ୱମସି' 'ସିଏ ହିଁ ତୁମେ' ।